# ଭାରତୀୟ ସଂସ୍କୃତି

## ପ୍ରାଗୈତିହାସିକ ପର୍ବ

ଶ୍ରୀ ସୁରେନ୍ଦ୍ରନାଥ ଶତପଥୀ



ଓଡ଼ିଶା ବୁକ୍ ଷ୍ଟୋର

# ଭାରତୀୟ ସଂସ୍କୃତି

## ପ୍ରାଗୈତିହାସିକ ପର୍ବ

ଲେଖକ :
ଶ୍ରୀ ସୁରେନ୍ଦ୍ରନାଥ ଶତପଥୀ
ପ୍ରକାଶକ :
ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୭୫୩୦୦୨
ପ୍ରଚ୍ଛଦ :
ଅସିତ ମୁଖାର୍ଜି
ପ୍ରଥମ ପ୍ରକାଶ :
୧୯୮୭
ମୁଦ୍ରଣ :
ସପ୍ତର୍ଷି ପ୍ରିଣ୍ଟର୍ସ, କଟକ-୧୦
ମୂଲ୍ୟ :
ସାଧାରଣ ଟ. ୩୦-୦୦
ଶୋଭନ ଟ. ୩୫-୦୦

BHARATIYA SANSKRUTI
PRAGAITIHASIKA PARBA
Sri Surendranath Satapathy
*Published by* :
Gobinda Charan Patra
Orissa Book Store
Cuttack-753002
*Ist Edition-1987*
Price Rs. 35-00

ପଦ୍ମଶ୍ରୀ ଡକ୍ଟର ସତ୍ୟନାରାୟଣ ରାଜଗୁରୁଙ୍କୁ ସମର୍ପିତ

ସୁରେନ୍ଦ୍ରନାଥ ଶତପଥୀ

# ପ୍ରାଗ୍‌ଭାଷ

ମାନବର ସୃଷ୍ଟି ଏବଂ ତା'ର ଚେତନାର ଅଭ୍ୟୁଦୟ ଓ ବିକାଶରେ ସହସ୍ର ସହସ୍ର ବର୍ଷ ବିତି ଯାଇଛି ଏବଂ ଏହି ସମସ୍ତ ମଧ୍ୟରେ ପୃଥିବୀ ବକ୍ଷରେ ବହୁ ସଂସ୍କୃତି ଆସିଛି ଓ ଯାଇଛି । କିନ୍ତୁ ଦୁଇଟି ସଂସ୍କୃତି ଏପର୍ଯ୍ୟନ୍ତ ନିଜର ପାରମ୍ପରିକ ନିରବଚ୍ଛିନ୍ନତାକୁ ରକ୍ଷା କରିପାରିଛନ୍ତି । ଗୋଟିଏ ହେଲା ଭାରତୀୟ ସଂସ୍କୃତି ଓ ଅପରଟି ହେଲା ଚୈନିକ ସଂସ୍କୃତି । କିନ୍ତୁ ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ ହେଲା, ବିଭିନ୍ନତାର ତଳେ ତଳେ ବହିଯାଉଛି ଏକତାର ଏକ ସ୍ୱଚ୍ଛ ଫଲ୍‌ଗୁଧାରା । ଏଠାରେ ଯୁଗ ଯୁଗ ଧରି ବହୁ ଜାତି, ବହୁ ସଂସ୍କୃତିଧରମାନଙ୍କର ଲୀଳାଖେଳା ଚାଲିଛି; ବହୁ ମୁରଲୀର ସ୍ୱନ ଶୁଭିଛି; କିନ୍ତୁ ସବୁ ମିଳାଇ ଯାଇ ଏକାକାର ହୋଇଯାଇଛି ଗୋଟିଏ ମନ୍ଦ୍ରମଧୁର ଉଦାତ୍ତ ଶଙ୍ଖନାଦରେ । ତାହା ଯେମିତି ସମସ୍ତଙ୍କୁ ଗ୍ରାସି ସା'ରିଛି, କାଳକୁ ମଧ୍ୟ—କାରଣ କାଳର କବଳରୁ ଏବେ ବି ତାହା ଅଛି ମୁକ୍ତ । ଏବେ ବି ସେହି ସଂସ୍କୃତିର ନିରବଚ୍ଛିନ୍ନ ସ୍ରୋତଟି ବହି ଚାଲିଛି; ଆଉ ଭବିଷ୍ୟତରେ ବହି ଚାଲିଥିବ ମଧ୍ୟ ।

ଏହି ପ୍ରବାହର ନିରବଚ୍ଛିନ୍ନତା ଓ ସକଳ ସାଂସ୍କୃତିକ ଧାରା, ଉପଧାରାଗୁଡ଼ିକୁ ସ୍ୱକୀୟ କୋଳରେ ଧାରଣ କରିବାର ଶକ୍ତିକୁ ଲକ୍ଷ୍ୟ କରି ସେଦିନ କବିଗୁରୁ ରବୀନ୍ଦ୍ରନାଥ ଠାକୁର ଯଥାର୍ଥରେ କହିଥିଲେ :

କେହି ନାହିଁ ଜାନେ କାର ଆହ୍ୱାନେ     କତ ମାନୁଷେର ଧାରା
ଦୁର୍ବାର ସ୍ରୋତେ ଏଲ କୋଥା ହତେ     ସମୁଦ୍ରେ ହଲ ହାରା ।
ହେଥାୟ ଆର୍ଯ୍ୟ ହେଥା ଅନାର୍ଯ୍ୟ,     ହେଥାୟ ଦ୍ରାବିଡ଼ ଚୀନ୍
ଶକ ହୁନ ଦଲ ପାଠାନ ମୋଗଲ୍     ଏକ ଦେହେ ହଲ ଲୀନ୍,
ପଶ୍ଚିମ ଆଜି ଖୁଲ୍ ଆଛେ ଦ୍ୱାର
ସେଥା ହତେ ସବେ ଆନେ ଉପହାର,
ଦିବେ ଆର ନିବେ, ମିଲାବେ ମିଲିବେ,     ଯାବେ ନା ଫିରେ—
ଏଇ ଭାରତେର ମହାମାନବେର     ସାଗରତୀରେ ।

( ଗୀତାଞ୍ଜଳି )

ଏହି ଯେଉଁ ସଂସ୍କୃତିର ମହାମିଳନ ଭାରତଭୂମିରେ ସଙ୍ଘଟିତ ହୋଇଛି, ତାହା କେବଳ ଅତୀତର ଇତିହାସ ହୋଇ ରହିନାହିଁ । ସେହି ମହାମିଳନର ପ୍ରକ୍ରିୟା ଏବେ ବି ଚାଲିଛି ଏବଂ ଭବିଷ୍ୟତରେ ଯୁଗ ଯୁଗ ଧରି ଚାଲିଥିବ । ଭାରତୀୟ ସଂସ୍କୃତିର ଏହି ଆତ୍ମିକ ବଳଟି ତାକୁ ଯୁଗେ ଯୁଗେ କାଳୋତ୍ତୀର୍ଣ୍ଣ କରିପାରିଛି । ଏପରିକି ଇତିହାସର ବହୁ

ସହସ୍ର ବର୍ଷ ପୂର୍ବେ ପ୍ରାଗୈତିହାସିକ କାଳରେ ମଧ୍ୟ ଏହି ଆତ୍ମିକ ଶକ୍ତିର ଭ୍ରୂଣାତ୍ମକ ପ୍ରକାଶ ହୋଇ କ୍ରମ କ୍ରମେ ତାହାର ଅଭିବୃଦ୍ଧି ଓ ଭୂୟୋବିକାଶ ସମ୍ଭବ ହୋଇପାରିଛି । ଉଦାହରଣ ସ୍ୱରୂପ ଉପନିଷଦର ଆତ୍ମା ବିଷୟକୁ ବିଚାରକୁ ନିଆଯାଉ, ଯାହା କି ଭାରତୀୟ ଦର୍ଶନ ଓ ଭାରତୀୟ ଆଧ୍ୟାତ୍ମିକ ଚିନ୍ତାଧାରାର କେନ୍ଦ୍ରବିନ୍ଦୁ ହୋଇ ରହିଛି । ପ୍ରାଗୈତିହାସିକ କାଳରେ ସିନ୍ଧୁ ସଂସ୍କୃତି ଯୁଗରେ ( ଖ୍ରୀ. ପୂ. 2500 ଶତାବ୍ଦୀ ), ଏପରିକି ତତ୍ପୂର୍ବରୁ ମଧ୍ୟ ଭାରତଭୂମିରେ ଏହାର ଭ୍ରୂଣାତ୍ମକ ବିକାଶ ହୋଇଥିଲା । ସେହିପରି 'ସର୍ବଧର୍ମ ସମନ୍ୱୟଭାବ' ସିନ୍ଧୁ ସଂସ୍କୃତି କାଳରେ ମଧ୍ୟ ପାଳିତ ହେଉଥିଲା ଏବଂ ବିଭିନ୍ନ ଜାତି, ଗୋଷ୍ଠୀ ଓ ସମ୍ପ୍ରଦାୟର ଲୋକମାନେ ଏକତ୍ର ସହାବସ୍ଥାନ ନୀତି ଅବଲମ୍ବନ କରି ରହୁଥିଲେ । ଅଥଚ ସମସାମୟିକ ଅସୁର ରାଜ୍ୟରେ (ଆସିରିଆ) ଏହାର ବିପରୀତ ନୀତି ପାଳିତ ହେଉଥିଲା । ସେଠାରେ ଅନ୍ୟ ଧର୍ମାବଲମ୍ବୀ ଲୋକର ଗ୍ରାମକୁ ଉଜାଡ଼ି ଦିଆଯାଉଥିଲା । ଭାରତଭୂମିରେ ଏହା ସମ୍ଭବ ହୋଇ ପାରୁନଥିଲା; କାରଣ ଭାରତର ସଂସ୍କୃତିକୁ ଓ ଭାରତୀୟ ଜନମାନସକୁ ଆଚ୍ଛନ୍ନ କରି ରଖିଥିଲା ଆଧ୍ୟାତ୍ମିକ ଚିନ୍ତାଧାରା ଏବଂ ଅନେକତାରେ ଏକତ୍ୱର ବିଶ୍ୱାସ । ଏବେ ମଧ୍ୟ ଜଣେ ସାଧାରଣ ଭାରତୀୟ ଈଶ୍ୱର-ବିଶ୍ୱାସୀ ଓ ଅଧ୍ୟାତ୍ମବାଦୀ । ଏବେ ମଧ୍ୟ ଭାରତରେ ରାଜା କିମ୍ବା ବୀରମାନେ ପୂଜିତ ହେଉନାହାନ୍ତି; ପୂଜିତ ହେଉଛନ୍ତି ମୁନିଋଷିମାନେ ଯେଉଁମାନେ ଥିଲେ ଭାରତୀୟ ସଂସ୍କୃତିର ବାହକ ଓ ଅଗ୍ରଦୂତ ।

ଭାରତୀୟ ସଂସ୍କୃତି ମାନବିକ ଏକତା, ଚିନ୍ତାଗତ ଏକତା ଏବଂ ଆଧ୍ୟାତ୍ମିକ ଅନୁଭୂତିର ଏକତା ଉପରେ ପ୍ରାଧାନ୍ୟ ଆରୋପ କରିଥାଏ । ବାସ୍ତବିକ ତାହା ହିଁ ହେଉଛି ଏହି ସଂସ୍କୃତିର ବଳ, ଏହି ଦେଶର ବଳ, ଏହାର ଜନମାନସର ବଳ । ଏହି ବଳ ଯେତେବେଳେ ପୁଷ୍କଳ ଭାବରେ ପ୍ରସ୍ଫୁଟିତ ଓ ଫଳାନ୍ୱିତ ହୋଇଛି, ସେତେବେଳେ ଏ ଦେଶର ହୋଇଛି ଅଭିବୃଦ୍ଧି ଏବଂ ଏହି ବଳର ହ୍ରାସ ଆସିବା ପରେ ଏ ଦେଶ ହୋଇଯାଇଛି କ୍ଷୟମାଣ । ବହୁ ବାଧା-ବିଘ୍ନ ସତ୍ତ୍ୱେ ଭାରତ ବଞ୍ଚି ରହିବାର ପ୍ରଧାନ କାରଣ ହେଉଛି, ଏ ପର୍ଯ୍ୟନ୍ତ ବି ତାହାର ଆତ୍ମାକୁ ଏହି ନୀତିଗୁଡ଼ିକ ସଂଜୀବନୀ ଶକ୍ତି ଦେଇଆସୁଛି ଏବଂ ତା'ର ଜାତୀୟ ମାନସିକତାର ସ୍ତରେ ସ୍ତରେ ଏହି ନୀତିଗୁଡ଼ିକର ଗୁଞ୍ଜରଣ ଅବିରତ ଧ୍ୱନିତ । ଆଧୁନିକ ଯୁଗ ସହିତ ଖାପ ଖୁଆଇ ଭାରତ ଯେତେ ଦୂର ଏହି ନୀତିଗୁଡ଼ିକ ଆଶ୍ରୟ କରି ବଞ୍ଚିପାରିବ ଏବଂ ଏଗୁଡ଼ିକୁ କାର୍ଯ୍ୟକାରୀ କରିପାରିବ, ସେତେଦୂର ଭାରତୀୟ ସଂସ୍କୃତିର ପରାକାଷ୍ଠା ଏବଂ କାଳଜୟୀ ଭାବ ପ୍ରତିପାଦିତ ହୋଇପାରିବ ।

ଏହି ଦୃଷ୍ଟିରୁ ବିଚାର କଲେ ଭାରତୀୟ ସଂସ୍କୃତି ବିଷୟରେ ଅଧ୍ୟୟନ ନିଶ୍ଚିତ ଭାବରେ କୌତୂହଳୋଦ୍ଦୀପକ । ଏହାଠାରୁ ଆହୁରି ବିଶେଷ ଭାବରେ କୌତୂହଳୋଦ୍ଦୀପକ ହେଉଛି ପ୍ରାଗୈତିହାସିକ କାଳର ସଂସ୍କୃତି ବିଷୟରେ ଅଧ୍ୟୟନ; କାରଣ ଏହି ସମୟ ଥିଲା ଭାରତୀୟ ସଂସ୍କୃତିର ଉଷାଲଗ୍ନର ଅବ୍ୟବହିତ ପ୍ରାକ୍‌କାଳ, ଯେଉଁ ସମୟରେ କି ଅତି ଅସ୍ପଷ୍ଟ ଭାବରେ ହେଲେ ମଧ୍ୟ ଭାରତୀୟ ସାଂସ୍କୃତିକ ଚେତନାର ଭ୍ରୂଣାତ୍ମକ ଉଦ୍ଭବ ହୋଇଥିଲା । ତାହାର ଉପରେ କିଛିଟା ଆଲୋକପାତ କରିବା ହେଉଛି ଶଂସିତ ପୁସ୍ତକର ଉଦ୍ଦେଶ୍ୟ ।

ଭାରତୀୟ ସଂସ୍କୃତିର ବିଭିନ୍ନ ବିଭାବକୁ ନେଇ ପୃଥକ୍ ପୃଥକ୍ ଦଶ ଗୋଟି ପୁସ୍ତକ ପ୍ରଣୟନ କରିବାର ଅଭିଳାଷ ମୋର ଅଛି । ପ୍ରତ୍ୟେକକୁ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ପର୍ବରେ ନାମିତ କରାଯିବ । 'ପ୍ରାଗୈତିହାସିକ ପର୍ବ', 'ବୈଦିକ ପର୍ବ', 'ପୁରାଣ ପର୍ବ' 'ବୌଦ୍ଧ ଓ ଜୈନ ପର୍ବ', ଆଦି ଦଶ ଗୋଟି ବିଭିନ୍ନ ପର୍ବ ଏହାର ଅନ୍ତର୍ଗତ । ଶଂସିତ ପୁସ୍ତକଟି ତେଣୁ ହେଉଛି ଏହି ପ୍ରଚେଷ୍ଟାର ଆଦ୍ୟ ଅର୍ଘ୍ୟ ସ୍ୱରୂପ ଏବଂ ଏଥିରେ 'ପ୍ରାଗୈତିହାସିକ ପର୍ବ' ଉପରେ ଆଲୋକପାତ କରାଯାଇଅଛି । ପୁସ୍ତକଟି ଗବେଷଣାଧର୍ମୀ ଏବଂ ଏଥିରେ ଅନ୍ତର୍ବିଦ୍ୟା ସଙ୍କଳିତ ଆଲୋଚନା କରିବାର ପ୍ରୟାସ କରାଯାଇଛି । ପରବର୍ତ୍ତୀ ପରିଚ୍ଛେଦମାନଙ୍କରେ ପ୍ରବେଶ ପୂର୍ବରୁ ପାଠକମାନଙ୍କର ସୁବିଧା ଲାଗି ଭାରତୀୟ ପୁରାତତ୍ତ୍ୱ ସଂପର୍କରେ ଏ ପର୍ଯ୍ୟନ୍ତ ଯାହା ଯାହା ଗବେଷଣା କରାଯାଇଛି, ତାହାର ଏକ ଧାରାବାହିକ ଇତିହାସ ଓ ତାତ୍ପର୍ଯ୍ୟ ପ୍ରଥମ ପରିଚ୍ଛେଦରେ ଉଲ୍ଲେଖ କରାଯାଇଛି । ଓଡ଼ିଆ ସାହିତ୍ୟରେ ଏ ପ୍ରକାର ପ୍ରୟାସ ବୋଧହୁଏ ପ୍ରଥମ । ଏଥି ମଧ୍ୟ ପ୍ରତିଟି ପରିଚ୍ଛେଦ ଶେଷରେ ବିଭିନ୍ନ ବିଷୟ ଉପରେ ପୂର୍ବାପର ସମ୍ବନ୍ଧ ସହିତ ଟିପ୍ପଣୀ ଦିଆଯାଇଛି କିମ୍ବା ଅଧିକ ଅଧ୍ୟୟନ ଲାଗି ସଂପୃକ୍ତ ପୁସ୍ତକମାନଙ୍କର ନାମୋଲ୍ଲେଖ କରାଯାଇଛି । ପ୍ରାଗୈତିହାସିକ ଯୁଗର ସଭ୍ୟତା ଓ ସଂସ୍କୃତି ବିଷୟରେ ଲିଖିତ ବିଷୟବସ୍ତୁର ଅଭାବ ଦୃଷ୍ଟିରୁ ପ୍ରତ୍ନତାତ୍ତ୍ୱିକ ଅବଶେଷମାନଙ୍କର ପରୀକ୍ଷା ନିରୀକ୍ଷା ଏକାନ୍ତ ଅପରିହାର୍ଯ୍ୟ । ବାସ୍ତବିକ ତାହା ହିଁ ସହସ୍ର ସହସ୍ର ବର୍ଷ ତଳୁ କାଳର କରାଳ ଗର୍ଭରେ ଲୀନ ହୋଇଥିବା ଏହି ସଂସ୍କୃତି ଉପରେ ସମ୍ୟକ୍ ଆଲୋକପାତ କରିଥାଏ । ପୁସ୍ତକଟିରେ ଯଥାସାଧ୍ୟ ଏ ବିଷୟରେ ପର୍ଯ୍ୟାପ୍ତ ଆଲୋଚନା କରାଯାଇଛି ଏବଂ ଏହି ଆଲୋଚନାରେ ନିରୂପିତ ନିର୍ଣ୍ଣୟମାନଙ୍କ ବିଷୟରେ ଅବଧାରଣାକୁ ଅଧିକତର ଦୃଢ଼ୀଭୂତ କରିବା ଉଦ୍ଦେଶ୍ୟରେ କେତୋଟି ପ୍ରଧାନ ପ୍ରଧାନ ପ୍ରାଗୈତିହାସିକ ପ୍ରତ୍ନତାତ୍ତ୍ୱିକ ଧ୍ୱଂସାବଶେଷର ଆଲୋକଚିତ୍ର ମଧ୍ୟ ଦିଆଯାଇଅଛି । ଆତ୍ମା ଓ ପରଲୋକ ଆଦି ବିଷୟରେ କିପରି ଭାବରେ ପ୍ରାଗୈତିହାସିକ ଭାରତୀୟମାନଙ୍କର ଭ୍ରୂଣାତ୍ମକ ଚେତନା ଗଜୁରି ଉଠିଥିଲା, ଏହି ପ୍ରତ୍ନତାତ୍ତ୍ୱିକ ଧ୍ୱଂସାବଶେଷଗୁଡ଼ିକ ତାହାର ଯଥେଷ୍ଟ ସୂଚନା ଦେଇଥାଏ । ଏହା ସହୃଦୟ ପାଠକପାଠିକାମାନଙ୍କ ପାଇଁ କୌତୂହଳ ସୃଷ୍ଟି କରିବ ବୋଲି ମୁଁ ଆଶା କରୁଛି । ସେମାନଙ୍କ ଦ୍ୱାରା ପୁସ୍ତକଟି ଆଦୃତ ହେଲେ ମୋ'ର ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

ଓଡ଼ିଶା ବୁକ୍ ଷ୍ଟୋର୍‌ର ସ୍ୱତ୍ୱାଧିକାରୀ ଶ୍ରୀ ଗୋବିନ୍ଦ ଚରଣ ପାଣି ପୁସ୍ତକଟିର ପ୍ରକାଶନ ଭାର ଗ୍ରହଣ କରିବା ସଙ୍ଗେ ସଙ୍ଗେ ପରବର୍ତ୍ତୀ ପର୍ବଗୁଡ଼ିକର ପ୍ରକାଶନ ପାଇଁ ପ୍ରତିଶ୍ରୁତି ଦେଇଥିବାରୁ ମୁଁ ତାଙ୍କ ନିକଟରେ ଗଭୀର କୃତଜ୍ଞତା ଜ୍ଞାପନ କରୁଛି ।

ପରିଶେଷରେ ସପ୍ତର୍ଷି ପ୍ରିଣ୍ଟର୍ସ'ର ସ୍ୱତ୍ୱାଧିକାରୀ ବୈକୁଣ୍ଠନାଥ ଆଚାର୍ଯ୍ୟ ବହୁ ଶ୍ରମ ସ୍ୱୀକାର କରି ପୁସ୍ତକଟିକୁ ଯଥାସାଧ୍ୟ ନିର୍ଭୁଲ ଭାବରେ ମୁଦ୍ରିତ କରିଥିବାରୁ ଧନ୍ୟବାଦାର୍ହ ।

ଭୁବନେଶ୍ୱର
ତା ୩୧।୧୨।୮୭

ସୁରେନ୍ଦ୍ରନାଥ ଶତପଥୀ

# ସୂଚୀ





# ପ୍ରଥମ ପରିଚ୍ଛେଦ

## ଭାରତୀୟ ପୁରାତତ୍ତ୍ୱ ଗବେଷଣା

ଭାରତ ଏକ ମହାନ୍ ଦେଶ । ଏହାର ସଂସ୍କୃତି ଅତି ମହାନ୍; ଏହାର ପରଂପରା ଓ ଐତିହ୍ୟ ମଧ୍ୟ ସେହିପରି ମହାନ୍ । ଏହାର ପୁରାତତ୍ତ୍ୱ ରାଶି ରାଶି ମହତ୍ତମ ଗୁଣମାନଙ୍କରେ ପରିପୂରିତ । ସାରା ବିଶ୍ୱରେ ଭାରତୀୟ ସଂସ୍କୃତି, ପରଂପରା ଓ ଐତିହ୍ୟ ନିର୍ବିବାଦରେ ସମ୍ମାନିତ । ଅତଏବ, ଏହାକୁ ବିଶ୍ୱ-ଦରବାରରେ ପରିଚିତ କରାଇବାଲାଗି ଶତାବ୍ଦୀ ଶତାବ୍ଦୀ ଧରି ଉଭୟ ଭାରତୀୟ ଓ ବୈଦେଶିକ ଭାରତ-ତତ୍ତ୍ୱବିତ୍‌ମାନଙ୍କର ଯେଉଁ ଅଦମ୍ୟ ଉଦ୍ୟମ ହୋଇ ଆସିଛି, ସେ ବିଷୟରେ ଆଲୋଚନା କରିବା ନିଶ୍ଚିତ ଭାବରେ କୌତୂହଳୋଦ୍ଦୀପକ । ବର୍ଷ ବର୍ଷ ଧରି ଭାରତୀୟ ପୁରାତତ୍ତ୍ୱ ଓ ପ୍ରତ୍ନତତ୍ତ୍ୱ ଉପରେ ଯେଉଁ ଗବେଷଣା ଚାଲି ଆସିଛି, ତାହାର ଏକ ସ୍ଥୂଳ ଗୁଣାତ୍ମକ ବିଚାର କରିବା ସଙ୍ଗେ ସଙ୍ଗେ ଏକ ଐତିହାସିକ ବିବର୍ତ୍ତନାତ୍ମକ ଚିତ୍ର ଦେବା ଏକାନ୍ତ ଆବଶ୍ୟକ ।

ଭାରତର ଉତ୍ତର ଦିଗରେ ଏକ ଉଚ୍ଚ ପ୍ରାଚୀର ସଦୃଶ ହିମାଳୟ ପର୍ବତମାଳା ବିଦ୍ୟମାନ । ଏହା ସଂପୂର୍ଣ୍ଣ ଭାବରେ ଉତ୍ତର ସୀମାଟିକୁ ଘେରି ରହିବା ସଙ୍ଗେ ସଙ୍ଗେ ପୂର୍ବ ଓ ପଶ୍ଚିମ ସୀମାରେ ମଧ୍ୟ କିଛି ଦୂର ଅଗ୍ରସର ହୋଇଛି । ତାହା ବ୍ୟତୀତ, ପୂର୍ବ, ପଶ୍ଚିମ ଓ ଦକ୍ଷିଣ ସୀମାରେ ସାଗରବେଷ୍ଟିତ ଥାଇ ଏହି ଦେଶ ଏସିଆର ଅନ୍ୟ ଭୂଖଣ୍ଡଠାରୁ ଏକ ପ୍ରକାର ବିଚ୍ଛିନ୍ନ । ଏ ପ୍ରକାର ବିଚ୍ଛିନ୍ନକାରୀ ପ୍ରାକୃତିକ ପରିବେଶ ଭାରତୀୟ ସଂସ୍କୃତିର ଉଦ୍ଭବ ଓ ବିବର୍ତ୍ତନ ଉପରେ ଏକ ବଳିଷ୍ଠ ପ୍ରଭାବ ପକାଇବା ସ୍ୱାଭାବିକ । ଏହା ଫଳରେ ବାସ୍ତବିକ ଏଠାରେ ଏସିଆ ମହାଦେଶ ତଥା ପୃଥିବୀର ଅନ୍ୟ ଦେଶମାନଙ୍କଠାରୁ ପୃଥକ୍ ଏକ ସଂସ୍କୃତି ଗଢ଼ି ଉଠିଛି ଏବଂ ଯୁଗଯୁଗ ଧରି ଏହି ସଂସ୍କୃତି ନିଜର ସ୍ୱାତନ୍ତ୍ର୍ୟ ରକ୍ଷାକରି ଆସିଛି । ଅବଶ୍ୟ ଦେଶ ମଧ୍ୟରେ ପ୍ରାକୃତିକ ଅବସ୍ଥା ତଥା ବହୁ ଐତିହାସିକ କାରଣରୁ ଭାରତୀୟ ସ୍ୱତନ୍ତ୍ର ସଂସ୍କୃତିମାନଙ୍କର ଉଦ୍ଭବ ହୋଇଛି । ସେଥିପାଇଁ ଯଥାର୍ଥରେ ଗବେଷକ ଆଲଚିନ୍ ଦମ୍ପତି କହିଛନ୍ତି : "Through-

out her prehistory and history, India has presented an increasingly rich and varied fabric, woven of many strands." ତଥାପି ଏହି ବିଭିନ୍ନତା ମଧ୍ୟରେ ଏକତାର ଏକ ମହନୀୟ ଯୋଗସୂତ୍ର ବିଦ୍ୟମାନ । ହିମାଳୟ ଓ ସମୁଦ୍ର ଯେ ପୂର୍ବପୂର ଅଲଂଘ୍ୟ ସେ କଥା କୁହାଯାଇ ନାହିଁ । ଏହା ମଧ୍ୟରେ ଥିବା ଗିରିସଙ୍କଟମାନଙ୍କ ମଧ୍ୟଦେଇ ଅତୀତରେ ବହୁ ବିଦେଶୀୟ ଏହି ଦେଶକୁ ଆସିଛନ୍ତି । ସମୁଦ୍ରପଥ ଦେଇ ମଧ୍ୟ ବିଦେଶୀୟ ଆସିଛନ୍ତି । କିନ୍ତୁ ସେମାନଙ୍କର ନିଜସ୍ୱ ସ୍ୱତନ୍ତ୍ର ସଂସ୍କୃତିମାନ ମହାଭାରତୀୟ ସଂସ୍କୃତିର ମହାନ୍ ସ୍ରୋତରେ ମିଶିଯାଇ ଏ ଦେଶରେ ସୃଷ୍ଟି କରିଛନ୍ତି ଏକ ବିରାଟ ସମନ୍ୱିତ ସଂସ୍କୃତି । ଜାତି, ଧର୍ମ, ବର୍ଣ୍ଣ ଓ ଗୋଷ୍ଠୀ ନିର୍ବିଶେଷରେ ଆଜି ସକଳ ଭାରତୀୟ ହେଉଛନ୍ତି ସେହି ଯୁଗାନ୍ତବ୍ୟାପୀ ଓ ଯୁଗାନ୍ତକାରୀ ମହାନ୍ ସଂସ୍କୃତିର ଦାୟାଦ । ଏ ସଂସ୍କୃତି ସନାତନ, ଏ ସଂସ୍କୃତି ଚିରନ୍ତନ ! ଏହା ଥିଲା, ଅଛି ଏବଂ ଥିବ !

୩

ଭାରତକୁ ଏସିଆ ମହାଦେଶରୁ କେବଳ ବିଚ୍ଛିନ୍ନ କରାଇ ଏଠାରେ ଏକ ସ୍ୱତନ୍ତ୍ର ସଂସ୍କୃତିର ପରିପୁଷ୍ଟି ଓ ପରିସୃଷ୍ଟି ଲାଗି ବାତାବରଣ ସୃଷ୍ଟି କରାଇବାରେ ଯେ ହିମାଳୟର ଗୁରୁତ୍ୱ ରହିଛି, ତାହା ନୁହେଁ । ଭାରତର ପ୍ରାଣ ସ୍ୱରୂପ ପ୍ରବହମାନ ଗଙ୍ଗା, ବ୍ରହ୍ମପୁତ୍ର, ସିନ୍ଧୁ ଆଦି ନଦୀମାନଙ୍କର ଏହା ହେଉଛି ଉତ୍ପତ୍ତିସ୍ଥଳ । ଯୁଗଯୁଗ ଧରି ମୌସୁମୀ-ପ୍ରବାହକୁ ନିୟନ୍ତ୍ରିତ କରି ଭାରତୀୟ କୃଷିଭିତ୍ତିକ ସଂସ୍କୃତି ଓ ଅର୍ଥନୀତି ଉପରେ ପ୍ରଭାବ ପକାଇ ଆସିଛି ଏହି ହିମାଳୟ । ଭାରତୀୟମାନଙ୍କର ଧାରଣା ଯେ ଏହା ଯୁଗଯୁଗ ଧରି ମୁନି, ଋଷି, ସାଧୁ, ସନ୍ଥମାନଙ୍କର ବାସସ୍ଥାନ ହୋଇ ରହି ଆସିଛି । ବୌଦ୍ଧଜାତକ ଗଳ୍ପଗୁଡ଼ିକୁ ଅନୁଧ୍ୟାନ କଲେ ଦେଖାଯା'ଏ ଯେ ବୋଧିସତ୍ତ୍ୱ ଏହି ହିମାଳୟ ଅଞ୍ଚଳରେ ହିଁ ଋଷିପ୍ରବ୍ରଜ୍ୟା ନେଇଛନ୍ତି । ସେହି ଜାତକୀୟ ପରଂପରା ଅନୁସାରେ ହିମାଳୟ ଅଞ୍ଚଳରେ ଥିବା ଏକ ପବିତ୍ର ଜମ୍ବୁ ବୃକ୍ଷର ନାମ ଅନୁସାରେ ଏ ଦେଶର ପ୍ରାଚୀନ ନାମ ଥିଲା ଜମ୍ବୁଦ୍ୱୀପ । ପ୍ରାଚୀନ ଗ୍ରନ୍ଥମାନଙ୍କରେ ସର୍ବତ୍ର ଆମେ ଏହି ଜମ୍ବୁଦ୍ୱୀପର ନାମୋଲ୍ଲେଖ ହିଁ ପାଇଥାଉ । ଖାରବେଳ (ଖ୍ରୀ: ପୂ. ୨ୟ ଶତାବ୍ଦୀ) ହେଉଛନ୍ତି ପ୍ରଥମ ସମ୍ରାଟ ଯେ କି ତାଙ୍କ ଉଦୟଗିରିସ୍ଥ ଶିଳାଲେଖରେ 'ଭାରତବର୍ଷ'ର ନାମୋଲ୍ଲେଖ କରିଛନ୍ତି । ଅନେକ ଗବେଷକଙ୍କ ମତରେ କିମ୍ବଦନ୍ତୀର 'ଭରତ' ରାଜାଙ୍କ ଦାୟାଦମାନେ ଏହି ଦେଶରେ ରାଜତ୍ୱ କରୁଥିବାରୁ ଏହାର ନାମ ହୋଇଛି ଭାରତବର୍ଷ । ଭାରତୀୟ ସଂବିଧାନ ଆମ ଦେଶପାଇଁ ଏହି 'ଭାରତବର୍ଷ' ନାମଟିକୁ ଗ୍ରହଣ କରିଛି । କିନ୍ତୁ ପାଶ୍ଚାତ୍ୟ ଦେଶମାନଙ୍କରେ ଏହାର ପରିଚିତ ନାମ ହେଉଛି, ହିନ୍ଦୁସ୍ଥାନ । ପାରସ୍ୟର ଅଧିବାସୀମାନେ 'ସିନ୍ଧୁ' ଶବ୍ଦଟିକୁ 'ହିନ୍ଦୁ' ଭାବରେ ଉଚ୍ଚାରଣ କରୁଥିଲେ ଏବଂ ସେଠାକାର ଲୋକମାନଙ୍କୁ

ମଧ୍ୟ ହିନ୍ଦୁ ବୋଲି କହି ସେମାନଙ୍କ ଦ୍ୱାରା ଅଧ୍ୟୁଷିତ ଦେଶକୁ କହୁଥିଲେ ହିନ୍ଦୁସ୍ଥାନ । ଏହିଠାରୁ 'ହିନ୍ଦୁ' ନାମଟି ଗଲା ଗ୍ରୀସ୍ ଦେଶକୁ ଏବଂ କାଳକ୍ରମେ ଏହି ଦେଶ ଏହାର ପଶ୍ଚିମ ଭାଗରେ ବହୁଥିବା ଗୋଟିଏ ନଦୀ ନାମରେ ହିଁ ନାମିତ ହେବାକୁ ଲାଗିଲା । ବାସ୍ତବିକ ଦେଖିବାକୁ ଗଲେ ଏହି ହିମାଳୟ ହିଁ ଏ ଦେଶକୁ ତା'ର ଏଭଳି ନାମଟି ଆଣି ଦେବାରେ ସହାୟକ ହୋଇଛି ।

ପୃଥିବୀ ବକ୍ଷରେ ଅତୀତରେ ମିଶରୀୟ, ରୋମୀୟ, ଗ୍ରୀକ୍ ଆଦି ବହୁ ଉନ୍ନତ ସଭ୍ୟତା ଓ ସଂସ୍କୃତିର ଅଭ୍ୟୁଦୟ ହୋଇଛି । ସେଗୁଡ଼ିକ ସୁଦୂରପ୍ରସାରୀ ସାମ୍ରାଜ୍ୟବାଦୀ ଶକ୍ତିର ବାହୁ ଛାୟା ତଳେ ଆଶ୍ରୟ ମଧ୍ୟ ପାଇଥିନ୍ତି । କିନ୍ତୁ ସେଗୁଡ଼ିକୁ କାଳ ସହି ପାରିନାହିଁ । ସେଗୁଡ଼ିକ କାଳଗର୍ଭରେ ଲୋପ ପାଇଯାଇଛନ୍ତି । ପ୍ରତ୍ନତତ୍ତ୍ୱ ଆସିନଥିଲେ ମିଶରର ସାଧାରଣ ମଣିଷ ଜାଣିପାରି ନଥାନ୍ତା ଯେ ସେ ଏତେ ବଡ଼ ମହାନ୍ ପ୍ରାଚୀନ ସଭ୍ୟତାର ଦାୟାଦ ବୋଲି । ଗ୍ରୀକ୍ ଓ ରୋମୀୟ ସଭ୍ୟତା ଓ ସଂସ୍କୃତି ପ୍ରତି ମଧ୍ୟ ଏହା ସମଧିକ ପ୍ରଯୁଜ୍ୟ । କିନ୍ତୁ ଭାରତୀୟ ସଂସ୍କୃତି କାଳକୁ ଜିଣି ଯାଇଛି । ହଜାର ହଜାର ବର୍ଷ ତଳେ ଯେଉଁ ମୂଲ୍ୟବୋଧମାନ ଭାରତୀୟ ଜନଜୀବନକୁ ଆଚ୍ଛନ୍ନ କରି ରଖିଥିଲା, ସେ-ବିଷୟରେ ଏବେ ମଧ୍ୟ ଭାରତୀୟ ସାଧାରଣ କୃଷକଟିଏ ସଚେତନ । ଭାରତୀୟମାନେ କେଉଁ ସଂସ୍କୃତିର ଦାୟାଦ ଅଳ୍ପ ବହୁତ ସେ କଥା ସମସ୍ତଙ୍କ ଜଣା । ଏହାର କାରଣ ତେବେ କ'ଣ ? ଏହାର ଏକମାତ୍ର କାରଣ ହେଉଛି, ଭାରତୀୟ ସଂସ୍କୃତି ତା'ର ନିରବଚ୍ଛିନ୍ନତା ରକ୍ଷାକରି ଚାଲିଛି । କାଳର କୁଟିଳ ଗତିରେ ତାହା ଲକ୍ଷ୍ୟଭ୍ରଷ୍ଟ ହୋଇନାହିଁ । ଏହା ଏହିପରି ନିରବଚ୍ଛିନ୍ନ ଭାବରେ ଯୁଗଯୁଗ ଧରି ମଧ୍ୟ ଚାଲିଥିବ । ଧର୍ମବାଦୀମାନେ ଏହାକୁ କହନ୍ତି ସନାତନ ଧର୍ମ, ଯାହାକି ଅତୀତରେ ଥିଲା, ବର୍ତ୍ତମାନ ଅଛି ଏବଂ ଭବିଷ୍ୟତରେ ମଧ୍ୟ ଥିବ । ବାସ୍ତବିକ ଭାରତୀୟ ସଂସ୍କୃତିର ଏହି କାଳଜୟୀ ବିଭାବଟି ହେଉଛି ଏହାର ଅବିଚ୍ଛିନ୍ନତାର କାରଣ । ଗବେଷକ ପଣ୍ଡିତମାନେ ସେଥିପାଇଁ ଯଥାର୍ଥରେ ମତ ବ୍ୟକ୍ତ କରିଥାନ୍ତି ଯେ ପୃଥିବୀରେ କେବଳ ଦୁଇଟି ସଂସ୍କୃତିର ଧାରା ଅବିଚ୍ଛିନ୍ନ ଭାବରେ ଯୁଗଯୁଗ ଧରି ବହିଚାଲିଛି । ଗୋଟିଏ ହେଉଛି ଭାରତୀୟ ସଂସ୍କୃତି ଏବଂ ଅପରଟି ହେଉଛି ଚୈନିକ ସଂସ୍କୃତି । କିନ୍ତୁ ଏଡ଼େ ବଡ଼ ମହାନ୍ ସଂସ୍କୃତିର ଅନୁଧ୍ୟାନ ବହୁ ଐତିହାସିକ କାରଣରୁ ସମ୍ୟକ୍ ଭାବରେ ହୋଇ ପାରିନଥିଲା ଏବଂ ବହିର୍ଜଗତ ଏହା ବିଷୟରେ ବହୁମାତ୍ରାରେ ଥିଲା ଅଜ୍ଞ । ଏହି ବିଷୟରେ ବିଧିବଦ୍ଧ ଭାବରେ ଉଦ୍ୟମ କରାଗଲା ଇଂରେଜମାନେ ଭାରତକୁ ଶାସନାଧୀନ ରଖିବା ପରେ ।

ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧରେ ୟୁରୋପୀୟ ପାଦ୍ରିମାନେ ଭାରତୀୟ ସାଧାରଣ ଜନତା ସହିତ ସଂଯୋଗ ସ୍ଥାପନର ଯଥେଷ୍ଟ ସୁଯୋଗ ପାଇବା ଅବସରରେ ଭାରତୀୟମାନଙ୍କର ସଂସ୍କୃତି-ସଚେତନତା ଲକ୍ଷ୍ୟକରି ବାସ୍ତବିକ୍ ଖୁବ୍ ବିସ୍ମିତ ହୋଇ ଉଠିଥିଲେ । ଭୁଲି ମଜୁରିଆ ଠାରୁ ଆରମ୍ଭ କରି ରଜା ମହାରଜା ପର୍ଯ୍ୟନ୍ତ ସମସ୍ତଙ୍କ ପାଖରେ ରାମ, କୃଷ୍ଣ ଆଦି ମହାମନୀଷୀମାନେ ଥିଲେ ନମସ୍ୟ । ସେମାନେ ସ୍ଥାନୀୟ ଭାଷାମାନ ଶିଖି ଜନଜୀବନ ସଂପର୍କରେ କିଛିଟା ଅନୁଧ୍ୟାନ କରିବାର ଚେଷ୍ଟା କରିଥିଲେ ହେଁ ଭାରତୀୟ ପ୍ରାଚୀନ ସଂସ୍କୃତି ବିଷୟରେ ଚର୍ଚ୍ଚା ବା ଗବେଷଣା କରିବା ପ୍ରତି ଆଦୌ ଦୃଷ୍ଟି ଦେଇନଥିଲେ କିମ୍ବା ସଂସ୍କୃତ ଭାଷା ଶିକ୍ଷା କରିବା ଉପରେ ମଧ୍ୟ ଗୁରୁତ୍ୱ ଦେଇନଥିଲେ । କିନ୍ତୁ ପରେ କ୍ରମେ କ୍ରମେ ପାଦ୍ରି ବିଦ୍ୱାନ୍ ମାନଙ୍କର ସଂସ୍କୃତ ଭାଷା ପ୍ରତି ଆଗ୍ରହ ଆସିବାକୁ ଲାଗିଲା । ଫାଦର ହାଙ୍କ୍‌ସଲ୍‌ଡେନ୍ (Father Hanxleden) ହେଉଛନ୍ତି ପ୍ରଥମ ଇଉରୋପୀୟ ପାଦ୍ରି ଯେ କି କେରଳରେ ରହୁଥିବା ସମୟରେ (୧୬୯୯ରୁ ୧୭୩୨ ପର୍ଯ୍ୟନ୍ତ) ୟୁରୋପୀୟ ଭାଷାରେ ପ୍ରଥମ ସଂସ୍କୃତ ବ୍ୟାକରଣ ପୁସ୍ତକ ଖଣ୍ଡିଏ ପ୍ରଣୟନ କଲେ । ଫାଦର କୋଏର୍ ଡୋକ୍ସ (Father Coerdoux) ଗବେଷଣା କରି (୧୭୬୭ରେ) ପ୍ରଥମେ ଦର୍ଶାଇ ଦେଲେ ଯେ ସଂସ୍କୃତ ଭାଷାର ୟୁରୋପୀୟ ଭାଷାମାନଙ୍କ ସହିତ ସୌସାଦୃଶ୍ୟ ରହିଅଛି । ପାଦ୍ରିମାନଙ୍କ ଉଦ୍ଦେଶ୍ୟ ଥିଲା ଭିନ୍ନ । ସେମାନେ ଚାହୁଁଥିଲେ ଖ୍ରୀଷ୍ଟଧର୍ମର ଉତ୍ତରୋତ୍ତର ପ୍ରସାର । ଏଣୁ ସେମାନେ ଭାରତତତ୍ତ୍ୱର ଗବେଷଣା ଦିଗରେ ବିଶେଷ କିଛି ଆଗେଇ ପାରି ନଥିଲେ । ଧର୍ମଗତ ଏକଦେଶଦର୍ଶିତା ହେତୁ ସେମାନଙ୍କ ପାଖରେ ଏ କାର୍ଯ୍ୟଟି କରିବା ପାଇଁ ନିଷ୍ଠା କିମ୍ବା ନିରପେକ୍ଷ ବିଚାରଭାବ ନଥିଲା । ଅତଏବ, ଏହି ଭାରତତତ୍ତ୍ୱର ଗବେଷଣା କାର୍ଯ୍ୟ ଅନ୍ୟାନ୍ୟ ଅନ୍ୟ ବ୍ୟକ୍ତିମାନଙ୍କ ଦ୍ୱାରା ହିଁ ସମାହିତ ହୋଇଥିଲା ।

ଏ ସଂପର୍କରେ ପ୍ରାତଃସ୍ମରଣୀୟ ବ୍ୟକ୍ତି ହେଉଛନ୍ତି ସାର୍ ଉଇଲିୟମ୍ ଜୋନ୍‌ସ୍ (୧୭୪୬-୯୪) ଯେ କି ଓ୍ୱାରେନ୍ ହେଷ୍ଟିଂସ୍ ଭାରତର ଗଭର୍ଣ୍ଣର ଜେନେରାଲ୍ ଥିବା ସମୟରେ କଲିକତାରେ ଥିବା ସୁପ୍ରିମ କୋର୍ଟର ବିଚାରପତି ହୋଇ ଆସିଥିଲେ । ଜୋନ୍‌ସ ଥିଲେ ଜଣେ ପ୍ରବୀଣ ଭାଷାତତ୍ତ୍ୱବିତ୍ । ସେତେବେଳେ ପଣ୍ଡିତମାନଙ୍କର ଧାରଣା ଥିଲା ଯେ ପୃଥିବୀର ସକଳ ଭାଷା ଇହୁଦୀମାନଙ୍କର ହିବ୍ରୁ ଭାଷାରୁ ଉଦ୍ଭୂତ । ସେ କିନ୍ତୁ ଗବେଷଣା କରି ପ୍ରମାଣ କରିଦେଲେ ଯେ ପାରସିକ ଭାଷା ଓ ଇଉରୋପୀୟ ଭାଷାମାନ ଆଦୌ ହିବ୍ରୁ ଭାଷାରୁ ଉଦ୍ଭୂତ ନୁହନ୍ତି । ଅନ୍ୟ ପକ୍ଷରେ ଏଗୁଡ଼ିକର ଜନନୀ ହେଉଛି ଆଉ ଏକ ଭାଷା । ତାଙ୍କର ଉଦ୍ୟମରେ ଏସିଆ ମହାଦେଶର ଇତିହାସ, ପ୍ରାଚୀନ ବସ୍ତୁ, କାରୁକଳା, ସାହିତ୍ୟ, ସଂସ୍କୃତି ବିଷୟରେ ବିଧିବଦ୍ଧ ଭାବରେ

ଅନୁସନ୍ଧାନ କରିବା ପାଇଁ କଲିକତାଠାରେ ଏସିଆଟିକ୍ ସୋସାଇଟି (Asiatic Society) ସ୍ଥାପିତ ହୋଇଥିଲା ୧୭୮୪ ମସିହାରେ । ସେ କଲିକତାସ୍ଥ ନିଜ ପଦବୀରେ ଯୋଗଦେବାର ପରବର୍ଷ ହିଁ ଏହି ସୋସାଇଟିକୁ ସ୍ଥାପିତ କରିଥିଲେ । ଏଥିରୁ ଏ ସଂପର୍କରେ ତାଙ୍କର କେତଲି ଉତ୍ସାହ, ଆଗ୍ରହ ଓ ଉତ୍କଣ୍ଠା ଥିଲା, ତାହା ସହଜରେ ଅନୁମେୟ । ୧୭୮୮ ମସିହାରେ ଏହି ସୋସାଇଟିର ମୁଖପତ୍ର ଇଂରାଜୀ ଭାଷାରେ 'ଏସିଆଟିକ୍ ରିସର୍ଚ୍ଚେସ୍ (Asiatic Researches) ନାମକ ଖଣ୍ଡିଏ ପତ୍ରିକା ପ୍ରକାଶିତ ହୋଇଥିଲା । ୧୮୧୪ ମସିହାରେ ସଂଗୃହୀତ ବିଭିନ୍ନ ପଦାର୍ଥମାନଙ୍କ ସଂରକ୍ଷଣ ଲାଗି ଗୋଟିଏ ସଂଗ୍ରହାଳୟ ସ୍ଥାପିତ ହୋଇଥିଲା ।

ଜୋନ୍ସଙ୍କ ପୂର୍ବରୁ ଇଷ୍ଟଇଣ୍ଡିଆ କମ୍ପାନୀ ଅଧୀନରେ ଚାକିରି କରିବା ପାଇଁ ଚାର୍ଲସ୍ ଉଇଲ୍‌କିନ୍‌ସ୍ (Charles Wilkins)ନାମକ ଜଣେ ଇଂରେଜ ଅଧିକାରୀ ଭାରତକୁ ଆସିଥିଲେ । ସଂସ୍କୃତ ଭାଷାରେ ତାଙ୍କର ଖୁବ୍ ବ୍ୟୁତ୍ପତ୍ତି ଥିଲା । ଜୋନ୍ସ ତାଙ୍କଠାରୁ ସଂସ୍କୃତ ଭାଷା ଶିଖିଲେ । ୧୭୮୪ ମସିହାରେ ଭଗବଦ୍‌ଗୀତାର ପ୍ରଥମ ଇଂରାଜୀ ଅନୁବାଦ ପ୍ରକାଶିତ ହେଲା । ବାସ୍ତବିକ୍, ଏହି ପୁସ୍ତକଟି ହେଉଛି ସଂସ୍କୃତ ଭାଷାରୁ ଇଂରାଜୀ ଭାଷାରେ ଅନୂଦିତ ବିଶ୍ୱର ପ୍ରଥମ ପୁସ୍ତକ । ସେ ମଧ୍ୟ ହିତୋପଦେଶର ଅନୁବାଦ (୧୭୮୭) ପରେ ପରେ କଲେ । ଜୋନ୍ସ୍ କାଳିଦାସଙ୍କ 'ଅଭିଜ୍ଞାନ ଶାକୁନ୍ତଳମ୍'ର ଇଂରାଜୀ ଅନୁବାଦ କଲେ ୧୮୮୯ ମସିହାରେ । ଏହା ଏତେ ଲୋକପ୍ରିୟ ହୋଇ ଉଠିଥିଲା ଯେ ସେତେବେଳେ ମଧ୍ୟ କୋଡ଼ିଏ ବର୍ଷରୁ କମ୍ ସମୟ ମଧ୍ୟରେ ଏହାର ପାଞ୍ଚଗୋଟି ସଂସ୍କରଣ ଶେଷ ହୋଇଗଲା । ପରେ ପରେ ସେ 'ଗୀତଗୋବିନ୍ଦ' (୧୭୯୨) ଓ 'ମନୁସ୍ମୃତି'ର (୧୭୯୪) ମଧ୍ୟ ଇଂରାଜୀ ଅନୁବାଦ କରିଥିଲେ । 'ଏସିଆଟିକ୍ ରିସର୍ଚ୍ଚେସ୍' ପତ୍ରିକାରେ ମଧ୍ୟ ଛୋଟ ବଡ଼ ଅନେକ ସଂସ୍କୃତ ପୁସ୍ତକର ଅନୁବାଦ ପ୍ରକାଶିତ ହୋଇଥିଲା ।

କିନ୍ତୁ ପ୍ରତ୍ନତତ୍ତ୍ୱ କହିଲେ ପ୍ରାଚୀନ ବସ୍ତୁମାନଙ୍କ ଉପରେ ବୈଜ୍ଞାନିକ ପଦ୍ଧତିରେ ଯେଉଁ ଗବେଷଣା କରିବାର ଅର୍ଥ ବୁଝାଏ, ତାହାର ସାମାନ୍ୟତମ ଅଂଶ ମାତ୍ର ସୋସାଇଟିର କାର୍ଯ୍ୟାବଳୀରେ ସେତେବେଳେ ସ୍ଥାନ ପାଇଥିଲା । ଏହା ଫଳରେ ଗବେଷଣାଲବ୍ଧ ବସ୍ତୁମାନଙ୍କୁ ଭିତ୍ତିକରି ସତ୍ୟାନୁଷ୍ଠ ନିର୍ଣ୍ଣୟରେ ପହଞ୍ଚିବା ସମ୍ଭବପର ହୋଇ ପାରୁ ନଥିଲା । ଏହି ଗବେଷଣା ବେଳେ ବେଳେ କମ୍ପ୍ରଦାୟାନୁଷ୍ଠ ଥିବା ହେତୁ ନିର୍ଣ୍ଣୟ ମାନଙ୍କରେ ବହୁ ଭ୍ରମପ୍ରମାଦ ଦୃଷ୍ଟିଗୋଚର ହେଉଥିଲା । ଏହାର ଅର୍ଥ ନୁହେଁ ଯେ ସୋସାଇଟି କିଛି ଭଲ କାମ କରି ନଥିଲା; ବରଂ ନିଶ୍ଚିତ ଭାବରେ ଏହା କେତେକ ଭଲ କାମ କରିଥିଲା ।

ଉଦାହରଣ ସ୍ୱରୂପ ଗ୍ୱାଲ୍ଟର୍ ୱଇଲ କିନ୍ସ (୧୭୮୮) ଗୁପ୍ତାକ୍ଷର ଓ କୁଟିଳାକ୍ଷରର ପାଠୋଦ୍ଧାର ପାଇଁ ଏକ ମୌଳିକ ସୂତ୍ର ବାହାର କରିଥିଲେ । ହୋରେସ୍ ହେମ୍ୟାନ୍ (Horace Hayman) ଆଫଗାନିସ୍ଥାନର ପ୍ରତ୍ନତତ୍ତ୍ୱ ଉପରେ ଯେଉଁ ଗବେଷଣା କରିଥିଲେ (୧୭୮୯ରୁ ୧୮୬୦ ପର୍ଯ୍ୟନ୍ତ) ତାହା ସେହି ସମୟ ପାଇଁ ଥିଲା ଖୁବ୍ ବସ୍ତୁନିଷ୍ଠ ଓ ଚମତ୍କାର୍ଯ୍ୟକ ।

ବାସ୍ତବରେ ୱଇଲ୍‌କିନ୍ସ୍ ଓ ଜୋନ୍ସ୍ ହେଉଛନ୍ତି ଭାରତତତ୍ତ୍ୱର (Indology) ପିତୃପୁରୁଷ ସମାନ । ତାଙ୍କ ପରେ ହେନରି କୋଲ୍ ବ୍ରୁକ୍ (Henry Colebrooke) (୧୭୬୫ରୁ ୧୮୩୭) ହୋରେସ୍ ହେମ୍ୟାନ (୧୭୮୯ରୁ ୧୮୬୦ପର୍ଯ୍ୟନ୍ତ) ମଧ୍ୟ ଏହା ଉପରେ ସମଧିକ ଗବେଷଣା କରିଥିଲେ । ଏ ଦିଗରେ ଉଲ୍ଲେଖଯୋଗ୍ୟ କାର୍ଯ୍ୟ ମଧ୍ୟ କରିଥିଲେ ଆଉ ଜଣେ ଗବେଷକ । ସେ ହେଉଛନ୍ତି ଜଣେ ଫରାସୀ ନାଗରିକ । ତାଙ୍କର ପାରସିକ ଭାଷାରେ ଯଥେଷ୍ଟ ଦକ୍ଷତା ଥିଲା । ସେ ସପ୍ତଦଶ ଶତାବ୍ଦୀରେ ଲେଖା ଯାଇଥିବା ପାରସିକ ଭାଷାର ଗୋଟିଏ ପାଣ୍ଡୁଲିପିକୁ ଭିତ୍ତି କରି ଚାରିଗୋଟି ଉପନିଷଦର ଫରାସୀ ଅନୁବାଦ (୧୭୮୬) କରିଥିଲେ । ପରେ ପରେ ଅବଶ୍ୟ ଏଥିରେ ଥିବା ପଚାଶ ଗୋଟି ଉପନିଷଦର ଫରାସୀ ଅନୁବାଦ (୧୭୦୧) ସେ ପ୍ରକାଶ କରିଥିଲେ ।

ଏହି ଅନୁବାଦଗୁଡ଼ିକ ପ୍ରକାଶିତ ହେବା ଫଳରେ ୟୁରୋପରେ ସଂସ୍କୃତ ଭାଷା ଓ ସାହିତ୍ୟ ପ୍ରତି କ୍ରମଶଃ ବିଦ୍ୱାନ୍ ମଣ୍ଡଳୀରେ ଆଗ୍ରହ ସୃଷ୍ଟି ହେବାକୁ ଲାଗିଲା । ଏହାର ଫଳଶ୍ରୁତି ସ୍ୱରୂପ ଫରାସୀ ସରକାର ପାରିସ୍‌ଠାରେ ପ୍ରାଚ୍ୟବିଦ୍ୟାର ଗବେଷଣା ପାଇଁ ଅନୁଷ୍ଠାନଟିଏ (୧୭୯୫) ପ୍ରତିଷ୍ଠା କଲେ, ଯାହା "Ecoledes Langues Orienteles Vivantes" ନାମରେ ଖ୍ୟାତ । ବଙ୍ଗଳାସ୍ଥ ଏସିଆଟିକ୍ ସୋସାଇଟିର ହାମିଲ୍‌ଟନ୍ ନାମକ ଜଣେ ପୂର୍ବତନ ସଭ୍ୟ ପ୍ୟାରିସ୍‌ଠାରେ କେତେ ଅଗ୍ରହୀ ବ୍ୟକ୍ତିମାନଙ୍କୁ ସଂସ୍କୃତ ଭାଷା ଶିକ୍ଷା ଦେବାକୁ ଲାଗିଲେ । College de France ରେ ସଂସ୍କୃତ-ଭାଷା ପାଇଁ ସର୍ବ ପ୍ରଥମ ବିଶ୍ୱବିଦ୍ୟାଳୟ-ଚେୟାର୍ ସୃଷ୍ଟି ହେଲା ୧୮୧୪ ମସିହାରେ । ଇଷ୍ଟ ଇଣ୍ଡିଆ କମ୍ପାନୀର ଅଧିକାରୀମାନଙ୍କୁ ତାଲିମ ଦେବା ପାଇଁ ଇଂଲଣ୍ଡର ହାର୍ଟଫୋର୍ଡ ଠାରେ ଯେଉଁ ତାଲିମ୍ କେନ୍ଦ୍ରଟି ସ୍ଥାପିତ କରାଯାଇଥିଲା, ସେଠାରେ ପ୍ରଥମ କରି ୧୮୦୫ ମସିହାରେ ସଂସ୍କୃତରେ ଶିକ୍ଷା ଦିଆଯିବାକୁ ଲାଗିଲା । ଭାରତକୁ ଜାଣିବାକୁ ହେଲେ ଓ ଭାରତୀୟ ଲୋକମାନଙ୍କ ସହିତ ନିବିଡ଼ ସଂପର୍କ ସ୍ଥାପନ କରିବାକୁ ହେଲେ ସଂସ୍କୃତ

ଭାଷା ଉପରେ ଜ୍ଞାନ ଯେ ନିତାନ୍ତ ଆବଶ୍ୟକ, ପରିଶେଷରେ ତାହା ଭାରତର ତତ୍କାଳୀନ ଶାସକ ଇଷ୍ଟ ଇଣ୍ଡିଆ କମ୍ପାନୀ ଯଥେଷ୍ଟ ଉପଲବ୍ଧି କରିଥିବାର ମନେହୁଏ । ଫ୍ରାନ୍ସରେ ସଂସ୍କୃତ ଭାଷାରେ ବିଶ୍ୱବିଦ୍ୟାଳୟ-ଚେୟାର୍ ସୃଷ୍ଟି ହେବା ପରେ ଧରେ ଲଣ୍ଡନ୍, କେମ୍ବ୍ରିଜ ଓ ଏଡ଼ିନ୍‌ବରା ବିଶ୍ୱବିଦ୍ୟାଳୟ ମାନଙ୍କରେ ମଧ୍ୟ ଏଭଳି ଚେୟାରମାନଙ୍କର ସୃଷ୍ଟି ହୋଇଥିଲା । କାଳକ୍ରମେ ଆମେରିକାର ବିଶ୍ୱବିଦ୍ୟାଳୟମାନେ ଓ ୟୁରୋପର ଅନ୍ୟ ବିଶ୍ୱବିଦ୍ୟାଳୟମାନେ ମଧ୍ୟ ଏହି ପଦାଙ୍କ ଅନୁସରଣ କରିଥିଲେ । ଏହିପରି ଭାବରେ ସାରା ବିଶ୍ୱରେ ସଂସ୍କୃତ ଚର୍ଚ୍ଚା ଲାଗି ଏକ ଅନୁକୂଳ ବାତାବରଣ ସୃଷ୍ଟି ହେବାକୁ ଲାଗିଲା ।

୧୮୧୬ ମସିହାଟି ହେଉଛି ତୁଳନାତ୍ମକ ଭାଷାତତ୍ତ୍ୱର ଜନ୍ମବର୍ଷ । ଏହାର ଜନ୍ମଦାତା ହେଉଛନ୍ତି ଫ୍ରାଁଜ୍ ବପ୍ (Franz Bopp) । ସେହି ବର୍ଷ ସେ ଜୋନ୍ସଙ୍କ ଗବେଷଣାକୁ ମୂଳସୂତ୍ର ସ୍ୱରୂପ ଗ୍ରହଣ କରି ପ୍ରମାଣ କରି ଦେଲେ ଯେ ସଂସ୍କୃତ ଓ ଇଉରୋପୀୟ ଶାସ୍ତ୍ରୀୟ (Classical) ଭାଷାମାନଙ୍କର ପିତୃ-ଭାଷା ହେଉଛି ଗୋଟିଏ । ସେହିଦିନଠାରୁ ୟୁରୋପର ତୁଳନାତ୍ମକ ଭାଷାତତ୍ତ୍ୱକୁ ଏକ ପୃଥକ୍ ବିଦ୍ୟାର ଆସନ ମିଳି ଆସିଛି । ପ୍ୟାରିସ୍‌ରେ ଫରାସୀ ଏସିଆଟିକ୍ ସୋସାଇଟିର ସ୍ଥାପନ (୧୮୨୧) ଏବଂ ଲଣ୍ଡନରେ ଲଣ୍ଡନ୍ ଏସିଆଟିକ୍ ସୋସାଇଟିର (୧୮୨୩) ସ୍ଥାପନ ପ୍ରାଚ୍ୟବିଦ୍ୟାର ଗବେଷଣାକୁ ଅଧିକତର ତ୍ୱରାନ୍ୱିତ କରିବାରେ ଯଥେଷ୍ଟ ସାହାଯ୍ୟ କରିଥିଲା । ଊନବିଂଶ ଶତାବ୍ଦୀରେ ପ୍ରାଚ୍ୟବିଦ୍ୟା ଗବେଷଣା କ୍ଷେତ୍ରରେ ସର୍ବବୃହତ୍ ସଫଳ ରୂପାୟନ ହେଉଛି ଏକ ବୃହଦାକାର ସଂସ୍କୃତ-ଜର୍ମାନ୍ ଅଭିଧାନର ପ୍ରଣୟନ । ଏହାର ପ୍ରଣେତା ଥିଲେ ଦୁଇଜଣ ଜର୍ମାନ୍ ଗବେଷକ, ଅଟୋ ବୋହ୍‌ଲିଙ୍କ୍ (Otto Bohtlingk) ଓ ରୁଡ଼ୋଲ୍‌ଫ୍ ରଥ୍ (Rudolf Roth) । ଏହି ଅଭିଧାନଟି ଖଣ୍ଡକୁ ଖଣ୍ଡ ହୋଇ ୧୮୫୨ ମସିହାରୁ ୧୮୭୫ ମସିହା ମଧ୍ୟରେ Russian Imperial Academi of Sciences ଦ୍ୱାରା ପ୍ରକାଶିତ ହୋଇଥିଲା । ଇଂଲଣ୍ଡର ସଂସ୍କୃତ ଭାଷା ଅଧ୍ୟୟନ ପ୍ରତି ଶ୍ରେଷ୍ଠ ଅବଦାନ ହେଲା ମ୍ୟାକ୍ସମୁଲର୍‌ଙ୍କ ଦ୍ୱାରା ଋଗ୍‌ବେଦର ଇଂରାଜୀ ଅନୁବାଦ ଏବଂ Sacred Books of the East ପର୍ଯ୍ୟାୟରେ ପଚାଶ ଖଣ୍ଡ ପ୍ରାଚ୍ୟ ପୁସ୍ତକର ସଂପାଦନା ସହିତ ଅନୁବାଦ । ଏହି ପୁସ୍ତକ ଗୁଡ଼ିକର ସଂପାଦନା ମଧ୍ୟ କରିଥିଲେ ସେହି ବିଶିଷ୍ଟ ଜର୍ମାନ ଗବେଷକ ଫ୍ରେଡ଼ରିକ୍ ମ୍ୟାକ୍ସମୁଲର୍ (୧୮୨୩-୧୯୦୦), ଯାହାଙ୍କ ଜୀବଦ୍ଦଶାର ଅଧିକାଂଶ ସମୟ ବିତିଥିଲା ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ତୁଳନାତ୍ମକ ଧର୍ମ ବିଭାଗର ଅଧ୍ୟାପକ ଭାବରେ ।

ଇତି ମଧ୍ୟରେ ଭାରତର ପ୍ରାଚୀନ ସଂସ୍କୃତି ବିଷୟକ ଅଧ୍ୟୟନ ଓ ଅନୁସଂଧାନ ଆଉ ଏକ ଦିଗରେ ମଧ୍ୟ ଆରମ୍ଭ ହୋଇଥିଲା । ତାହା ହେଉଛି, ପ୍ରତ୍ନତାତ୍ତ୍ୱିକ ଦିଗ । ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରୁ ଆରମ୍ଭ କରି ଊନବିଂଶ ଶତାବ୍ଦୀର ପ୍ରଥମ କେତେ ଦଶକ ପର୍ଯ୍ୟନ୍ତ ବଙ୍ଗଳାର ଏସିଆଟିକ୍ ସୋସାଇଟିର ସଭ୍ୟମାନେ ସେମାନଙ୍କ ଗବେଷଣାର ପରିସରଟିକୁ ସଂପୂର୍ଣ୍ଣ ଭାବରେ କେବଳ ସାହିତ୍ୟିକ ଓ ଭାଷାତାତ୍ତ୍ୱିକ ସୀମା ମଧ୍ୟରେ ଆବଦ୍ଧ କରି ରଖିଥିଲେ । ପ୍ରତ୍ନତାତ୍ତ୍ୱିକ ଗବେଷଣା ପ୍ରତି ସେମାନେ ଥିଲେ ବୀତସ୍ପୃହ । ସରକାରୀ ସ୍ତରରେ ଏଥିପ୍ରତି ଆଗ୍ରହର ପ୍ରଥମ ସୂଚନା ମିଳିଥିଲା ୧୮୦୦ ମସିହାରେ । ସେହି ବର୍ଷ ଭାରତର ଗଭର୍ଣ୍ଣର ଜେନେରାଲ୍ ୱେଲ୍‌ସଲିଙ୍କ ନିର୍ଦ୍ଦେଶରେ ଫ୍ରାନ୍‌ସିସ୍ ବୁଚାନାନ୍ ନାମକ ଜଣେ ପ୍ରତ୍ନତତ୍ତ୍ୱବିତ୍ ମହୀଶୂର ରାଜ୍ୟର ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ଲାଗି ପ୍ରେରିତ ହୋଇଥିଲେ । ପୁନଶ୍ଚ ୧୮୦୭ ମସିହାରେ ସେ ବଙ୍ଗଳାର ଭୂଗୋଳ, ଇତିହାସ ଓ ପ୍ରତ୍ନବସ୍ତୁମାନଙ୍କର ସର୍ବେକ୍ଷଣ ଲାଗି ନିଯୁକ୍ତ ହୋଇଥିଲେ । ସେହି ସମୟରେ ତତ୍କାଳୀନ ବଙ୍ଗଳା ପ୍ରଦେଶ ଅନ୍ତର୍ଗତ ଓଡ଼ିଶାକୁ ମଧ୍ୟ ସେ ଆସିଥିଲେ ଏବଂ ସେହି ଅବସରରେ ପୁରୀର ରଥଯାତ୍ରା ବିଷୟରେ ସେ ଏକ ଚମତ୍କାର ବିବରଣୀ ଦେଇ ଯାଇଛନ୍ତି । ଦୁର୍ଭାଗ୍ୟବଶତଃ ତାଙ୍କ ସର୍ବେକ୍ଷଣ ବିବରଣୀ ଏପର୍ଯ୍ୟନ୍ତ ପ୍ରକାଶିତ ହୋଇନାହିଁ । କିନ୍ତୁ ୧୮୩୮ ମସିହାରେ ତାହାର ଯେଉଁ କେତେକ ଅଂଶ ମଣ୍ଟେଗୁମରି ମାର୍ଟିନ୍‌ଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା, ତହିଁରୁ ବୁଚାନାନ୍‌ଙ୍କ ପର୍ଯ୍ୟବେକ୍ଷଣର ତୀକ୍ଷ୍ଣତା ଓ ସତ୍ୟାନୁସନ୍ଧିତାର ସୂଚନା ମିଳିଥାଏ ।

୧୮୩୮ ମସିହାରେ ପ୍ରତ୍ନତାତ୍ତ୍ୱିକ ଗବେଷଣା ଏକ ନୂତନ ମୋଡ଼ ନେଲା । ସେତେବେଳେ କଲିକତାସ୍ଥ ମୁଦ୍ରାଶାଳାରେ ଜେମସ୍ ପ୍ରିନ୍‌ସେପ୍ ନାମକ ଜଣେ ବ୍ୟକ୍ତି ମୁଦ୍ରାପରୀକ୍ଷକ (Assay Master) ନାମରେ କାର୍ଯ୍ୟ କରୁଥିଲେ । ସେ ମଧ୍ୟ ଥିଲେ ବଙ୍ଗଳା ଏସିଆଟିକ୍ ସୋସାଇଟିର ସଂପାଦକ । ସେହି ବର୍ଷ ସେ ବ୍ରାହ୍ମୀ-ଲିପିର ପାଠୋଦ୍ଧାର ସୂତ୍ର ଆବିଷ୍କାର କଲେ । ତାଙ୍କୁ ଏ ବିଷୟରେ ସାହାଯ୍ୟ କରିଥିଲେ କଲିକତାସ୍ଥ ମୁଦ୍ରାଶାଳାର ଜଣେ କର୍ମଚାରୀ ଆଲେକ୍‌ଜାଣ୍ଡର କନିଂହାମ୍ ଯେ କି ଥିଲେ ଜଣେ ଯନ୍ତ୍ରୀ । ପ୍ରିନ୍‌ସେପ୍‌ଙ୍କ ଉପରେ ନିର୍ଭର କରି ଅଶୋକଙ୍କ ଶିଳାଲିପି-ମାନଙ୍କର ପାଠୋଦ୍ଧାର କରାଯାଇ ପାରିଲା ଏବଂ ସେଥିରେ ଉଲ୍ଲେଖ ଥିବା ସମସାମୟିକ ଗ୍ରୀକ୍ ଶାସକମାନଙ୍କୁ ଚିହ୍ନିତ କରାଯାଇ ପାରିଥିଲା । ଗ୍ରୀକ୍ ଶାସକମାନଙ୍କ ରାଜତ୍ୱକାଳ ଜଣାଥିବାରୁ ତାହାର ଭିତ୍ତିରେ ଅଶୋକଙ୍କ ରାଜତ୍ୱକାଳକୁ ମଧ୍ୟ ସ୍ଥିର କରାଯାଇ ପାରିଲା । ଆଲେକ୍‌ଜାଣ୍ଡରଙ୍କ ସମସାମୟିକ ଗ୍ରୀକ୍ ବିବରଣୀରେ ବର୍ଣ୍ଣିତ ଭାରତ ସମ୍ରାଟ୍ 'ସାଣ୍ଡ୍ରୋକୋଟସ୍'ଙ୍କୁ ଅଶୋକଙ୍କ ପିତାମହ ମୌର୍ଯ୍ୟ ସମ୍ରାଟ 'ଚନ୍ଦ୍ରଗୁପ୍ତ' ରୂପେ ଚିହ୍ନିତ କରାଯାଇ ପାରିଲା ।

ଏହି ସମୟରେ ଜେମ୍‌ସ୍ ଫର୍ଗୁସନ୍‌ଙ୍କ କାର୍ଯ୍ୟ ମଧ୍ୟ ଉଲ୍ଲେଖଯୋଗ୍ୟ । ସେ ଥିଲେ ସ୍ଥାପତ୍ୟକଳାର ଜଣେ କୁଶଳୀ ପରୀକ୍ଷକ । ଦୀର୍ଘ ଅଠର ବର୍ଷ କାଳ ଧରି (୧୮୨୯ରୁ ୧୮୪୭ ପର୍ଯ୍ୟନ୍ତ) ସେ ଭାରତର ବିଭିନ୍ନ ସ୍ତୂପ, ମନ୍ଦିର ଆଦିର ସର୍ବେକ୍ଷଣ ପୂର୍ବକ ସେଗୁଡ଼ିକର ଯଥାଯଥ ବର୍ଗୀକରଣ କରିଥିଲେ ।

ଏହି ସମୟରେ କିନ୍ତୁ କମ୍ପାନୀ ସରକାର ପ୍ରତ୍ନତାତ୍ତ୍ୱିକ ଗବେଷଣା ପ୍ରତି ଯେତେଟା ଆଗ୍ରହ ପ୍ରଦର୍ଶନ କରିବାର କଥା, ତାହା କରିନଥିଲେ । ସେମାନଙ୍କ କାର୍ଯ୍ୟାବଳୀ ବୁଚ୍‌ନାନ୍‌ଙ୍କୁ ମହୀଶୂର ଓ ବଙ୍ଗଳାକୁ ସର୍ବେକ୍ଷଣ ଲାଗି ପ୍ରେରଣ କରିବା ଏବଂ ଦିଲ୍ଲୀ ଓ ଆଗ୍ରାର କେତେକ ପ୍ରାଚୀନ କୀର୍ତ୍ତିକୁ ମରାମତି କରିବା ମଧ୍ୟରେ ହିଁ ସୀମିତ ଥିଲା । ଏ ପ୍ରକାର ସ୍ଥାଣୁ ଅବସ୍ଥାରେ ସାମାନ୍ୟ ମାତ୍ର କମ୍ପନ ସୃଷ୍ଟି କରିଥିଲା ୧୮୪୪ ମସିହାର ଇଂଲଣ୍ଡସ୍ଥିତ ରୟାଲ୍ ଏସିଆଟିକ୍ ସୋସାଇଟିର ଅନୁରୋଧ-ପତ୍ରଟି । ଏହି ପତ୍ରରେ ଅଜନ୍ତା ଓ ଅନ୍ୟାନ୍ୟ ଗୁମ୍ଫା ଗୁଡ଼ିକର ଚିତ୍ରାବଳୀକୁ ନକଲ କରିବା ପାଇଁ ଓ ଗୁମ୍ଫା ଗୁଡ଼ିକର ସମ୍ୟକ୍ ସଂରକ୍ଷଣ ଲାଗି କମ୍ପାନି ସରକାରଙ୍କୁ ଅନୁରୋଧ କରାଯାଇଥିଲା । ତଦନୁଯାୟୀ ଗୋଟିଏ ଆୟୋଗ (Commission) ବସାଇବା ଲାଗି କଂପାନୀର ବୋର୍ଡ ଅଫ୍ ଡାଇରେକ୍ଟରସ୍ ସ୍ଥିରକଲେ । ଏଭଳି ଆୟୋଗଟିଏ ବସାଇବା ପୂର୍ବରୁ ଯୋଗ୍ୟ ବ୍ୟକ୍ତିମାନଙ୍କଦ୍ୱାରା ଭାରତରେ ଥିବା ସ୍ଥାପତ୍ୟମାନଙ୍କର ଏକ ପ୍ରାରମ୍ଭିକ ବିବରଣୀ ପ୍ରସ୍ତୁତ କରିବା ପାଇଁ ଗଭର୍ଣ୍ଣର ଜେନ୍‌ରାଲ ଲର୍ଡ ହାର୍ଡ଼ିଞ୍ଜ୍ ଆଦେଶ ଦେଇଥିଲେ । ତଦନୁଯାୟୀ ଦେଶର ଚତୁର୍ଦ୍ଦିଗକୁ ତଦ୍‌ବିଦ କର୍ମଚାରୀମାନେ ପ୍ରେରିତ ହୋଇଥିଲେ । ଏତିକରେ ହିଁ ଏହି କାର୍ଯ୍ୟଟି ଅଟକି ଯାଇଥିଲା; ଆଉ କିଛି ଅଗ୍ରସର ହୋଇ ନଥିଲା ।

ଏହି ଅଚଳ ଅବସ୍ଥାଟି ଦୂର 'ହେଲା ୧୮୬୧ ମସିହାରେ ଆଲେକ୍‌ଜାଣ୍ଡର କନିଙ୍ଗ୍‌ହାମଙ୍କ ଦ୍ୱାରା । ତାଙ୍କର ପ୍ରରୋଚନାରେ ଭାରତର ତତ୍କାଳୀନ ଗଭର୍ଣ୍ଣର ଜେନେରାଲ୍ ଲର୍ଡ କ୍ୟାନିଙ୍ଗ୍ ଭାରତୀୟ ପ୍ରତ୍ନତାତ୍ତ୍ୱିକ 'ସର୍ବେକ୍ଷଣ ସଂସ୍ଥା'' (Archaeological Survey of India) ପ୍ରଥମ କରି ସ୍ଥାପନ କଲେ । ଏହି ସଂସ୍ଥାଟିର ପ୍ରଥମ ସର୍ବେକ୍ଷଣକାରୀ (Surveyer) ହେଲେ ସ୍ୱୟଂ କନିଙ୍ଗ୍‌ହାମ୍ । ଏହି ସଂସ୍ଥାଦ୍ୱାରା ପ୍ରାଥମିକ ଅବସ୍ଥାରେ ଉତ୍ତର-ଭାରତର ବହୁ ପ୍ରତ୍ନତାତ୍ତ୍ୱିକ ସ୍ଥଳୀମାନଙ୍କର ସର୍ବେକ୍ଷଣ କରାଯାଇ ବିବରଣୀମାନ ପ୍ରକାଶିତ ହୋଇଥିଲା । କିନ୍ତୁ କୌଣସି କାରଣରୁ ଏହି ସଂସ୍ଥାଟିକୁ ୧୮୬୫ ରେ ବନ୍ଦ କରି ଦିଆଯାଇଥିଲା । ଅବଶ୍ୟ ପରେ (୧୮୭୦) ଏହି ସଂସ୍ଥାଟିକୁ ପୁନରୁଜ୍ଜୀବିତ କରାଯାଇଥିଲା । ସେତେବେଳେ କନିଙ୍ଗହାମଙ୍କୁ ଏହାର

ମହାନିର୍ଦ୍ଦେଶକ (Director-General) ଭାବରେ ନିଯୁକ୍ତ କରାଯାଇଥିଲା । ସ୍ୱଳ୍ପ କାଳ ପାଇଁ ନେତୃତ୍ୱ ଦେବା ଅବସ୍ଥାରେ ଥାଇ ମଧ୍ୟ ଏହି ନୂତନ ଭାବରେ ଗଠିତ ସଂସ୍ଥାଟିରେ କନିଙ୍ଗ୍ହାମଙ୍କର ଉଜ୍ଜ୍ୱଳ ସ୍ୱାକ୍ଷର ବିଦ୍ୟମାନ । ପ୍ରାଥମିକ ଅବସ୍ଥାରେ ସେ ଯେଉଁ ପ୍ରତ୍ନତାତ୍ତ୍ୱିକ ତଥ୍ୟମାନଙ୍କ ଉପରେ ଭିତ୍ତି କରି ନିର୍ଣ୍ଣୟମାନ କରିଥିଲେ ତାହା ଭବିଷ୍ୟତରେ ଗବେଷକମାନଙ୍କ ଲାଗି ଯଥେଷ୍ଟ ସହାୟକ ଥିଲା । ଅନ୍ୟାନ୍ୟ ବିଷୟ-ମାନଙ୍କ ସହିତ ସେ :

କ—ଆଲେକ୍ଜାଣ୍ଡରଙ୍କ ଭାରତ ଆକ୍ରମଣ ସହିତ ସଂପୃକ୍ତ ତକ୍ଷଶିଳା ନଗରୀ ଓ ସଙ୍ଗଳା ଦୁର୍ଗ ଭଳି ପ୍ରାଚୀନ ନଗରୀମାନଙ୍କୁ ଚିହ୍ନିତ କରିଥିଲେ

ଖ—ବୁଦ୍ଧଙ୍କ ଜୀବନୀ ସହିତ ଘନିଷ୍ଠ ଭାବରେ ସଂପୃକ୍ତ ସଂକିଶା, ଶ୍ରାବସ୍ତୀ ଓ କୌଶାମ୍ବୀ ନଗରୀମାନଙ୍କୁ ଚିହ୍ନିତ କରିଥିଲେ ;

ଗ—'ବାହାରୁତ' ସ୍ତୂପକୁ ଆବିଷ୍କାର କରିଥିଲେ ଏବଂ ତହୁପରି ଉତ୍କୀର୍ଣ୍ଣ ହୋଇ-ଥିବା କେତେକ ବୌଦ୍ଧଜାତକର ଚିତ୍ରକୁ ଚିହ୍ନିତ କରିଥିଲେ ;

ଘ—ସମ୍ରାଟ୍ ଅଶୋକଙ୍କ ସମୟଜ୍ଞାପକ ତିନିଗୋଟି ଶିଳାଲେଖ ଆବିଷ୍କାର କରିଥିଲେ ;

ଙ—ବିଲ୍ସର୍, କୁଠାର, ଭିତରଗାଁ ଓ ଦେଓଗଡ଼ଠାରେ ଥିବା ମନ୍ଦିର-ଗାତ୍ରରେ ଗୁପ୍ତରାଜାମାନଙ୍କର ମନ୍ଦିର-ନିର୍ମାଣ-ଶୈଳୀ ଆବିଷ୍କାର କରିଥିଲେ ;

ଚ—ଏରାଣ, ଉଦୟଗିରି (ମଧ୍ୟପ୍ରଦେଶ) ଓ ଅନ୍ୟାନ୍ୟ ସ୍ଥାନମାନଙ୍କରେ ଥିବା ଆଉ ଏକ ଶକ୍ତିଶାଳୀ ରାଜବଂଶର ମନ୍ଦିର-ନିର୍ମାଣ-ଶୈଳୀ ଆବିଷ୍କାର କରିଥିଲେ ଏବଂ

ଛ—ତାଙ୍କ ସହକାରୀମାନଙ୍କୁ ବକ୍ତ୍ରୀୟ ଲିପିରେ ଲିଖିତ ଅଶୋକଙ୍କର ଦ୍ୱାଦଶ ଅନୁଶାସନଟିର ଆବିଷ୍କାର ଓ ପାଠୋଦ୍ଧାରରେ ସହାୟତା ଓ ନେତୃତ୍ୱ ପ୍ରଦାନ କରିଥିଲେ ।

କନିଙ୍ଗ୍ହାମ୍ଙ୍କ ପରେ ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣର ମହାନିର୍ଦ୍ଦେଶକ (Director General) ହେଲେ ବାର୍ଜେସ୍ । କିନ୍ତୁ ବାର୍ଜେସଙ୍କ ପରେ ଏହି

ସଂସ୍ଥାଟିକୁ ଲୋପ କରି ଦିଆଗଲା ଏବଂ ପ୍ରତ୍ନତାତ୍ତ୍ୱିକ ଗବେଷଣା ଓ ପ୍ରାଚୀନକୀର୍ତ୍ତିର ରକ୍ଷଣାବେକ୍ଷଣର ଦାୟିତ୍ୱ ପ୍ରାଦେଶିକ ସରକାରଙ୍କ ଠାରେ ନ୍ୟସ୍ତ କରାଗଲା । ଏହା ଥିଲା ଭାରତୀୟ ପ୍ରତ୍ନତାତ୍ତ୍ୱିକ ଗବେଷଣା ଲାଗି ଏକ ଚରମ ଦୁର୍ଦ୍ଦଶାମୟ ସମୟ । ଅର୍ଥାଭାବ ଓ କେନ୍ଦ୍ରୀୟ ପୃଷ୍ଠପୋଷକତାର ଅଭାବରୁ ଏହାର ଅଗ୍ରଗତିରେ ଏକ ପ୍ରକାର ସ୍ଥାଣୁତ୍ୱ ଆସିଥିଲା । କିନ୍ତୁ ଏ ଅବସ୍ଥାଟି ସୁଧୁରିଗଲା ୧୯୦୧ ମସିହାରେ ଲର୍ଡ଼ କର୍ଜନ୍ ଭାରତର ଗଭର୍ଣ୍ଣର ଜେନେରାଲ୍ ଥିବା ସମୟରେ । ପ୍ରତ୍ନତତ୍ତ୍ୱ ସଂପର୍କୀୟ ତାଙ୍କ ଧାରଣା ଥିଲା ବହୁମୁଖୀ । ଅନୁସଂଧାନ, ଖନନ, ଗବେଷଣା, ଅଭିଲେଖମାନଙ୍କ ପାଠୋଦ୍ଧାର ଓ ପ୍ରକାଶନ ଏବଂ ପ୍ରାଚୀନ କୀର୍ତ୍ତିମାନଙ୍କର ସଂରକ୍ଷଣ ମାଧ୍ୟମରେ ଏକ ସମନ୍ୱିତ ପ୍ରତ୍ନତତ୍ତ୍ୱ-ନୀତି ପ୍ରଣୟନ କରିବା ପାଇଁ ସେ ଆଗେଇ ଆସିଲେ । ଏହା ଫଳରେ ୧୯୦୨ ମସିହାରେ ପୁନର୍ବାର ପ୍ରତ୍ନତତ୍ତ୍ୱ ବିଷୟଟି କେନ୍ଦ୍ର ସରକାରଙ୍କ ଅଧୀନକୁ ଫେରି ଆସିଲା ଏବଂ ପୁନର୍ବାର ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣର ମହାନିର୍ଦ୍ଦେଶକ ପଦବୀର ସୃଷ୍ଟି ହେଲା । ଏହାର ମହାନିର୍ଦ୍ଦେଶକ ହୋଇ ଆସିଥିଲେ ଛବିଶ ବର୍ଷ ବୟସର ଉଦ୍ୟମୀ ଯୁବକ ଜନ୍ ମାର୍ଶାଲ (ପରେ ହୋଇଥିଲେ ସାର୍) । ଲର୍ଡ଼ କର୍ଜନ ପ୍ରତ୍ନତାତ୍ତ୍ୱିକ ଗବେଷଣା ପ୍ରତି କିପରି ଆଗ୍ରହୀ ଥିଲେ ତାହା ତାଙ୍କ ଭାଷଣର ନିମ୍ନୋକ୍ତ କିୟଦଂଶରୁ ବୁଝାଯିବ । ସେ କହିଥିଲେ :

"ପ୍ରାଚୀନ ଅଭିଲେଖମାନଙ୍କ ପାଠୋଦ୍ଧାର ଲାଗି ଗବେଷଣା ପଛରେ ପଡ଼ିଯିବା ଉଚିତ ନୁହେଁ କିମ୍ବା ଗବେଷଣା ପ୍ରାଚୀନ-କୀର୍ତ୍ତି ସଂରକ୍ଷଣ ପଛରେ ପଡ଼ିଯିବା ଉଚିତ ନୁହେଁ । ମୋ ମତରେ ଖନନ କରିବା, ଆବିଷ୍କାର କରିବା, ବର୍ଗୀକରଣ କରିବା, ଉତ୍ପାଦନ କରିବା, ବର୍ଣ୍ଣନା କରିବା, ନକଲ କରିବା, ପାଠୋଦ୍ଧାର କରିବା ଏବଂ ସଂରକ୍ଷଣ କରିବା— ଏ ସମସ୍ତ ବିଷୟରେ ଆମ୍ଭମାନଙ୍କର ସେହି ଗୋଟିଏ ପ୍ରକାରର କର୍ତ୍ତବ୍ୟ ପାଳନ କରିବାକୁ ରହିଛି ।" *

ଖୁବ୍ ଅଳ୍ପ ସମୟ ମଧ୍ୟରେ (୧୯୦୨ରୁ ୧୯୨୧) ମାର୍ଶାଲ୍ ଦେଶର ପ୍ରତ୍ନତାତ୍ତ୍ୱିକ କାର୍ଯ୍ୟାବଳୀକୁ ପୁନର୍ଗଠିତ କରିପାରି ଥିଲେ । ତାଙ୍କ ସମୟରେ ପ୍ରାଚୀନ କୀର୍ତ୍ତି-ମାନଙ୍କର ସଂରକ୍ଷଣ ଲାଗି ଦେଶରେ ଏକ ଆଇନର ପ୍ରଣୟନ କରାଯାଇଥିଲା । ତାହା

---

* ତା ୬ । ୧ । ୧୯୦୦ରେ ଲର୍ଡ଼ କର୍ଜନଙ୍କ ଦ୍ୱାରା ବେଙ୍ଗଲ ଏସିଆଟିକ୍ ସୋସାଇଟିରେ ପ୍ରଦତ୍ତ ଭାଷଣର ଅନୁବାଦ ।

ହେଉଛି 'ପ୍ରାଚୀନକୀର୍ତ୍ତି' ସଂରକ୍ଷଣ ଆଇନ, ୧୯୦୪ (Ancient Monuments Preservation Act 1904) । ଏହାର ଉଦ୍ଦେଶ୍ୟ ଥିଲା—ପ୍ରାଚୀନ କୀର୍ତ୍ତିମାନଙ୍କର ସଂରକ୍ଷଣ, ଖୋଦନ କାର୍ଯ୍ୟମାନଙ୍କର ଦୃଢ଼ ନିୟନ୍ତ୍ରଣ ଏବଂ ପ୍ରାଚୀନକୀର୍ତ୍ତି ତଥା କାରୁକଳା-ସମ୍ବନ୍ଧିତ ବସ୍ତୁମାନଙ୍କର ସୁରକ୍ଷା । ଅଦ୍ୟାବଧି ଦେଶର ପ୍ରାଚୀନ କୀର୍ତ୍ତି-ମାନଙ୍କର ସଂରକ୍ଷଣ ଓ ରକ୍ଷାଲାଗି ଏହି ଆଇନଟି ଲାଗୁ ରହିଛି ।

ମାର୍ଶାଲ୍‌ଙ୍କ ସମୟରେ ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ ଆଉ ଗୋଟିଏ ନୂତନ ଅଭିମୁଖ୍ୟ ଗ୍ରହଣ କଲା ଯାହା ଫଳରେ କି ଭାରତୀୟ ସଂସ୍କୃତି ଓ ସଭ୍ୟତାକୁ ପ୍ରାୟ ଆଉ ଦୁଇ ସହସ୍ରାବ୍ଦୀ ପଛକୁ ଘୁଞ୍ଚାଇନେବା ସମ୍ଭବ ହୋଇ ପାରିଲା । କନିଙ୍ଗ୍‌ହାମ୍‌ଙ୍କ ସମୟରେ ବୁଦ୍ଧଙ୍କ ସହିତ ସଂପୃକ୍ତ ସ୍ଥାନମାନଙ୍କର (ଖ୍ରୀ. ପୂ. ୬ଷ୍ଠ ଶତାବ୍ଦୀ) ଖନନ ଉପରେ ବିଶେଷ ଗୁରୁତ୍ୱ ଦିଆ ଯାଉଥିଲା । ବୌଦ୍ଧ-ଜାତକ ଗଳ୍ପମାନଙ୍କରେ ବିଭିନ୍ନ ସ୍ଥାନମାନଙ୍କର ବର୍ଣ୍ଣନା ଥିଲେ ମଧ୍ୟ ସେଗୁଡ଼ିକୁ ପୂର୍ବରୁ ସ୍ଥାନିତ କରାଯାଇ ପାରି ନଥିଲା । ଜାତକ-ଗଳ୍ପ ଗୁଡ଼ିକରେ ରାଜ-ନବରଙ୍ଗିମାନ କାଷ୍ଠନିର୍ମିତ ଥିବାର ବର୍ଣ୍ଣନା ଥିଲେ ମଧ୍ୟ ତାହାର ପ୍ରତ୍ନତାତ୍ତ୍ୱିକ ପ୍ରମାଣମାନ ପୂର୍ବରୁ ମିଳି ନଥିଲା । କନିଙ୍ଗହାମଙ୍କ ସମୟରେ ଓ ପରେ ହୋଇଥିବା ପ୍ରତ୍ନତାତ୍ତ୍ୱିକ ଭୂଖନନ ଫଳରେ ଆଧୁନିକ ପାଟଣାଠାରେ ପ୍ରାଚୀନ ପାଟଳୀ-ପୁତ୍ର ନଗରୀର ଧ୍ୱଂସାବଶେଷ ଆବିଷ୍କୃତ ହୋଇପାରିଥିଲା ଏବଂ ବୁଦ୍ଧକାଳୀନ ଓ ଏହାର ପରବର୍ତ୍ତୀ ମୌର୍ଯ୍ୟକାଳୀନ ମଗଧରାଜାମାନଙ୍କର ପ୍ରାସାଦ କାଷ୍ଠନିର୍ମିତ ବୋଲି ପ୍ରମାଣ ମିଳି ପାରିଥିଲା । ଏ ସଂପର୍କରେ ମେଘାସ୍ଥିନିସ୍‌ଙ୍କ ବିବରଣୀର ସତ୍ୟତା ପ୍ରମାଣିତ ହୋଇଗଲା । ଏହାଛଡ଼ା ବୁଦ୍ଧଙ୍କ ସହିତ ସମ୍ପୃକ୍ତ ଏବଂ ବୁଦ୍ଧଙ୍କ ପରବର୍ତ୍ତୀ ବୌଦ୍ଧଯୁଗ ସହିତ ସଂପୃକ୍ତ ଅନେକ ସ୍ଥାନମାନଙ୍କୁ ଚିହ୍ନିତ କରାଯାଇ ପାରିଥିଲା । ମାର୍ଶାଲଙ୍କ ନେତୃତ୍ୱରେ ୧୯୨୧ ମସିହାଠାରୁ ଆରମ୍ଭ କରି ତାଙ୍କର ଅବସର ଗ୍ରହଣ ପର୍ଯ୍ୟନ୍ତ (୧୯୨୮) ହରପ୍ପା (ପଞ୍ଜାବର ମଣ୍ଟଗୋମରି ଜିଲ୍ଲା—ବର୍ତ୍ତମାନ ପାକିସ୍ଥାନରେ) ଓ ମହେଞ୍ଜୋଦାରୋ ଠାରେ (ସିନ୍ଧୁ ପ୍ରଦେଶର ଲାର୍କନା ଜିଲ୍ଲା—ବର୍ତ୍ତମାନ ପାକିସ୍ଥାନରେ) ଯେଉଁ ବିସ୍ତୃତ ଖନନ-କାର୍ଯ୍ୟ ସମାହିତ ହୋଇଥିଲା, ତାହାଫଳରେ ଏକ ତାମ୍ରପ୍ରସ୍ତରଯୁଗୀୟ ସଭ୍ୟତା ଓ ସଂସ୍କୃତି ଆବିଷ୍କୃତ ହୋଇଥିଲା । ଏହା ସିନ୍ଧୁ ସଭ୍ୟତା ଓ ସିନ୍ଧୁ ସଂସ୍କୃତି ନାମରେ ପରିଚିତ । ଏହି ସଭ୍ୟତା ଓ ସଂସ୍କୃତିକୁ ତତ୍‌ବିଦମାନେ ଖ୍ରୀ: ପୂ: ୨୫୦୦ରେ ସ୍ଥାନିତ କରିଥାନ୍ତି । ଏହି ସଂସ୍କୃତିର ଆବିଷ୍କାର ଫଳରେ ଭାରତରେ ତାମ୍ରପ୍ରସ୍ତରଯୁଗ ଆଦୌ ନଥିଲା ବୋଲି ତତ୍‌ବିଦମାନଙ୍କର ଯେଉଁ ଭ୍ରମାତ୍ମକ ଧାରଣାଟି ପୂର୍ବରୁ ଥିଲା, ତାହା ବର୍ତ୍ତମାନ ପୂରାପୂରି ଦୂରୀଭୂତ ହୋଇଗଲା । ଏହି ଧ୍ୱଂସାବଶେଷର ଆବିଷ୍କାର ଫଳରେ ଭାରତୀୟ ପ୍ରତ୍ନତତ୍ତ୍ୱ ବୁଦ୍ଧଙ୍କ ସମୟରୁ

(ଖ୍ରୀ ପୂ ୬ଷ୍ଠ ଶତାବ୍ଦୀ) ଆଉ ପ୍ରାୟ ଦୁଇ ହଜାର ବର୍ଷତଳକୁ ଚାଲିଗଲା । ସେଠାରୁ ବାହାରିଥିବା ଅସଂଖ୍ୟ ମୃଣ୍ମୟ ମୋହର ମାନଙ୍କରେ ବ୍ୟବହୃତ ହୋଇଥିବା ଚିତ୍ରଲିପି ଏପର୍ଯ୍ୟନ୍ତ ମଧ୍ୟ ଅପଠିତ । ଅବଶ୍ୟ ଜି.ଆର.ହଣ୍ଟର, ଏସ. ଆର. ରାଓ, ବି.ବି. ଲାଲ ଆଦି କେତେକ ଗବେଷକ ଏ ଦିଗରେ ସାମାନ୍ୟତମ ଭାବରେ ସଫଳ ହୋଇଛନ୍ତି । କିନ୍ତୁ ସେମାନଙ୍କର ପାଠୋଦ୍ଧାର ଏ ପର୍ଯ୍ୟନ୍ତ ସର୍ବଜନଗ୍ରହଣୀୟ ହୋଇ ପାରିନାହିଁ । ଏହି ଚିତ୍ରଲିପିର ଯେଉଁ ଦିନ ସଫଳ ଓ ପୂର୍ଣ୍ଣାଙ୍ଗ ପାଠୋଦ୍ଧାର ହୋଇପାରିବ, ସେହି ଦିନ ନିଶ୍ଚୟ ସିନ୍ଧୁ-ସଭ୍ୟତା ଓ ସିନ୍ଧୁ-ସଂସ୍କୃତି ଉପରେ ବହୁ ଚାଞ୍ଚଲ୍ୟକର ଓ କୌତୂହଳପ୍ରଦ ତଥ୍ୟମାନ ପ୍ରକାଶ ପାଇବ । ତେବେ ପ୍ରାଥମିକ ଖନନ ପରେ ମାର୍ଶାଲ ଏ ସମ୍ପର୍କରେ ଯେଉଁ ସୁବିସ୍ତୃତ ବିଶ୍ଳେଷଣାତ୍ମକ ବିବରଣୀ ପ୍ରଦାନ କରିଛନ୍ତି, ତାହା ନିଶ୍ଚିତ ଭାବରେ ପ୍ରତ୍ନତତ୍ତ୍ୱର ଅଧ୍ୟୟନ ଜଗତରେ ଏକ ପ୍ରବାଦଗ୍ରନ୍ଥ ହୋଇ ରହିଥିବ ଏବଂ ଭାରତ ତତ୍ତ୍ୱବିଦ୍‌ମାନଙ୍କ ମଧ୍ୟରେ ସେ ଜଣେ ପ୍ରବାଦ-ପୁରୁଷ ରୂପେ ପରିଚିତ ହେଉଥିବେ ।

ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥାର ରାଖାଲଦାସ ବାନାର୍ଜୀ ନାମକ ଆଉ ଜଣେ ଗବେଷକ ୧୯୨୨ ମସିହାରେ ମହେଞ୍ଜୋଦାରୋଠାରେ ଆଉ କେତେକ ମୃଣ୍ମୟ ମୋହରମାନ ଆବିଷ୍କାର କରିଥିଲେ ଏବଂ ଏହି ସଂସ୍କୃତି ପ୍ରାକ୍-ଆର୍ଯ୍ୟକାଳୀନ ବୋଲି ପ୍ରମାଣ କରିବାର ଉଦ୍ୟମ କରିଥିଲେ । କିନ୍ତୁ ଏହା ପ୍ରାକ୍-ଆର୍ଯ୍ୟକାଳୀନ କିମ୍ବା ଆର୍ଯ୍ୟମାନଙ୍କର ସମକାଳୀନ ଏ ବିଷୟରେ ତଦ୍‌ବିଦ୍‌ମାନେ ଏପର୍ଯ୍ୟନ୍ତ ମଧ୍ୟ ସହମତ ନୁହନ୍ତି । ପୂର୍ବକଥିତ ମତେ ଯେ ପର୍ଯ୍ୟନ୍ତ ସିନ୍ଧୁ-ସଂସ୍କୃତିର ମୃଣ୍ମୟ ମୋହରମାନଙ୍କର ସଂପୂର୍ଣ୍ଣ ପାଠୋଦ୍ଧାର ହୋଇ ନଥିବ, ସେ ପର୍ଯ୍ୟନ୍ତ ଏହି ମତ-ପାର୍ଥକ୍ୟ ରହିବା ସ୍ୱାଭାବିକ । ଗବେଷକ ପୁସଲ୍‌କର ଏହି ଯୁକ୍ତିଟି ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥାନ୍ତି ।

୧୯୨୪ ମସିହାରୁ ୧୯୩୧ ମସିହା ପର୍ଯ୍ୟନ୍ତ ବେଲୁଚିସ୍ଥାନ ଓ ସିନ୍ଧୁ ପ୍ରଦେଶରେ ଖନନକାର୍ଯ୍ୟ ବିସ୍ତୃତ ଭାବରେ ସମାହିତ ହୋଇଥିଲା । ଏହା ଫଳରେ ସିନ୍ଧୁ-ପ୍ରଦେଶରେ ହରପ୍ପୀୟ ସଭ୍ୟତାର ଧ୍ୱଂସାବଶେଷ ମିଳିବା ସଙ୍ଗେ ସଙ୍ଗେ ଏକ ପ୍ରାକ୍-ହରପ୍ପୀୟ ସଭ୍ୟତାର ସଂଧାନ 'ଆମ୍ରି' ଓ 'ଚାନ୍ହୁଦାରୋ' ଠାରେ ମିଳିଥିଲା । ବେଲୁଚିସ୍ଥାନରେ ମଧ୍ୟ ସେହିପରି ପ୍ରାକ୍‌ହରପ୍ପୀୟ ସଭ୍ୟତାର ଧ୍ୱଂସାବଶେଷମାନ ମିଳିଥିଲା । ବେଲୁଚିସ୍ଥାନରେ କିଭଳି ଭାବରେ ଭାରତର ଆଦ୍ୟ କୃଷି-ସଂସ୍କୃତି ଗଢି ଉଠିଥିଲା (ଖ୍ରୀ: ପୂ: ୩୦୦୦) ତାହାର ନିଶ୍ଚିତ ପ୍ରମାଣମାନ ମଧ୍ୟ ମିଳିଥିଲା । ସେହି ସମୟରେ ବୌଦ୍ଧଧର୍ମ

ସହିତ ସଂଶ୍ଳିଷ୍ଟ ଆଉ କେତେକ ସ୍ଥାନରେ ମଧ୍ୟ ଏହି ଖନନ କାର୍ଯ୍ୟ ସମାହିତ ହୋଇଥିଲା । ନାଳନ୍ଦା ଓ ପାହାଡ଼ପୁର ତହିଁର ଅନ୍ତର୍ଭୁକ୍ତ ।

୧୯୩୨ ମସିହାରେ ଭାରତୀୟ ପ୍ରତ୍ନତାତ୍ତ୍ୱିକ ଗବେଷଣା ଲାଗି ବୈଦେଶିକ ସଂସ୍ଥାମାନଙ୍କୁ ସର୍ବପ୍ରଥମେ ସୁବିଧା ସୁଯୋଗ ଦିଆଗଲା । ଏ ପର୍ଯ୍ୟନ୍ତ ପ୍ରାଚୀନକୀର୍ତ୍ତି ସଂରକ୍ଷଣ ଆଇନ ବଳରେ ବିଦେଶୀ ସଂସ୍ଥାମାନଙ୍କୁ ଭାରତରେ ଖନନକାର୍ଯ୍ୟ କରିବାକୁ ଅନୁମତି ଦିଆଯାଉନଥିଲା । ୧୯୩୨ ମସିହାରେ ଏହି ଆଇନକୁ ସଂଶୋଧିତ କରିଯାଇ ଏ ପ୍ରକାର ଖନନ କାର୍ଯ୍ୟ ପାଇଁ ବୈଦେଶିକ ସଂସ୍ଥାମାନଙ୍କର ଅଧିକାରକୁ ସାବ୍ୟସ୍ତ କରିଗଲା । ଏହା ଫଳରେ ଦୁଇଟି ବୈଦେଶିକ ସଂସ୍ଥା American School of Indian and Iranian Studies ଏବଂ Boston Museum of Free Arts ୧୯୩୫-୩୬ ମସିହାରେ ମିଳିତ ଉଦ୍ୟମରେ ଖନନ କାର୍ଯ୍ୟ କରିଥିଲେ । ୧୯୩୫ ମସିହାରେ ୟେଲ୍ ଓ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ଦ୍ୱୟ ସେମାନଙ୍କ ମିଳିତ ଉଦ୍ୟମରେ ଭାରତକୁ ଭୂତାତ୍ତ୍ୱିକ ଓ ପ୍ରାଗୈତିହାସିକ ଗବେଷଣା ଲାଗି ଏକ ଗବେଷକ ଦଳ ପଠାଇଥିଲେ । ଏହି ଦଳଟିର ନେତୃତ୍ୱ ନେଇଥିଲେ ହେଲ୍‌ମେଟ୍ ଡି-ଟେରା (Helmet De Terra) । ଏହି ଦଳଟି ଉତ୍ତର-ପଶ୍ଚିମ ଭାରତରେ ଖୁବ୍ ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି ।

୧୯୪୦ ମସିହାରୁ ୧୯୪୪ ମସିହା ମଧ୍ୟରେ ଗାଙ୍ଗେୟ ଉପତ୍ୟକାସ୍ଥ ଅହିଛତ୍ରଠାରେ (ଉତ୍ତର ପ୍ରଦେଶ) ବିସ୍ତୃତ ଭାବରେ ଖନନ କାର୍ଯ୍ୟ ହେବା ଫଳରେ ଭୂମିଗର୍ଭରେ ସ୍ତର-ଭୁକ୍ତ ଭାବରେ ଲୁଚି ରହିଥିବା ବିଭିନ୍ନ ଯୁଗର ସଂସ୍କୃତି ବିଷୟରେ ସନ୍ଧାନ ମିଳି ପାରିଲା । ବୈଜ୍ଞାନିକ ପରୀକ୍ଷା ନିରୀକ୍ଷା ଫଳରେ କେଉଁ ଧ୍ୱଂସାବଶେଷମାନ କେଉଁ କେଉଁ ସଂସ୍କୃତି ସହିତ ସଂପୃକ୍ତ ତାହା ମଧ୍ୟ ନିର୍ଣ୍ଣୀତ ହୋଇ ପାରିଲା । ଏହା ଫଳରେ ଖ୍ରୀ: ପୂ: ୫୦୦ରୁ ଖ୍ରୀ: ଅ: ୧୧୦୦ ପର୍ଯ୍ୟନ୍ତ ଏହି ଅଞ୍ଚଳରେ ଗଢ଼ି ଉଠିଥିବା ବିଭିନ୍ନ ସଂସ୍କୃତିକୁ କ୍ରମାନୁସାରେ ଓ ସମୟାନୁକ୍ରମରେ ଚିହ୍ନିତ କରିଯାଇ ପାରିଲା । ଏହା ନିଶ୍ଚିତ ଭାବରେ ଏକ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର ଏବଂ ଅନନ୍ୟ ସଫଳତା ।

୧୯୪୪ ମସିହାରୁ ୧୯୪୮ ମସିହା ପର୍ଯ୍ୟନ୍ତ ସାର୍ ରବର୍ଟ ଏରିକ୍ ମର୍ଟିମର୍ ହୁଇଲର୍ (Sir Robert Eric Mortimer Wheeler) ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥାର ମହାନିର୍ଦ୍ଦେଶକ ଭାବରେ କାର୍ଯ୍ୟ କଲେ । ଏହି ସମୟରେ ବ୍ରହ୍ମଗିରିଠାରେ

(କର୍ଣ୍ଣାଟକ) ଖ୍ରୀ: ପୂ: ୧୦୦୦ ଶତାବ୍ଦୀ ତଳର ତାମ୍ରପ୍ରସ୍ତରଯୁଗୀୟ ଏକ ସଂସ୍କୃତି ଆବିଷ୍କୃତ ହୋଇଥିଲା ଏବଂ ଦକ୍ଷିଣ ଭାରତରେ ବୃହଦ୍ପ୍ରସ୍ତରଯୁଗୀୟ ସଂସ୍କୃତିର କାଳ ନିର୍ଣ୍ଣୟ କରିବା ସଙ୍ଗେ ସଙ୍ଗେ ଏହାକୁ କାଳ ଅନୁଯାୟୀ ବିଭିନ୍ନ ସଂସ୍କୃତି ସହିତ ସଂଯୁକ୍ତ କରାଯାଇ ପାରିଲା । ଏହି ସଂସ୍କୃତିର କାଳାନୁଯାୟୀ ବର୍ଗୀକରଣ ଏ ପର୍ଯ୍ୟନ୍ତ ତତ୍ତ୍ୱବିଦ୍‌ମାନଙ୍କ ଆଗରେ ଯେଉଁ କୁହେଳିକାଟିଏ ସୃଷ୍ଟି କରି ରଖିଥିଲା, ତାହାକୁ ବର୍ତ୍ତମାନ ଅପସାରିତ କରାଯାଇ ପାରିଲା । ଏହା ଛଡ଼ା ହୁଇଲରଙ୍କ ନେତୃତ୍ୱରେ ହରପ୍ପାଠାରେ ଯେଉଁ ଖନନ କାର୍ଯ୍ୟ ସମ୍ପାଦିତ ହୋଇଥିଲା, (୧୯୪୬ରୁ ୧୯୪୪ ମଧ୍ୟରେ), ସେତେବେଳେ ସେଠାରୁ ଏକ କବର-ସ୍ଥାନର ଆବିଷ୍କାର କରାଯାଇଥିଲା । ପ୍ରତ୍ନତାତ୍ତ୍ୱିକମାନେ ଏହି କବର ସ୍ଥାନଟିକୁ Cemetery R-37 ବୋଲି ନାମିତ କରିଥାନ୍ତି । ହୁଇଲର୍ ଏହା ମଧ୍ୟରେ ୫୭ଟି କବର ଆବିଷ୍କାର କରିଥିଲେ । ଏହି କବର ସ୍ଥାନଟି ପ୍ରଧାନ ବସ୍ତିର ଦକ୍ଷିଣରେ ଅବସ୍ଥିତ । ଏଣୁ କେତେକ ତତ୍ତ୍ୱବିଦ୍‌ଙ୍କ ମତରେ ମୃତ୍ୟୁର ରାଜା ଯମଙ୍କର ବାସଭୂମି ଦକ୍ଷିଣରେ ଥିବାର ପାରମ୍ପରିକ ଭାରତୀୟ ଧାରଣା ଅତି ପ୍ରାଚୀନ ଏବଂ ତାକୁ ହିଁ ଅବଲମ୍ବନ କରି ହରପ୍ପାର କବର ସ୍ଥାନଟିକୁ ପ୍ରଧାନ ବସ୍ତିର ଦକ୍ଷିଣରେ ଅବସ୍ଥାପିତ କରାଯାଇଛି । ଏହା ବିଶ୍ୱାସଯୋଗ୍ୟ ବୋଲି ମନେହୁଏ, କାରଣ ହରପ୍ପୀୟ ସଂସ୍କୃତି ସହିତ ସଂଶ୍ଳିଷ୍ଟ ସମସ୍ତ ସ୍ଥାନରେ କବର ସ୍ଥାନମାନ ପ୍ରଧାନ ବସ୍ତିର ଦକ୍ଷିଣ ଦିଗରେ ଅବସ୍ଥିତ ଥିବାର ଦୃଷ୍ଟିଗୋଚର ହୁଏ ।

୧୯୪୭ ମସିହାରେ ଭାରତ ସ୍ୱାଧୀନ ହେବା ପରେ ଭାରତୀୟ ପ୍ରତ୍ନତାତ୍ତ୍ୱିକ ଗବେଷଣା ଏକ ନୂତନ ମୋଡ଼ ନେଲା । ପ୍ରତି କ୍ଷେତ୍ରରେ ଭାରତକୁ ନୂତନ ଭାବରେ ଆବିଷ୍କାର କରିବା ପାଇଁ ଉତ୍ସାହ, ଉଦ୍ଦୀପନା ଓ ଉଦ୍ୟମ ଜାଗ୍ରତ ହେଲା । ଭାରତର ସାଂସ୍କୃତିକ ପରଂପରା ଓ ଐତିହ୍ୟ ବିଷୟରେ ଅଧିକରୁ ଅଧିକ ଜ୍ଞାନ ଆହରଣ କରିବା ପାଇଁ ଉଭୟ ସରକାରୀ ଓ ବେସରକାରୀ ସ୍ତରରେ ବ୍ୟଗ୍ରତା ପରିଦୃଷ୍ଟ ହେଲା । ଏହି ସମୟରେ ପ୍ରତ୍ନତାତ୍ତ୍ୱିକ ଗବେଷଣା ଓ ପୁରାତତ୍ତ୍ୱ ବିଷୟରେ ପରୀକ୍ଷା ନିରୀକ୍ଷା ଓ ଅଧ୍ୟୟନ ସ୍ୱାଭାବିକ ଭାବରେ ତ୍ୱରାନ୍ୱିତ ହୋଇ ଉଠିଲା । ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା ସହିତ ହାତକୁ ହାତ ମିଳାଇ ରାଜ୍ୟମାନଙ୍କର ପ୍ରତ୍ନତତ୍ତ୍ୱ ବିଭାଗମାନ ଏବଂ ବିଭିନ୍ନ ବିଶ୍ୱବିଦ୍ୟାଳୟମାନ ବହୁ ପ୍ରତ୍ନତାତ୍ତ୍ୱିକ ସ୍ଥାନମାନଙ୍କରେ ଖନନ-କାର୍ଯ୍ୟ କରି ଅନେକ ନୂତନ ତଥ୍ୟମାନ ଆବିଷ୍କାର କଲେ । କିନ୍ତୁ ତଥାପି ବିଭିନ୍ନ ସଂସ୍ଥାମାନଙ୍କ ଦ୍ୱାରା କରାଯାଇଥିବା ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟର ବିବରଣୀମାନ ଅନୁଧ୍ୟାନ କଲେ ଦେଖାଯିବ ଯେ ତହିଁରେ ସ୍ଥୂଳତଃ ନିମ୍ନଲିଖିତ ଦୋଷତ୍ରୁଟିମାନ ବିଦ୍ୟମାନ । ସେଗୁଡ଼ିକର ଆଶୁ ନିରାକରଣ ହେବା ଆବଶ୍ୟକ । ଏହି ଦୋଷତ୍ରୁଟି ଗୁଡ଼ିକ ହେଲା :

କ—ବିଭିନ୍ନ ସଂସ୍ଥାମାନଙ୍କ ଦ୍ୱାରା କରାଯାଉଥିବା ଖନନ-କାର୍ଯ୍ୟ ମଧ୍ୟରେ ସମନ୍ୱୟ ରକ୍ଷା କରାଯାଉ ନାହିଁ ଏବଂ ଏହା ଫଳରେ ଗବେଷଣାଲବ୍‌ଧ ତଥ୍ୟମାନଙ୍କର ପାରସ୍ପରିକ ଆଦାନ ପ୍ରଦାନ ହୋଇପାରୁ ନାହିଁ । ଏହା ଫଳରେ ଗବେଷଣା କାର୍ଯ୍ୟ ବୋହରାଇବାର ଆଶଙ୍କା ଅଛି ।

ଖ—ସର୍ବତ୍ର ଅତ୍ୟାଧୁନିକ ବୈଜ୍ଞାନିକ ପଦ୍ଧତିରେ ଖନନ ଓ ଗବେଷଣା କାର୍ଯ୍ୟ କରାଯିବା ଉଚିତ, କିନ୍ତୁ ଏହା ହୋଇପାରୁ ନାହିଁ । ଅର୍ଥାଭାବ ଏହାର କାରଣ ବୋଲି କୁହାଯାଉଛି । ସତ୍ୟାନ୍ୱେଷୀ ତଥ୍ୟ ଆବିଷ୍କାର କରିବାକୁ ଗଲେ ଅର୍ଥାଭାବ ପ୍ରତିବନ୍ଧକ ହୋଇ ଠିଆହେବା ଉଚିତ ନୁହେଁ ।

ଗ—ଖନନର ବିବରଣୀମାନ ଶୀଘ୍ର ପ୍ରକାଶିତ ହେଉନାହିଁ । ଅର୍ଥାଭାବ ମଧ୍ୟ ଏହାର କାରଣ ବୋଲି କୁହାଯାଉଛି ।

ଘ—ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ ପାଇଁ ଦେଶବ୍ୟାପୀ ଏକ ଦୀର୍ଘମିଆଦି ଯୋଜନା ତିଆରି କରାଯାଉନାହିଁ । ଏହା କରାଯାଇଥିଲେ ଓଡ଼ିଶାର ବାରବାଟୀ ଦୁର୍ଗର ଚତୁର୍ଦ୍ଦିଗରେ ଏଭଳି ଭାବରେ ଘଞ୍ଚ ବସ୍ତି ଗଢ଼ି ଉଠିବାକୁ ଦିଆଯାଇ ନଥାନ୍ତା, ଯାହାଫଳରେକି ବାରବାଟୀ ଅଞ୍ଚଳରେ ଖନନର ପଥ ଭବିଷ୍ୟତ ପାଇଁ ଚିରଦିନ ରୁଦ୍ଧ ହୋଇଯାଇ ନଥାନ୍ତା ।

ଏତେ ଅଭାବ ଅସୁବିଧା, ଦୋଷତ୍ରୁଟି ସତ୍ତ୍ୱେ ଯେ ସ୍ୱାଧୀନ ଭାରତରେ ପ୍ରତ୍ନତାତ୍ତ୍ୱିକ ଗବେଷଣା ଯଥେଷ୍ଟ ଅଗ୍ରସର ହୋଇଛି, ସେଥିରେ ସନ୍ଦେହ ନାହିଁ । ତାହାର ଏକ ସ୍ଥୂଳଚିତ୍ର ନିମ୍ନରେ ଦିଆଯାଉଛି ।

ସିନ୍ଧୁ ସଭ୍ୟତାର ଅବସ୍ଥିତି ନେଇ ବର୍ତ୍ତମାନ ବିଭିନ୍ନ ପ୍ରତ୍ନତାତ୍ତ୍ୱିକ ଖନନରୁ ମିଳୁଥିବା ତଥ୍ୟାବଳୀ ନୂତନ ଆଲୋକପାତ କରିଛନ୍ତି । ବର୍ତ୍ତମାନ ପ୍ରମାଣିତ ହୋଇପାରିଛି ଯେ ଏହା କେବଳ ସିନ୍ଧୁ ଉପତ୍ୟକାରେ ସୀମିତ ନୁହେଁ । ପଶ୍ଚିମରେ ଗୁଜରାଟର ଲୋଠାଲ୍‌ଠାରେ ଏବଂ ପୂର୍ବରେ ଗଙ୍ଗାଯମୁନା ଉପତ୍ୟକାର ଆଲମଗିରପୁର ଠାରେ (ଉତ୍ତରପ୍ରଦେଶ) ଏହାର ଧ୍ୱଂସାବଶେଷ ମଧ୍ୟ ବିଦ୍ୟମାନ । ଦକ୍ଷିଣରେ ରାଜସ୍ଥାନର କାଲିବଙ୍ଗାଠାରେ ମଧ୍ୟ ଏହାର ଧ୍ୱଂସାବଶେଷ ରହିଛି । ଭାରତ ଓ ପାକିସ୍ଥାନରେ ଏ ସଂପର୍କରେ ଖନନ-କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇନାହିଁ । ଏଣୁ ଅନ୍ୟ



ସିନ୍ଧୁସଭ୍ୟତା : ମହେଞ୍ଜୋଦାରୋ : ବ୍ରୋଞ୍ଜ୍‌ର ନାରୀମୂର୍ତ୍ତୀ



ସିନ୍ଧୁସଭ୍ୟତା : ମହେଞ୍ଜୋଦାରୋ : ମାଟିର ଡାବକ ଉପରେ ଅଙ୍କିତ ବୋଇତ





ସିନ୍ଧୁ ସଂସ୍କୃତି : ମହେଞ୍ଜୋଦାରୋ : ସ୍ନାନ ଲଗି ଥିବା ପବିତ୍ର ପୁଷ୍କରିଣୀ



ସିନ୍ଧୁ ସଂସ୍କୃତି : ମହେଞ୍ଜୋଦାରୋ : ମାଟିର ଶଗଡ଼





ସିନ୍ଧୁସଂସ୍କୃତି : କାଲିବଙ୍ଗା : ଇଟାର ମଣ୍ଡପ ଉପରେ ଥିବା ଶ୍ରେଣୀବଦ୍ଧ ଯଜ୍ଞକୁଣ୍ଡ



ସିନ୍ଧୁସଂସ୍କୃତି : କାଲିବଙ୍ଗା : ପାତ୍ର କବର



ସିନ୍ଧୁସଭ୍ୟତାର ବିଭିନ୍ନ ମୃଣ୍ମୟ ମୋହର



ସିନ୍ଧୁସଭ୍ୟତା : କାଲିବଙ୍ଗା (ରାଜସ୍ଥାନ) ଗୋଟିଏ ଗଳି ରାସ୍ତାର ଦୃଶ୍ୟ

ସ୍ଥାନମାନଙ୍କରେ ଏହାର ଧ୍ୱଂସାବଶେଷ ମିଳିବ ନାହିଁ ବୋଲି କୁହାଯାଇ ନପାରେ; ବରଂ ମିଳିବାର ସମ୍ଭାବନା ବେଶି । ଏହି ଦୃଷ୍ଟିରୁ ବିଚାର କଲେ ସିନ୍ଧୁ-ସଂସ୍କୃତିର ଆଦି-ଭୂମି ବା କେନ୍ଦ୍ର-ଭୂମି (Epi-centre) କେଉଁଠି, ସେ ବିଷୟରେ ବର୍ତ୍ତମାନ ସନ୍ଦେହ ଉପୁଜୁଛି । ଲୋଥାଲଠାରେ ଯେଉଁ ବନ୍ଦର ଓ ଜାହାଜ ନିର୍ମାଣ କାରଖାନାର ଧ୍ୱଂସାବଶେଷ ମିଳିଛି, ତହିଁରୁ ଅନୁମିତ ହୁଏ ଯେ ସିନ୍ଧୁ-ସଭ୍ୟତାର ଅଧିବାସୀମାନେ ପୋତରେ ସମୁଦ୍ର ପାରି ହୋଇ ବିଦେଶକୁ ବାଣିଜ୍ୟ କରିବାକୁ ଯାଉଥିଲେ । ଲୋଥାଲ୍‌ଠାରେ ଆଉ ଗୋଟିଏ କୌତୂହଳୋଦ୍ଦୀପକ ଅବଶେଷ ମିଳିଛି । ତାହା ହେଉଛି କବର ମଧ୍ୟରେ ଥିବା ଯୁଗ୍ମ କଙ୍କାଳର ଅବଶେଷ । ଜଣେ ପୁରୁଷ ଓ ଆଉ ଜଣେ ସ୍ତ୍ରୀ । ଏମାନେ କ'ଣ ସ୍ୱାମୀ-ସ୍ତ୍ରୀ ? ଏମାନେ କ'ଣ ଏକ ସମୟରେ ମରିଥିଲେ ? କିମ୍ବା ସ୍ୱାମୀଙ୍କ ପଛରେ ସ୍ତ୍ରୀ ମୃତ୍ୟୁବରଣ କରିଥିଲେ କି ? ଏହିସବୁ ପ୍ରଶ୍ନର ଉତ୍ତର ଏ ପର୍ଯ୍ୟନ୍ତ ସଠିକ ଦିଆଯାଇ ପାରିନାହିଁ ।

ଏହା ଛଡ଼ା କାଲିବଙ୍ଗାଠାରେ ଯେଉଁ ଖନନ କାର୍ଯ୍ୟ ହୋଇଛି, ସେଠାରେ ସିନ୍ଧୁ ସଭ୍ୟତାର ଅବଶେଷ ମିଳିବା ସଙ୍ଗେ ସଙ୍ଗେ ତା'ର ନିମ୍ନ ସ୍ତରରେ ଆଉ ଏକ ପୂର୍ବତନ ସଂସ୍କୃତିର ଅବଶେଷ ମିଳିଛି । ଏହା ମଧ୍ୟ ସିନ୍ଧୁ-ସଂସ୍କୃତି ଭଳି ନଗରକୈନ୍ଦ୍ରିକ ବୋଲି ବହୁ ଗବେଷକ ମତ ଦିଅନ୍ତି ।

୧୯୫୦ରୁ ୧୯୫୨ ମସିହା ମଧ୍ୟରେ ବି.ବି. ଲାଲ୍‌ଙ୍କ ନେତୃତ୍ୱରେ ହସ୍ତିନାପୁରଠାରେ ଯେଉଁ ଖନନ କାର୍ଯ୍ୟ କରାଯାଇଛି, ତାହା ଫଳରେ ପାଞ୍ଚଗୋଟି ବିଭିନ୍ନ ସ୍ତରରେ ଥିବା ସଭ୍ୟତାମାନଙ୍କର ଧ୍ୱଂସାବଶେଷକୁ ଚିହ୍ନିତ କରାଯାଇ ପାରିଛି । ଏହାର ସବୁ ନିମ୍ନସ୍ତରରେ ଥିବା ସଂସ୍କୃତି ହେଉଛି, ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତି, ଯାହାକୁ ଖ୍ରୀ. ପୂ. ୨୫୦୦ ଶତାବ୍ଦୀରେ ସ୍ଥାପିତ କରାଯାଇ ପାରିଛି । ସେହି ଲୋକମାନେ ଥିଲେ ମୁଖ୍ୟତଃ କୃଷିଜୀବୀ ଏବଂ ଝାଟିମାଟି ଘରେ ରହୁଥିଲେ । ସେମାନଙ୍କର ହାତ ହତିଆର ଥିଲା ମୁଖ୍ୟତଃ ତାମ୍ରନିର୍ମିତ ।

୧୯୬୦-୬୧ ମସିହାରେ କୌଶାମ୍ବୀ, ରାଜଘାଟ, ଶ୍ରାବସ୍ତୀ ଓ ବୈଶାଳୀରେ କରାଯାଇଥିବା ଖନନ ଫଳରେ ସେଠାରୁ ଅନେକ କୌତୂହଳୋଦ୍ଦୀପକ ତଥ୍ୟମାନ ମିଳିଛି । ବିଶେଷ କରି ବୁଦ୍ଧଙ୍କ ସମସାମୟିକ ବତ୍ସରାଜ ଉଦୟନଙ୍କ ରାଜଧାନୀ କୌଶାମ୍ବୀକୁ ଚିହ୍ନିତ କରାଯିବା ସଙ୍ଗେ ସଙ୍ଗେ ୬୫୦ ମିଟର ଦୀର୍ଘ ଓ ୧୫୦ ମିଟର ପ୍ରସ୍ଥ

ବିଶିଷ୍ଟ ତାଙ୍କ ରାଜ-ନବରେଶିକୁ ମଧ୍ୟ ଚିହ୍ନିତ କରାଯାଇ ପାରିଛି । ବୌଦ୍ଧଜାତକ ଗଳ୍ପ ମାନଙ୍କରେ ବହୁଳ ଭାବରେ ଉଲ୍ଲିଖିତ କୌଶାମ୍ବୀ ନିକଟରେ ଥିବା 'ଘୋଷିତାରାମ' ବିହାରକୁ ମଧ୍ୟ ଚିହ୍ନିତ କରାଯାଇଛି । କୌଶାମ୍ବୀ, ଶ୍ରାବସ୍ତୀ ଓ ଉଜ୍ଜୟିନୀ ନଗରୀମାନଙ୍କୁ ଶତ୍ରୁ ଆକ୍ରମଣରୁ ରକ୍ଷା କରିବା ପାଇଁ ଯେଉଁ ଉଚ୍ଚ ପ୍ରାଚୀରମାନ ନିର୍ମାଣ କରାଯାଇଥିଲା, ସେଗୁଡ଼ିକର ଧ୍ୱଂସାବଶେଷମାନ ମଧ୍ୟ ମିଳିଛି ।

ଜନ୍ ମାର୍ଶାଲ୍ ୧୯୨୧ ମସିହାରେ ମହେଞ୍ଜୋଦାରୋ ଓ ହରପ୍ପାଠାରେ ସର୍ବପ୍ରଥମ ଥର ପାଇଁ ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତି ଆବିଷ୍କାର କରିବା ପରେ ଭାରତର ଅନ୍ୟତ୍ର, ବିଶେଷ କରି ଦକ୍ଷିଣ ଭାରତରେ ଏହାର ଅବସ୍ଥିତି ସଂପର୍କରେ ଅନୁସନ୍ଧାନ କରାଯାଇଥିଲା । ପରିଶେଷରେ ସଙ୍କାଲିଆ, ସୁବ୍ବାରାଓ, ଦେଓ, ଆନ୍ସାରି ଆଦି ଗବେଷକମାନଙ୍କ ଦ୍ୱାରା ମହାରାଷ୍ଟ୍ର ଅଞ୍ଚଳରେ କରାଯାଇଥିବା ବିସ୍ତୃତ ଖନନ ଫଳରେ ଜୋରୱେ, ନେୱାସା, ଦାଇମାବାଦ, ଟେକୱାଡ଼ା ଆଦି ସ୍ଥାନମାନଙ୍କରେ ତମ୍ବାର ପାତ୍ର, ହତିଆର, ଅଳଙ୍କାର ଓ ଅନ୍ୟାନ୍ୟ ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁମାନ ଆବିଷ୍କୃତ ହୋଇପାରିଛି । ଏଠାକାର କବର-ଦେବା ପଦ୍ଧତିର ସ୍ୱାତନ୍ତ୍ର୍ୟ ହେଉଛି ଏହି ଯେ ଘରର ଚଟାଣ ତଳେ ମୃତ ବ୍ୟକ୍ତିମାନଙ୍କୁ କବର ଦିଆଯାଇଛି । ହରପ୍ପୀୟ କବର ଦେବା ପଦ୍ଧତିଠାରୁ ଏହା ଭିନ୍ନ । ଅତଏବ, ଏହି ତାମ୍ରପ୍ରସ୍ତର ଯୁଗୀୟ ସଂସ୍କୃତିଟି ହରପ୍ପୀୟ ତାମ୍ରପ୍ରସ୍ତର ଯୁଗୀୟ ସଂସ୍କୃତି ଠାରୁ ସ୍ୱାତନ୍ତ୍ର୍ୟ ରକ୍ଷା କରି ଯେ ଗଢ଼ି ଉଠିଥିଲା, ତାହାର ନିଦର୍ଶନ ଏଥିରୁ ମିଳୁଛି ।

ହୁଇଲର୍ ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥାର ମହାନିର୍ଦ୍ଦେଶକ ଥିବା ସମୟରେ ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତି ସଂପର୍କୀୟ ଗବେଷଣାତ୍ମକ ଖନନ କାର୍ଯ୍ୟ କରାଯାଇଥିବା କଥା ପୂର୍ବରୁ କୁହାଯାଇଛି । ତାଙ୍କ ନେତୃତ୍ୱରେ କର୍ଣ୍ଣାଟକର ବ୍ରହ୍ମଗିରିଠାରେ ୧୯୪୭ ମସିହାରେ ଯେଉଁ ଖନନ କାର୍ଯ୍ୟ କରାଯାଇଥିଲା, ତତ୍ଫଳରେ ସେଠାରେ ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତିର ଅବଶେଷ ମିଳିବା ସଙ୍ଗେ ସଙ୍ଗେ ବିଭିନ୍ନ ସଂସ୍କୃତିମାନଙ୍କର କାଳାନୁକ୍ରମରେ ସଜ୍ଜିତ ବିଭିନ୍ନ ସ୍ତରମାନଙ୍କର ସନ୍ଧାନ ମିଳିଛି । ପରବର୍ତ୍ତୀ କାଳରେ ମାସ୍କି, ଟି. ନରସିଂପୁର, ଅମୃତମଙ୍ଗଲମ୍ ଆଦି ସ୍ଥାନ ମାନଙ୍କରେ ମଧ୍ୟ ଖନନ ଫଳରେ ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତିର ଧ୍ୱଂସାବଶେଷ ଆବିଷ୍କୃତ ହୋଇଛି ।

ଦେଶର ଯେଉଁ ପ୍ରାଚୀନ ସ୍ଥଳୀମାନଙ୍କରେ ଖନନ କାର୍ଯ୍ୟ କରାଯାଇଛି, ଓଡ଼ିଶାର ଶିଶୁପାଳଗଡ଼ ଓ ଜଉଗଡ ତନ୍ମଧ୍ୟରୁ ଅନ୍ୟତମ । ଶିଶୁପାଳଗଡ ଅଶୋକଙ୍କ ଶିଳାଲେଖ

ଉତ୍କୀର୍ଣ୍ଣ ହୋଇଥିବା ଧଉଳି ପାହାଡ଼ର ସନ୍ନିକଟରେ ଅବସ୍ଥିତ । ଜଉଗଡ଼ଠାରେ ମଧ୍ୟ ସେହିପରି ଅଶୋକଙ୍କର ଆଉ ଗୋଟିଏ ଶିଳାଲେଖ ବିଦ୍ୟମାନ । ଶିଶୁପାଳଗଡ଼ର ଖନନ ଫଳରେ ଏଠାରେ ଖ୍ରୀ ପୂ: ୪ର୍ଥ ଶତାବ୍ଦୀ ପର୍ଯ୍ୟନ୍ତ ବିଭିନ୍ନ ସଭ୍ୟତାର ସ୍ତର ବିଦ୍ୟମାନ ଥିବାର ଜଣାପଡ଼େ । ଏହାର ଚତୁର୍ଦ୍ଦିଗରେ ପ୍ରାୟ ବର୍ଗାକାର ବିଶିଷ୍ଟ ଗୋଟିଏ ପ୍ରାଚୀର ବିଦ୍ୟମାନ ଥିଲା । ଏହାର ଦୁଇ ପଟେ ପୋଡ଼ା ଇଟା ଓ ମଝିରେ ମାଟି ଭର୍ତ୍ତି ହୋଇଥିଲା । ପ୍ରତ୍ୟେକ ପ୍ରାଚୀର ପ୍ରାୟ ଏକ କିଲୋମିଟର ଲମ୍ବ । ଏଥିରେ ଦୁଇଟି ବଡ଼ ଫାଟକ ଏବଂ ଦୁଇଟି ଛୋଟ ଫାଟକ ଥିଲା । ପ୍ରଧାନ ରାସ୍ତା ଗୁଡ଼ିକ ବିପରୀତ ଦିଗରେ ଥିବା ଫାଟକ ଗୁଡ଼ିକୁ ପରସ୍ପର ସହିତ ସଂଯୁକ୍ତ କରୁଥିଲା । ଅନେକ ଗବେଷକ ଏହାକୁ କଳିଙ୍ଗର ରାଜଧାନୀ ତୋଷାଳୀ ବୋଲି କୁହନ୍ତି । ତୋଷାଳୀ ନାମ ବୋଧହୁଏ ପରବର୍ତ୍ତୀ କାଳରେ କଳିଙ୍ଗନଗର ହୋଇଥିଲା, ଯାହାର ଉଲ୍ଲେଖ ଆମେ ଖାରବେଳଙ୍କ ଉଦୟଗିରିସ୍ଥ ହାତୀଗୁମ୍ଫା ଶିଳାଲେଖରେ (ଖ୍ରୀ: ପୂ: ୧ମ ଶତାବ୍ଦୀ) ପାଇଥାଉଁ । ଜଉଗଡ଼ଠାରେ ମଧ୍ୟ ଅଳ୍ପ ବହୁତ ଶିଶୁପାଳଗଡ଼ ଭଳି ପଦାର୍ଥମାନ ମିଳିଛି । ଏଠାରୁ ନିମ୍ନତମ ସ୍ତରରୁ ଖୁବ୍ ମସୃଣ କୁଠାରଟିଏ ମିଳିଛି । ଏଠାରେ ନୂତନ ପ୍ରସ୍ତରଯୁଗରୁ ଆରମ୍ଭ କରି ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀ ପର୍ଯ୍ୟନ୍ତ ବିଭିନ୍ନ ସଭ୍ୟତାମାନଙ୍କର ଆବିର୍ଭାବ ହୋଇଥିବାର ମନେହୁଏ ।

ଚଳିତ ଶତାବ୍ଦୀର ଷଷ୍ଠ ଦଶକରେ ଦେବଳା ମିତ୍ରଙ୍କ ନେତୃତ୍ୱରେ ଚାଲିଥିବା ଓଡ଼ିଶାର ଲଳିତଗିରି, ଉଦୟଗିରି ଓ ରତ୍ନଗିରି ଖନନ ଫଳରେ ବୌଦ୍ଧ ସଂସ୍କୃତି ସହିତ ସଂଶ୍ଳିଷ୍ଟ ଧ୍ୱଂସାବଶେଷମାନ ଆବିଷ୍କୃତ ହୋଇଛି । ଏଠାରେ ବ୍ରୋଞ୍ଜ୍ ଓ ପ୍ରସ୍ତର ନିର୍ମିତ ବୁଦ୍ଧ ଓ ଅନ୍ୟାନ୍ୟ ବୌଦ୍ଧ ଦେବଦେବୀଙ୍କ ମୂର୍ତ୍ତି ସହିତ ଗୋଟିଏ ବିରାଟ ବିହାରର ଧ୍ୱଂସାବଶେଷ ମିଳିଛି । ଏଠାରୁ ମିଳିଥିବା ଶିଳାଲେଖରୁ ଜଣାଯାଏ ଯେ ଏହି ସ୍ଥାନଟି ରତ୍ନଗିରି ବିହାର ନାମରେ ଖ୍ୟାତ ଥିଲା । ବର୍ତ୍ତମାନ ମଧ୍ୟ ସେହି ନାମଧାରୀ ଗ୍ରାମଟିଏ ଏଠାରେ ବିଦ୍ୟମାନ ।

ସାମୁଦ୍ରିକ ପ୍ରତ୍ନତତ୍ତ୍ୱ ଉନ୍ନତ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ବହୁ ପୂର୍ବରୁ ବିକଶିତ ହୋଇଥିଲେ ହେଁ ଏ ଦେଶରେ ଚଳିତ ଶତାବ୍ଦୀର ଶେଷ ଦଶକରେ ମାତ୍ର ଏହାର ସାମାନ୍ୟତମ ବିକାଶ ହେବା ସମ୍ଭବ ହୋଇଛି । ଗୋଆଠାରେ ଅବସ୍ଥିତ ଜାତୀୟ ସାମୁଦ୍ରିକ ବିଦ୍ୟା ସଂସ୍ଥାର (National Institute of Oceanography) ସାମୁଦ୍ରିକ ପ୍ରତ୍ନତତ୍ତ୍ୱ ବିଭାଗର ଦାୟିତ୍ୱରେ ଥିବା ଡ଼ଃ. ଏସ୍. ଆର୍. ରାଓ ଏଥିରେ କିଛି ଦୂର ଅଗ୍ରଣୀ ହୋଇ ପାରିଛନ୍ତି । ତାଙ୍କ ନେତୃତ୍ୱରେ ଦ୍ୱାରକା ନିକଟରେ ଆରବ ସାଗରର ଭୂମିତଳ

ଖନନ ଫଳରେ ସମୁଦ୍ରତଳେ ବୁଡ଼ି ରହିଥିବା ଗୋଟିଏ ନଗର-ସଭ୍ୟତାର ସନ୍ଧାନ ମିଳିଛି ସେଠାରୁ ଯେଉଁ ତଥ୍ୟମାନ ମିଳିଛି, ସେଗୁଡ଼ିକର ଅଙ୍ଗାର ପରୀକ୍ଷା ଫଳରେ ସେଗୁଡ଼ିକୁ ହରପ୍ପୀୟ ସଭ୍ୟତାର (ଖ୍ରୀ: ପୂ. ୨୦୦୦ ଖ୍ରୀଷ୍ଟାବ୍ଦ) ସମକାଳୀନ ବୋଲି ସ୍ଥାନିତ କରାଯାଇ-ପାରିଛି । ସେଠାରୁ ମିଳିଥିବା ବସ୍ତୁମାନଙ୍କ ମଧ୍ୟରେ ଗୋଟିଏ ମୃଣ୍ମୟ ମୋହର, ଗୋଟିଏ ଚିତ୍ରିତ ପାତ୍ର, ଗୋଟିଏ କମାରର ତମ୍ବାର ଗ୍ରନ୍ଥ ଅନ୍ତର୍ଭୁକ୍ତ । ପ୍ରସିଦ୍ଧ ଦ୍ୱାରକା ନଗରୀ ସମୁଦ୍ର-ଗର୍ଭରେ ଲୀନ ହୋଇଥିଲା ବୋଲି ଯେଉଁ ବର୍ଣ୍ଣନା ପୁରାଣମାନଙ୍କରେ ଦିଆଯାଇଛି, ତା'ହାର ସତ୍ୟତା ଏଥିରୁ ପ୍ରମାଣିତ ହେଉଛି । ଆଉ ମଧ୍ୟ ହରପ୍ପୀୟ ସଂସ୍କୃତି ଯେ କେବଳ ସିନ୍ଧୁ ଉପତ୍ୟକାରେ ସୀମାବଦ୍ଧ ହୋଇ ନଥିଲା ଏବଂ ଏହାର ବିସ୍ତୃତି ଯେ ସୁଦୂରପ୍ରସାରୀ ଥିଲା, ତାହା ମଧ୍ୟ ଏଥିରୁ ପ୍ରମାଣିତ ହେଉଛି । ସାରା ବିଶ୍ୱରେ ସାମୁଦ୍ରିକ ପ୍ରତ୍ନତତ୍ତ୍ୱ ଏକ ନୂତନ ବିଦ୍ୟାର ବିଭାଗ ରୂପେ ବହୁ ବର୍ଷ ପୂର୍ବରୁ ଗୃହୀତ । ପ୍ରାଚୀନ ପରଂପରା ଓ ଐତିହ୍ୟର ଐଶ୍ୱର୍ଯ୍ୟରେ ଏହି ଦେଶ ଭରପୂର । ପୁନଶ୍ଚ ଏହା ତିନି ଦିଗରେ ସମୁଦ୍ର ଦ୍ୱାରା ପରିବେଷ୍ଟିତ । ଅତଏବ, ଏହାକୁ ପରିବେଷ୍ଟନ କରି ରହିଥିବା ବିସ୍ତୀର୍ଣ୍ଣ ସାମୁଦ୍ରିକ ଭୂମିତଳ ଯେ ନିଶ୍ଚିତ ଭାବରେ ଏହି ସଂସ୍କୃତିର ପ୍ରଭୂତ ପ୍ରତ୍ନତାତ୍ତ୍ୱିକ ସାକ୍ଷର ବହନ କରିଥିବ ଏଥିରେ ସନ୍ଦେହ ନାହିଁ । ଉଦାହରଣ ସ୍ୱରୂପ ଭାରତୀୟ ସମୁଦ୍ରରେ ଗତ ୫୦୦୦ ବର୍ଷ ମଧ୍ୟରେ ହଜାର ହଜାର ପୋତ ଓ ଜାହାଜ ବୁଡ଼ି ଯାଇଛି । ସେଗୁଡ଼ିକରୁ କେତୋଟିକୁ ଯଦି ଉଦ୍ଧାର କରି ହୁଅନ୍ତା, ତେବେ ଭାରତର ସୁଦୀର୍ଘ ସାମୁଦ୍ରିକ କ୍ରିୟାକଳାପର ଇତିହାସ ରଚନାରେ ତାହା ସହାୟକ ହୁଅନ୍ତା । ଏ ବିଷୟରେ ଢେର ଅଧିକତର ଗବେଷଣା ହେବା ଆବଶ୍ୟକ । ସମୁଦ୍ର ସଂଲଗ୍ନ ରାଜ୍ୟମାନଙ୍କରେ ଥିବା ବିଶ୍ୱବିଦ୍ୟାଳୟମାନେ ଏ ଦିଗରେ ଅଗ୍ରଣୀ ହୋଇ ସାମୁଦ୍ରିକ ପ୍ରତ୍ନତତ୍ତ୍ୱ ବିଷୟରେ ଶିକ୍ଷାଦାନର ବ୍ୟବସ୍ଥା କରିବା ଉଚିତ ।

ପାଶ୍ଚାତ୍ୟ ପଣ୍ଡିତମାନେ ଭାରତୀୟ ସଂସ୍କୃତି ଓ ସଭ୍ୟତା ଉପରେ ଗବେଷଣା କରି ଅତୀତରେ ଯେଉଁ ତଥ୍ୟମାନ ଉପସ୍ଥାପିତ କରିଛନ୍ତି ଏବଂ ତଦ୍ଭିତ୍ତିକ ଯେଉଁ ନିଷ୍କର୍ଷମାନ ଦେଇଛନ୍ତି, ସ୍ୱଭାବତଃ ତାହାକୁ ହିଁ ଆଧାର କରି ବର୍ତ୍ତମାନ ଅଧିକାଂଶ ଭାରତୀୟ ଗବେଷଣା କରୁଛନ୍ତି । ଅବଶ୍ୟ ଏସ୍. ଆର୍. ରାଓଙ୍କ ଭଳି ବିଦ୍ରୋହୀ ଗବେଷକ ଖୁବ୍ କମ୍ ଅଛନ୍ତି । ଏହି ସଂସ୍କୃତିର କାଳନିର୍ଣ୍ଣୟ ସଂପର୍କରେ ମଧ୍ୟ ଏପର୍ଯ୍ୟନ୍ତ ସଠିକ୍ ନିରୂପଣ କରାଯାଇ ପାରିନାହିଁ । ଗ୍ରୀକ୍ ଐତିହାସିକମାନେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ କାଳକୁ ଖ୍ରୀ. ପୂ. ୩୨୬ ବୋଲି ଠିକ୍ କଲେ ଏବଂ ତଦନୁଯାୟୀ ଭାରତୀୟ ଇତିହାସ ଲେଖାଯାଇ ବିଭିନ୍ନ କାଳ ନିର୍ଣ୍ଣିତ କରାଗଲା । ବର୍ତ୍ତମାନ

କେତେକ ଦୁଃସାହସିକ ଗବେଷକ କହିଲେଣି ଯେ ସେ ଚନ୍ଦ୍ରଗୁପ୍ତ (ଗ୍ରୀକ୍ ସାଣ୍ଡ୍ରକୋଟସ୍) ହେଉଛନ୍ତି ଗୁପ୍ତବଂଶର ଚନ୍ଦ୍ରଗୁପ୍ତ ଏବଂ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ହେଉଛନ୍ତି ବାସ୍ତବରେ ଖ୍ରୀ ପୂ. ୧୫୦୦ର ବ୍ୟକ୍ତି । ଲୋକମାନ୍ୟ ତିଲକ ଓ କେତେକ ଜର୍ମାନ୍ ପଣ୍ଡିତ ଋଗ୍‌ବେଦର କାଳକୁ ୫୦୦୦ ବର୍ଷ ତଳର ବୋଲି ନିର୍ଣ୍ଣୟ କଲାବେଳେ ଇଂରେଜ ପଣ୍ଡିତମାନେ ଏହାକୁ ଖ୍ରୀ.ପୂ. ୧୨୦୦ ଶତାବ୍ଦୀର ବୋଲି କୁହନ୍ତି । ଏହି ବିବାଦମାନ ବିଷୟଗୁଡ଼ିକର ଆଶୁ ସମାଧାନ ହେବା ଆବଶ୍ୟକ । ସେଥିପାଇଁ ଐତିହାସିକମାନେ ସତ୍ୟାନ୍ୱେଷୀ ଗବେଷଣା ମାଧ୍ୟମରେ ନିଷ୍ପକ୍ଷ ନିର୍ଣ୍ଣୟରେ ପହଞ୍ଚିବା ଉଚିତ ।

ଉଇଲିୟମ୍ ଜୋନ୍‌ସ୍ ୧୭୮୪ ମସିହାରେ କଲିକତାଠାରେ ଏସିଆଟିକ୍ ସୋସାଇଟି ସ୍ଥାପିତ କରିବାର ଇତି ମଧ୍ୟରେ ଦୁଇଶହ ବର୍ଷରୁ ସାମାନ୍ୟ ଅଧିକ କାଳ ଅତିକ୍ରାନ୍ତ । ଏହି ସମୟ ମଧ୍ୟରେ ଭାରତତତ୍ତ୍ୱର (Indology) ଅଧ୍ୟୟନ, ଅନୁସଂଧାନ ଓ ଗବେଷଣା ବହୁ ଘାତ ପ୍ରତିଘାତ ମଧ୍ୟ ଦେଇ ଗତି କରିଛି । ପ୍ରାଥମିକ ଅବସ୍ଥାରେ ବିଦେଶୀ ଗବେଷକମାନେ ଏଥିରେ ଅବଶ୍ୟ ନେତୃତ୍ୱ ନେଇଥିଲେ । କିନ୍ତୁ ବର୍ତ୍ତମାନ ପ୍ରାୟତଃ ଏହି ନେତୃତ୍ୱ ଭାରତୀୟମାନଙ୍କ ଉପରେ ନ୍ୟସ୍ତ ଏବଂ ସେମାନେ ଏହି ଦାୟିତ୍ୱକୁ ଯଥୋଚିତ ଭାବରେ ତୁଲାଇବା ଲାଗି ସତତ ଉଦ୍ୟମଶୀଳ । ଗତ ଶତାବ୍ଦୀରେ ମଧ୍ୟ ଏ ଦିଗରେ ରାଜେନ୍ଦ୍ରଲାଲ ମିତ୍ର, ଆର. ଜି. ଭଣ୍ଡାରକରଙ୍କ ଭଳି ଭାରତତତ୍ତ୍ୱବିଦ୍‌ମାନେ ସେମାନଙ୍କର ଯଥେଷ୍ଟ ଅବଦାନ ଦେଇଛନ୍ତି । ଭାରତୀୟ ଗବେଷକମାନେ ସଂସ୍କୃତ ମହାଭାରତର ସର୍ବପ୍ରଥମ କ୍ରିଟିକାଲ ଓ ଜ୍ଞାନଗର୍ଭକ ସଂପାଦନା କରି ସାରିଛନ୍ତି । ଇତି ମଧ୍ୟରେ ପୁନାରୁ ସର୍ବବୃହତ୍ତ ସଂସ୍କୃତ ଅଭିଧାନ ମଧ୍ୟ ପ୍ରକାଶିତ ହୋଇ ସାରିଛି । ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା ଏବଂ ବିଭିନ୍ନ ରାଜ୍ୟର ପ୍ରତ୍ନତତ୍ତ୍ୱ ବିଭାଗମାନ ବର୍ତ୍ତମାନ ପ୍ରାୟତଃ ଭାରତୀୟ ମାନଙ୍କଦ୍ୱାରା ନିୟନ୍ତ୍ରିତ ଏବଂ ସେମାନଙ୍କ ନେତୃତ୍ୱରେ ପରିଚାଳିତ । ଭାରତୀୟ ବିଶ୍ୱବିଦ୍ୟାଳୟ ମାନଙ୍କରେ ଭାରତତତ୍ତ୍ୱର ବିଭିନ୍ନ ବିଭାଗମାନଙ୍କ ବିଷୟରେ ଉଚ୍ଚତର ଶିକ୍ଷା ଓ ଗବେଷଣାର ବ୍ୟବସ୍ଥାମାନ ମଧ୍ୟ କରାଯାଇଛି । ଏଣୁ ଆଶା କରାଯାଉଛି ଯେ, ଭାରତୀୟ ପ୍ରତ୍ନତତ୍ତ୍ୱ ସଂପର୍କରେ ତଥ୍ୟ ସଂଗ୍ରହ ଓ ସତ୍ୟାନ୍ୱେଷୀ ଜ୍ଞାନ ଆହରଣ ଲାଗି ସେହି ଭାରତୀୟମାନେ ହିଁ ଏଣିକି ଆଗେଇ ଆସିବେ । ଭାରତୀୟ ମାନଙ୍କର ନିଜକୁ ନିଜେ ଜାଣିବାର ଏହି ଉଦ୍ୟମ, ବିଶ୍ୱଦରବାରରେ ନିଜର ପରିଚୟ ଖୋଜିବାର ଏବଂ ବିଶ୍ୱ ସଂସ୍କୃତିରେ ସ୍ୱୀୟ ସଂସ୍କୃତି ଲାଗି ଉପଯୁକ୍ତ ସ୍ଥାନଟିଏ ବାଛି ନେବାର ଏହି ଅଭୀପ୍ସା ଯଥାଶୀଘ୍ର ସଫଳ ହେବ ବୋଲି ଆଶା କରାଯାଏ !

# ସହାୟକ ଗ୍ରନ୍ଥସୂଚୀ


1 The History and Culture of the Indian People, Vedic Period vol. I, Bharatiya Vidya Bhaban.

2. ଅମଳାନନ୍ଦ ଘୋଷ (କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ) : ଭାରତୀୟ ପ୍ରତ୍ନତତ୍ତ୍ୱ ।

3. The Cultural Heritage of India, vol I, The Ramkrishna Institute of Culture, Calcutta.

4. E A. Hooton : Up from the Ape (1947).

5. S.S. Sarkar : The Aboriginal Races of India (1954).

6. F. E. Pargiter : Ancient Indian Historical Tradition (1922).

7. H. De. Terra and T. T. Paterson : Studies on the Ice Age in India and Associated Human Cultures (1949).

8. V. D. Krishnaswami : Ancient India (1947).

9. John Marshall and others : Mohenjodaro and the Indus Civilization, 3 vols . (London, 1931).

10. E. Mackay : Further Excavations at Mohenjodaro, 2nd vol. (Delhi, 1938).

11. M. S Vats : Excavation at Harappa. 2 vols (Delhi 1940).

12. Bridget Allchin and Raymond Allchin : The Birth of Indian Civilization.

13. S.R. Rao : Lothal and Indus Civilization (Bombay 1973).

14. Bridget Allchin and Raymond Allchin : The Rise of Civilization in India and Pakistan, (1983).

15. A. Cunningham, S. Majumdar The Ancient Geography of India, (1924).

16. B. C. Law : Historical Geography of Ancient India (1954).

17. A. A. Macdonell : India's past (1927).

18. R.C. Majumdar : Ancient India (1952).

19. S. Piggot : Prehistoric India (1950).

20. D. H. Gordon : The Prehistoric Background of Indian Culture (1958).

21. R. E. M. Wheeler : The Indus Civilization (1953).

22. H. D. Sankalia : Indian Archaeology Today (1962).

23. G. R. Sharma : Excavation at Kausambi, 1957-56 (Allahabad, 1960).

24. B. B. Lal : Excavations at Hastinapur and other Explorations in the Upper Ganga and Sutlej Basins, 1950-52 in Ancient India vol 10 and 11 (1954 and 1956).

25. B. B. Lal "Expeditions and Excavations since Independence", in Cultural Forum, 1961 December.

26. A. Ghose : "A Century of Indian Archaeology", Ibid.

17. Jawaharlal Nehru : The Discovery of India.

28. ନୀଳକଣ୍ଠ ଦାସ : ଶ୍ରୀମଦ୍ ଭଗବତ୍ ଗୀତା ।

29. Jawaharlal Nehru : A Glimpse into the World History.

30. A.L. Basham : The Wonder that was India (1954).

31. Nilakanth Das Indian Culture. (unpublished)

32. H.D. Sankalia : Prehistory and Protohistory in India and Pakistan (1962)

33. V. Gordon Childe : New Light on the Most-Ancient East (4th Edn. 1952)

34. D.D. Kosambi : The Culture and Civilization of Ancient India in Historical Line. (1974).



# ଦ୍ୱିତୀୟ ପରିଚ୍ଛେଦ

## ଆଦି କୃଷି-ସଂସ୍କୃତି

ଭାରତ ଏକ କୃଷି-ପ୍ରଧାନ ଦେଶ । ଯୁଗ ଯୁଗ ଧରି ଏଠାରେ କୃଷି ଉପରେ ପ୍ରାଧାନ୍ୟ ଦିଆ ହୋଇ ଆସିଛି । ବର୍ତ୍ତମାନ ମଧ୍ୟ ଶତକଡ଼ା ୮୦ ଭାଗରୁ ଊର୍ଦ୍ଧ୍ୱ ଲୋକ କୃଷି ଉପରେ ନିର୍ଭରଶୀଳ । ଆମର ସାଧାରଣ ଭାବରେ ଧାରଣା ଯେ ବୈଦିକ ଆର୍ଯ୍ୟମାନେ ଥିଲେ ଏକ କୃଷି-ପ୍ରଧାନ ଗୋଷ୍ଠୀ, ଏବଂ ସେମାନେ ହିଁ ଏଠାରେ କୃଷିକାର୍ଯ୍ୟ ସର୍ବ ପ୍ରଥମେ ଆରମ୍ଭ କରିଥିଲେ । ଯଜୁର୍ବେଦରେ ସର୍ବ ପ୍ରଥମେ ଲଙ୍ଗଳରେ ଗଭୀର ଚାଷର ବର୍ଣ୍ଣନା ଥିବାରୁ କେତେକ ଗବେଷକଙ୍କ ମତରେ ଏ ଦେଶରେ ଗଭୀର ଚାଷ ଓ ଲଙ୍ଗଳର ପ୍ରବର୍ତ୍ତନ ସେହି ସମୟରୁ କରାଯାଇଛି; କିନ୍ତୁ ଏ ଧାରଣା ଠିକ୍ ନୁହେଁ । ବୈଦିକ ଆର୍ଯ୍ୟମାନଙ୍କର ବହୁ ପୂର୍ବରୁ ଯେ ଏ ଦେଶର ଚାଷବାସ ଆରମ୍ଭ କରାଯାଇଥିଲା, ତାହାର ପ୍ରମାଣ ଅଧୁନା ଆବିଷ୍କୃତ ବହୁ ପ୍ରତ୍ନତାତ୍ତ୍ୱିକ ତଥ୍ୟମାନଙ୍କରୁ ମିଳୁଛି । ସେହିଦିନରୁ ହିଁ କୃଷି ଉପରେ ଗୁରୁତ୍ୱ ଦିଆଯାଇ ଆସୁଛି । ପ୍ରାଚୀନ କାଳରେ ଯେଉଁ ସବୁ ବିଦ୍ୟାର ବିଭାଗମାନ କରାଯାଇଥିଲା ତନ୍ମଧ୍ୟରେ 'ବାର୍ତ୍ତା' ଅନ୍ୟତମ । ଏହି 'ବାର୍ତ୍ତା ଶୃଙ୍ଖଳା' ମଧ୍ୟରେ କୃଷିବିଦ୍ୟା ଅନ୍ତର୍ଗତ । ଏଥିରୁ କୃଷି ଉପରେ କିପରି ପୂର୍ବେ ଗୁରୁତ୍ୱ ଦିଆଯାଉଥିଲା, ତାହା ସହଜରେ ଅନୁମେୟ । କୃଷକମାନେ ଏଭଳି ଭାବରେ ସୁସଙ୍ଗଠିତ ଥିଲେ ଏବଂ ସେମାନଙ୍କର ସାମାଜିକ ସ୍ଥିତି ଏଭଳି ଭାବରେ ଗୁରୁତ୍ୱପୂର୍ଣ୍ଣ ଥିଲା ଯେ, ତାହା ମେଘାସ୍ଥିନିସ୍‌ଙ୍କ (ଖ୍ରୀ:ପୂ.୪ର୍ଥ ଶତାବ୍ଦୀ) ଦୃଷ୍ଟିକୁ ଏଡ଼ାଇ ଦେଇ ପାରି ନଥିଲା । ସେ ସେମାନଙ୍କୁ ଗୋଟିଏ ଜାତି ବୋଲି ତାଙ୍କ ବିବରଣୀରେ ଉଲ୍ଲେଖ କରି ଯାଇଛନ୍ତି ।

ଅଜାତଶତ୍ରୁ (ଖ୍ରୀ.ପୂ. ୬ଷ୍ଠ ଶତାବ୍ଦୀ) ଯେତେବେଳେ ପ୍ରଥମଥର ପାଇଁ ବୁଦ୍ଧଦେବଙ୍କୁ ସାକ୍ଷାତ କରିବା ଲାଗି ରାଜଗୃହ ନିକଟବର୍ତ୍ତୀ ବେଣୁବନବିହାରକୁ ଯାଇଥିଲେ, ବୁଦ୍ଧଦେବ ସେତେବେଳେ ତାଙ୍କୁ ତାଙ୍କ ରାଜ୍ୟରେ ଥିବା ବିଭିନ୍ନ ଗୋଷ୍ଠୀଙ୍କର ନାମ ପଚାରିଥିଲେ । ସେ ଯେଉଁମାନଙ୍କର ନାମ କହିଥିଲେ, ତହିଁରେ କୃଷକର ନାମ ନଥିଲା । ସେଥିପାଇଁ ବୁଦ୍ଧଦେବ ତାଙ୍କର ଦୋଷ ଦାଛି ତାଙ୍କୁ କୃଷକ ସଂପ୍ରଦାୟର ପ୍ରାଧାନ୍ୟ କଥା ବୁଝାଇଥିଲେ ଏବଂ କୃଷି ଉପରେ ଗୁରୁତ୍ୱ ଦେବାଲାଗି ପରାମର୍ଶ ଦେଇଥିଲେ । ଏଥିରୁ ବୁଝିବାକୁ ହେବ, ଯୁଗ ଯୁଗ ଧରି ଭାରତରେ କିଭଳି

କୃଷିଭିତ୍ତିକ ସଭ୍ୟତା ଓ ସଂସ୍କୃତି ମଣ୍ଡିତ ହୋଇ ଅଛି । ଏଠାରେ ଧର୍ମ ଧାରଣା, ପୂଜା, ପର୍ବ-ପର୍ବାଣି, ଉତ୍ସବ ଆଦି ସବୁଥିରେ କୃଷି-ଭିତ୍ତିକତା ସମ୍ୟକ୍ ଭାବରେ ପ୍ରତିଫଳିତ । ଅତଏବ, ଏହି ଆଦି-କୃଷି-ସଂସ୍କୃତିର ଆବିର୍ଭାବ କିପରି, କେବେ, କେଉଁଠାରେ ଓ କାହାଦ୍ୱାରା ହୋଇଥିଲା, ତାହା ଜାଣିବା ନିଶ୍ଚିତ ଭାବରେ କୌତୂହଳୋଦ୍ଦୀପକ ।

ପ୍ରାୟ ଦଶ ହଜାର ବର୍ଷ ପୂର୍ବେ ଦକ୍ଷିଣ ଏସିଆରେ (ଭାରତ ଓ ପାକିସ୍ଥାନ ସମେତ) ବର୍ତ୍ତମାନର ଜଳବାୟୁ ଭଳି ଅନୁରୂପ ଜଳବାୟୁର ଆବିର୍ଭାବ ହୁଏ । ଏହାର ପ୍ରଭାବ ଆଦି-ମାନବର ଜୀବନଯାତ୍ରାର ଧାରା ଉପରେ ପଡ଼େ । ବାରବୁଲା ଶିକାରୀ ଜୀବନ ଛାଡ଼ି ସେତେବେଳେ ସେ ସ୍ଥାୟୀ ଭାବରେ ଗୋଟିଏ ଜାଗାରେ ରହିବାକୁ ଚାହେଁ । ପଶୁପାଳନ କରିବା, ଗଛ ଲଗାଇବା ଓ ଚାଷ କରିବା ହୁଏ ଏହାର ଫଳଶ୍ରୁତି । ଖ୍ରୀ:ପୂ: ୭୦୦୦ ରେ ଏଠାରେ ଗହମ ଓ ବାର୍ଲି ଚାଷ କରାଯାଉଥିବାର ପ୍ରମାଣ ବିଦ୍ୟମାନ । ଅତଏବ, ଏହାର ବହୁବର୍ଷ ପୂର୍ବରୁ ଛାଗ, ମେଷ ଓ ଗୋମହିଷାଦିଙ୍କୁ ଗୃହପାଳିତ କରାଯାଇଥିବା ସମ୍ଭବ ।

ମଣିଷ ପ୍ରଥମେ ଯେଉଁ ବନ୍ୟ ବୃକ୍ଷର ଫଳମୂଳ ସଂଗ୍ରହ କରୁଥିଲା, କ୍ରମେ ତାହା ସେ ଲଗାଇବାକୁ ଶିଖିଲା ଏବଂ ତାହାର ଉତ୍ପନ୍ନ ଦ୍ରବ୍ୟମାନ ଖାଇ ଜୀବନ ଧାରଣ କଲା । ସେତେବେଳେ ଖାଦ୍ୟ ଦ୍ରବ୍ୟ ଯେ ସେ ନିଜେ ଉତ୍ପନ୍ନ କରିପାରିବ, ଏ ଆତ୍ମବିଶ୍ୱାସ ତା'ର ଆସିଗଲା । ରୋପଣ କରିଥିବା ବନ୍ୟ ବୃକ୍ଷମାନଙ୍କ ସହିତ କ୍ରମେ ତା'ର ମମତାବୋଧ ଆସିଗଲା । ସେ ତେଣୁ ବାରବୁଲା ଜୀବନ ଛାଡ଼ି ସ୍ଥାୟୀ ଭାବରେ ବସବାସ କରି ରହିବାକୁ ଚାହିଁଲା । ପରେ ପରେ ଏହାର ଫଳଶ୍ରୁତି ସ୍ୱରୂପ ସେ ନିଜକୁ କୃଷି-କର୍ମରେ ନିଯୁକ୍ତ କଲା । କୃଷିର ଆବିର୍ଭାବ ପରେ ସେ ଯେ ଶିକାରୀ-ଜୀବନ ସଂପୂର୍ଣ୍ଣ ଭାବରେ ପରିତ୍ୟାଗ କରିଥିଲା, ତାହା ନୁହେଁ । ବରଂ ମାଂସ ତା'ର ପ୍ରଧାନ ଖାଦ୍ୟ ଥିଲାବେଳେ କୃଷିଜାତ ଦ୍ରବ୍ୟ ଥିଲା ତା'ର ସହାୟକ ଖାଦ୍ୟ । କିନ୍ତୁ କାଳକ୍ରମେ ଜନସଂଖ୍ୟା ବୃଦ୍ଧି ଏବଂ ପର୍ଯ୍ୟାପ୍ତ ପରିମାଣରେ ମାଂସ ମିଳିବା ଅସମ୍ଭବ ହୋଇପଡ଼ିବାରୁ କୃଷିଜାତ ଦ୍ରବ୍ୟ ତା'ର ହୋଇ ଉଠିଲା ପ୍ରଧାନ ଖାଦ୍ୟ ଏବଂ ମାଂସ ଖସି ଆସିଲା ସହାୟକ ଖାଦ୍ୟ ସ୍ତରକୁ ।

ଭାରତରେ କୃଷି-ସଂସ୍କୃତିର ଅଭ୍ୟୁଦୟ ବେଳକୁ ନୂତନ ପ୍ରସ୍ତରଯୁଗ ଆସିଥିଲା । ମଣିଷ ସାମାନ୍ୟ ଟିକିଏ ବିକାଶର ସୋପାନ ଆରୋହଣ କରି ସ୍ଥାୟୀ ଭାବରେ ବସତି ସ୍ଥାପନ କରିବା ଶିଖି ଯାଇଥିଲା । ଯାହା ଯାହା ପ୍ରତ୍ନତାତ୍ତ୍ୱିକ ପ୍ରମାଣମାନ ମିଳୁଛି, ତାହା

ଉପରେ ଭିତ୍ତିକରି ମୋଟାମୋଟି ଭାବେ ସାରା ଭାରତରେ ଗଢ଼ି ଉଠିଥିବା କୃଷି ସଂସ୍କୃତିର ଅଞ୍ଚଳକୁ ଚାରି ଭାଗରେ ବିଭକ୍ତ କରାଯାଇପାରେ । ସେଗୁଡ଼ିକ ହେଲେ :

କ) ସିନ୍ଧୁ ଉପତ୍ୟକା ଓ ତାହାର ପଶ୍ଚିମାଞ୍ଚଳ ।

ଖ) ପଶ୍ଚିମ ଓ ଉତ୍ତର ଭାରତ ।

ଗ) ଗାଙ୍ଗେୟ ଉପତ୍ୟକା ଓ ପୂର୍ବଭାରତ ।

ଘ) ଦକ୍ଷିଣ ଭାରତ ।

ଏହିସବୁ ଅଞ୍ଚଳ ମାନଙ୍କରୁ ପ୍ରତ୍ନତାତ୍ତ୍ୱିକ ଖୋଦନ ଫଳରେ ଯେଉଁ ତଥ୍ୟମାନ ମିଳୁଛି, ତାହାକୁ ଭିତ୍ତିକରି, ତତ୍ତତ୍ୟ କୃଷି-ସଂସ୍କୃତିର ଏକ ସ୍ଥୂଳ ରୂପ ପୃଥକ୍ ପୃଥକ୍ ଭାବରେ ନିମ୍ନରେ ଦିଆଯାଇଛି ।

## ସିନ୍ଧୁ ଉପତ୍ୟକା ଓ ତା'ର ପଶ୍ଚିମାଞ୍ଚଳ :

ସିନ୍ଧୁ ଉପତ୍ୟକାର ମହେଞ୍ଜୋଦାରୋ, ହରପ୍ପା ଆଦି ସ୍ଥାନମାନଙ୍କରେ କିପରି ଭାବରେ ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତିର ଆବିର୍ଭାବ ହୋଇଥିଲା, ତାହା ପରବର୍ତ୍ତୀ ଅଧ୍ୟାୟ ମାନଙ୍କରେ ଲୁହାଯିବ । ତାହାର ବହୁ ବର୍ଷ ପୂର୍ବରୁ (ପ୍ରାୟ ଖ୍ରୀ: ପୂ. ୪୦୦୦) ଏଠାରେ ଆଉ ଏକ ସଭ୍ୟତାର ଆବିର୍ଭାବ ହୋଇଥିବାର ପ୍ରମାଣ ସ୍ପଷ୍ଟ । ବେଲୁଚିସ୍ଥାନରେ (ବର୍ତ୍ତମାନ ପାକିସ୍ଥାନରେ) କିଲ୍‌ଘୂଲ୍, ମହମ୍ମଦ ଓ ଅନ୍ୟାନ୍ୟ ସ୍ଥାନମାନଙ୍କରେ ଏହାର ପ୍ରମାଣମାନ ବିଦ୍ୟମାନ । ପାର୍ବତ୍ୟାଞ୍ଚଳସ୍ଥ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ରହିଥିବା ଉପତ୍ୟକା ମାନଙ୍କରେ ସମୁଦ୍ରପତ୍ତନଠାରୁ ପ୍ରାୟ ୫୦୦୦ ଫୁଟ ଉଚ୍ଚରେ ଏ ପ୍ରକାର ବସତିମାନ ଅବସ୍ଥିତ । ଏହି ସଂସ୍କୃତି ଥିଲା ବେଲୁଚିସ୍ଥାନ ଓ ଆଫଗାନିସ୍ଥାନର ପୂର୍ବାଞ୍ଚଳରେ ବିସ୍ତୃତ । ପ୍ରାଗୈତିହାସିକ କାଳରେ ବୃଷ୍ଟିଜଳକୁ ପଥର କିମ୍ବା ମାଟିବନ୍ଧରେ ଧରି ରଖି ତାହାକୁ ଯେ ବେଲୁଚିସ୍ଥାନ ଅଞ୍ଚଳରେ କୃଷି କାର୍ଯ୍ୟରେ ବ୍ୟବହୃତ କରାଯାଉଥିଲା, ତାହାର ପ୍ରମାଣ ମଧ୍ୟ ବିଦ୍ୟମାନ । ଏଠାରେ ସ୍ମରଣ କରି ରଖିବାକୁ ହେବ ଯେ, ଦାକ୍ଷିଣାତ୍ୟରେ ଗଢ଼ି ଉଠିଥିବା ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତିର ଅଧିବାସୀମାନେ ମଧ୍ୟ ପୁଷ୍କରିଣୀ ଜଳଦ୍ୱାରା କୃଷିକ୍ଷେତ୍ରରେ ଜଳସେଚନ କରୁଥିବାର ପ୍ରମାଣ ମିଳିଛି । ତେବେ ତାର ବହୁ ଶତାବ୍ଦୀ ପୂର୍ବରୁ ଯେ ବେଲୁଚିସ୍ଥାନରେ ଜଳସେଚନ ପ୍ରକ୍ରିୟା ପ୍ରବର୍ତ୍ତିତ ହୋଇଥିଲା, ତାହା ହେଉଛି ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ।

ସେହିପରି ଲେଖକଙ୍କ ନଦୀ ଉପତ୍ୟକାରେ ଚଳିତ ଶତାବ୍ଦୀର ତୃତୀୟ ଦଶକ-ମାନଙ୍କରେ ବ୍ରିଗେଡିୟର ରସ୍‌ଙ୍କ ଦ୍ୱାରା ଯେଉଁ କୃଷକ-ପଶୁପାଳକ ଗୋଷ୍ଠୀଙ୍କ ଜନପଦର ଧ୍ୱଂସାବଶେଷ ଆବିଷ୍କୃତ ହୋଇଛି, ତାହା ସମଧିକ ତାତ୍ପର୍ଯ୍ୟପୂର୍ଣ୍ଣ । ସେଠାରେ କେତେକ ଚୂଲିର ସନ୍ଧାନ ମିଳିଛି, ଯେଉଁଗୁଡ଼ିକର ଚିହ୍ନମାନ ନଷ୍ଟ ହୋଇଯାଇଛି । ଅନୁମାନ କରାଯାଉଛି ଯେ ଏଗୁଡ଼ିକ ବୋଧହୁଏ ମାଟିରେ କମ୍ବା କଞ୍ଚା ଇଟାରେ ତିଆରି ହୋଇଥିବ । ସେଠାରେ ପଶୁମାନଙ୍କର ଯେଉଁ ଅସ୍ଥ୍ୟଂଶ ବସତି-ଅଞ୍ଚଳ ମାନଙ୍କରୁ ମିଳୁଛି, ତନ୍ମଧ୍ୟରେ ମେଣ୍ଢା ଛେଳି, ଗଧ ଓ ଗୋଜାତୀୟ ପଶୁ ଅନ୍ତର୍ଗତ । ଏଥିରୁ ଅନୁମାନ କରାଯାଏ ଯେ ଏହି ସମୟବେଳକୁ ମଣିଷ ବନ୍ୟ ପଶୁଙ୍କର ମାଂସ ଖାଇବା କହ୍ନିଟା କମାଇ ଦେଲାଣି ଏବଂ କୃଷି ଉପରେ ଓ ଗୃହପାଳିତ ପଶୁମାନଙ୍କ ଉପରେ ନିଜର ଜୀବନ-ଧାରଣ ଲାଗି ବିଶେଷ ଭାବରେ ନିର୍ଭର କଲାଣି । ଏହାର କାରଣ ଥିଲା ମୁଖ୍ୟତଃ ଦୁଇଟି । ଜଙ୍ଗଲମାନ ପରିଷ୍କାର କରି ତାହାକୁ କୃଷିକ୍ଷେତ୍ରରେ ପରିଣତ କରିବା ଫଳରେ ବଣ୍ୟଜନ୍ତୁମାନେ ବସତି-ସ୍ଥଳୀରୁ ବହୁ ଦୂରକୁ ଚାଲି ଯାଇଥିବେ । ଦ୍ୱିତୀୟତଃ ବହୁଦିନ ଧରି ସ୍ଥାୟୀ ଭାବରେ ଗୋଟିଏ ଅଞ୍ଚଳରେ ରହିବା ଫଳରେ ମଣିଷ ଧୀରେ ଧୀରେ ତା'ର ପୂର୍ବର ହିଂସ୍ର ପ୍ରବୃତ୍ତି ହରାଇ ବସିଥିବ ଏବଂ ବାରବୁଲା ଜୀବନ ପରିହାର କରି ଅପେକ୍ଷାକୃତ ଶାନ୍ତ ଓ ସହଜ ଜୀବନ ଯାପନ କରିବା ପାଇଁ ଆଗ୍ରହୀ ହୋଇ ଉଠିଥିବ ।

ଏଠାରେ ଘୋଡ଼ାର ଅସ୍ଥି ମିଳୁନଥିବା ଲକ୍ଷ୍ୟ କରିବାର କଥା । ଏଣୁ ବୁଝିବାକୁ ହେବ ଯେ, ଏପର୍ଯ୍ୟନ୍ତ ଘୋଡ଼ାର ବ୍ୟବହାର ଏହି ଲୋକମାନେ ନିଶ୍ଚିତ ଭାବରେ ଜାଣିନଥିଲେ । ଗବାସ୍ଥିର ପରୀକ୍ଷାରୁ ଜଣାଯାଏ, ଏହା ହେଉଛି ଚୂଳ ଥିବା ଭାରତୀୟ ଗୋରୁମାନଙ୍କର । ଏହି ପ୍ରକାର ଗୋରୁ ଯେ ଏ ଅଞ୍ଚଳରେ ବହୁଳ ଭାବରେ ଥିଲେ ତାହାର ପ୍ରମାଣ ଆମେ ବହୁ-ବର୍ଷ ପରେ ଏହି ଅଞ୍ଚଳରେ ଗଢ଼ି ଉଠିଥିବା ସିନ୍ଧୁ-ସଂସ୍କୃତିରେ ମଧ୍ୟ ପାଇଥାଉଁ । ମହେଞ୍ଜୋ-ଦାରୋରେ ମିଳିଥିବା ବିରାଟ ଚୂଳ ଥିବା ବୃଷଭ ଚିହ୍ନାଙ୍କିତ ମୃଣ୍ମୟ ମୋହର ଏହାର ନିଦର୍ଶନ । ଆଜି ବର୍ତ୍ତମାନ ସମୟରେ ମଧ୍ୟ ଏହି ଅଞ୍ଚଳ ତଥା ଭାରତ ଓ ପାକିସ୍ଥାନର ଅନ୍ୟାନ୍ୟ ଅଞ୍ଚଳ ମାନଙ୍କରେ ଏହି ଚୂଳ ଥିବା ଗୋରୁମାନଙ୍କର ପ୍ରାଧାନ୍ୟ ଓ ସଂଖ୍ୟାଗରିଷ୍ଠତା ରହିଅଛି ।

ଦକ୍ଷିଣ-ପୂର୍ବ ଆଫଗାନିସ୍ଥାନର ମୁଣ୍ଡିଗାକ୍‌ଠାରେ (Mundigak) ଜେ. ଏମ୍. କସାଲ୍ ଭୂଖୋଦନ କରି ଯେଉଁ ପ୍ରାଗୈତିହାସିକ ଧ୍ୱଂସାବଶେଷ ଆବିଷ୍କାର କରିଚନ୍ତି, ତାହାର ତାତ୍ପର୍ଯ୍ୟ ହେଉଛି ଏହି ଯେ, ଏଠାରେ ମହେଞ୍ଜୋଦାରୋ ଓ ହରପ୍ପା ପୂର୍ବରୁ ଏକ ନଗରନିଷ୍ଠ ସଭ୍ୟତାର ଭ୍ରୂଣାତ୍ମକ ବିକାଶ ସମ୍ଭବ ହୋଇଥିଲା ।

ଗବେଷକମାନେ ରେଡ଼ିଓକାର୍ବନ ପରୀକ୍ଷା ଫଳରେ ଏହି ସଭ୍ୟତାକୁ ଖ୍ରୀ. ପୂ. ୪୦୦୦ରୁ ଖ୍ରୀ: ପୂ: ୩୫୦୦ ମଧ୍ୟରେ ସ୍ଥାପିତ କରିଛନ୍ତି । ଏଠାକାର ଗୃହଗୁଡ଼ିକ ଥିଲା ବର୍ଗାକୃତି ଅଥବା ଆୟତାକୃତି ବିଶିଷ୍ଟ । ପ୍ରାଥମିକ ଅବସ୍ଥାରେ ଚୂଲିଗୁଡ଼ିକ ଗୃହର ବହିର୍ଭାଗରେ ଅଗଣା ମଧ୍ୟରେ ରହୁଥିଲା; କିନ୍ତୁ ପରବର୍ତ୍ତୀ କାଳରେ ଏଗୁଡ଼ିକ ଗୃହ ମଧ୍ୟକୁ ବର୍ତ୍ତମାନ ଯୁଗ ଭଳି ହୋଇଥିଲା ସ୍ଥାନାନ୍ତରିତ । ବସ୍ତି ଅଞ୍ଚଳରେ ମଠିଆ ମଧ୍ୟେ କେତୋଟି କୂପର ଧ୍ୱଂସାବଶେଷ ମଧ୍ୟ ବିଦ୍ୟମାନ । ଗୋଟିଏ ବୃଷଭର କ୍ଷୁଦ୍ର ମୃଣ୍ମୟ ମୂର୍ତ୍ତିଟିଏ ଏଠାରେ ମଧ୍ୟ ମିଳିଛି । ଏହା କ୍ରୀଡ଼ନକ ଅଥବା କୌଣସି ଦେବତାଙ୍କର ମୂର୍ତ୍ତି ସେ କଥା ସଠିକ୍ ଭାବରେ କହିହେବ ନାହିଁ । ତେବେ ଏହି ସଂସ୍କୃତି ଯେ ଆହମାନବର ବାରବୁଲା ସଂସ୍କୃତିଠାରୁ ଯଥେଷ୍ଟ ଉନ୍ନତ ଥିଲା, ସେଥିରେ ସନ୍ଦେହ ନାହିଁ ।

ଏ ତ ଗଲା ବେଲୁଚିସ୍ଥାନ ଓ ଆଫଗାନିସ୍ଥାନର କଙ୍କରିଳ ପ୍ରସ୍ତରମୟ ମାଳାଞ୍ଚଳ କଥା । ଏହାର ପୂର୍ବରେ ଅବସ୍ଥିତ ନଦୀର ସିନ୍ଧୁ ଉପତ୍ୟକାରେ ଏଭଳି କୃଷିଭିତ୍ତିକ ସଭ୍ୟତା ଓ ସଂସ୍କୃତିର ବିକାଶ ଲାଗି ଅଧିକତର ସୁବିଧା ଓ ସୁଯୋଗ ବିଦ୍ୟମାନ ଥିଲା । ସିନ୍ଧୁ ଓ ତା'ର ଉପନଦୀମାନଙ୍କରେ ହେଉଥିବା ବାରମ୍ବାର ବନ୍ୟା ଫଳରେ ସେମାନଙ୍କର ଗତିପଥ ପରିବର୍ତ୍ତିତ ହେବା ସଙ୍ଗେ ସଙ୍ଗେ ମାଟି ଉପରେ ଏକ ବହଳ ପଟୁର ଆବରଣ ପଡ଼ିଯାଉଥିଲା । ଏହା ଫଳରେ ବିନା ଚାଷରେ ସେଠାରେ ଗହମ, ବାର୍ଲି, ଆଦି ଫସଲ କରିବା ସମ୍ଭବ ହୋଇପାରୁଥିଲା । ଏଠାରେ ମନେ ରଖିବାକୁ ହେବ ଯେ ଏପର୍ଯ୍ୟନ୍ତ ଲଙ୍ଗଳରେ ଚାଷ କରିବା ଉପାୟଟି ଏହି ଲୋକମାନଙ୍କୁ ଜଣାନଥିଲା । ଭୂଇଁ ଉପରେ ବିହନକୁ ବୁଣିଦେଇ ଅଥବା ସ୍ଥାନେ ସ୍ଥାନେ ଗ୍ରୋଟ ଗ୍ରୋଟ ହତିଆର ମାନଙ୍କରେ ମାଟି ଖୋଳି ଚାଷ କରାଯାଉଥିଲା । ପୂର୍ବମୁଖୀ ହୋଇ ଏହି ମାଳାଞ୍ଚଳକୁ ଅତିକ୍ରମ କରି ଯାଇବା ପରେ କଚ୍ଛିର ସମତଳ ଅଞ୍ଚଳରେ (ବୋଲାନ୍ ନଦୀର ଅବବାହିକା) ପହଞ୍ଚିବା ମାତ୍ରେ ଆମେ ମେହେରଗଡ଼ଠାରେ ଏହି ଆଦ୍ୟ କୃଷି-ସଂସ୍କୃତିର ଏକ ପ୍ରଚ୍ଛନ୍ନ ଧ୍ୱଂସାବଶେଷ ଦେଖିବାକୁ ପାଉଥାଉଁ । ଏହାର ଅବସ୍ଥିତି କ୍ୱେଟାଠାରୁ ୧୫୦ କିଲୋମିଟର ଦୂରରେ । ଫରାସୀ ପ୍ରତ୍ନତାତ୍ତ୍ୱିକ ଦଳ ପ୍ରଥମେ ଏହାକୁ ଆବିଷ୍କାର କରିଥିଲେ ୧୯୭୪ ମସିହାରେ । ଏଠାରେ ମଧ୍ୟ ସେହିପରି କଞ୍ଚା ଇଟାରେ ତିଆରି ଗୃହମାନଙ୍କର ଧ୍ୱଂସାବଶେଷ ବିଦ୍ୟମାନ । କିନ୍ତୁ ଗୃହ ଗୁଡ଼ିକର ଗଠନ ଟିକିଏ ଭିନ୍ନ ଧରଣର । ଗୃହର କାନ୍ଥ-କୋଣରେ ମାଟିର ପ୍ରଲେପ ଦିଆଯାଇ ତାହାକୁ ଗୋଲାକୃତି କରାଯାଇଛି ଏବଂ କୋଣ ଚିହ୍ନକୁ ଲୋପ କରି-ଦିଆଯାଇଛି । ତା'ଉପରେ ଆଙ୍ଗୁଠିର ଛାପମାନ ଏପର୍ଯ୍ୟନ୍ତ ମଧ୍ୟ ଦେଖାଯାଉଛି । ଏଠାରେ ଉତ୍ପନ୍ନ ଫସଲକୁ ସଂଗ୍ରହକରି ରଖିବା ପାଇଁ ଅମାର-ଗୃହମାନ ମଧ୍ୟ ନିର୍ମିତ । କେତୋଟି ବଡ଼ ବଡ଼ ଗୃହ ଅଛି, ଯେଉଁଥିରେ କି ଛଅରୁ ନଅ ପର୍ଯ୍ୟନ୍ତ କୋଠରୀ ଅଛି ।

ଏଥିରୁ ଜଣାପଡୁଛି ଯେ, ଏମାନଙ୍କର ପରିବାର ଗୁଡ଼ିକ ଅପେକ୍ଷାକୃତ ବଡ଼ ଥିବ । ଏଗୁଡ଼ିକ ଏକାନ୍ନବର୍ତ୍ତୀ ପରିବାର ହୋଇଥିବା ସମ୍ଭବ । ରେଡ଼ିଓ କାର୍ବନ ପରୀକ୍ଷା ଫଳରେ ଏହି ସଭ୍ୟତା ବର୍ତ୍ତମାନ ଖ୍ରୀ: ପୂ: ୫୧୦୦ରେ ସ୍ଥାପିତ । ଅତଏବ, ବେଲୁଚିସ୍ଥାନ ଓ ଆଫଗାନିସ୍ଥାନରେ ଗଢ଼ି ଉଠିଥିବା କୃଷି-ସଂସ୍କୃତିଠାରୁ ଏହା ପ୍ରାଚୀନତର ।

ଏଠାରେ ଏକ ସ୍ୱତନ୍ତ୍ର ସ୍ଥାନରେ ଅବସ୍ଥିତ ଦୁଇଟି ସର୍ବସାଧାରଣ କବର-ସ୍ଥାନର ସଂଧାନ ମିଳିଛି । ମନେରଖିବାକୁ ହେବ ଯେ, ଏହା ହେଉଛି ଭାରତରେ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇଥିବା ସର୍ବପ୍ରାଚୀନ ସର୍ବସାଧାରଣ କବରସ୍ଥାନ । ସେହି ଦୃଷ୍ଟିରୁ ଏହାର ଗୁରୁତ୍ୱ ରହିଛି । ଶବଗୁଡ଼ିକୁ ଏଠାରେ କଡ଼ ମୋଡ଼େଇ ଓ ସଙ୍କୁଚିତ କରାଇ ଶୁଆଇ ଦିଆଯାଉଛି । ମୃଣ୍ମୟ ମାଳ ଆଦି ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁମାନ କବର ମଧ୍ୟରେ ବିଦ୍ୟମାନ । ପରବର୍ତ୍ତୀ ଯୁଗରେ କବର ମଧ୍ୟରୁ ମିଳୁଥିବା ମୃଣ୍ମୟ ପାତ୍ରମାନଙ୍କ ସ୍ଥାନରେ ଏଠାରୁ ଆଲକାତରା ବୋଳାଯାଉଥିବା ଟୋକେଇମାନ ମିଳୁଛି । ତତ୍‌ବିଦ୍‌ମାନଙ୍କର ଧାରଣା ଯେ ମୃଣ୍ମୟ ପାତ୍ର ତିଆରି କୌଶଳ ଜଣାଯିବା ପୂର୍ବରୁ ଏହି ଟୋକେଇମାନ ମୃଣ୍ମୟ ପାତ୍ରର କାର୍ଯ୍ୟ କରୁଥିଲା । ଏହା ନିଶ୍ଚିତ ଭାବରେ ଏକ କୌତୂହଳୋଦ୍ଦୀପକ ଆବିଷ୍କାର । ଅବଶ୍ୟ ସଭ୍ୟତାର ପରବର୍ତ୍ତୀ ସ୍ତରମାନଙ୍କରେ ଏଠାରେ ମୃଣ୍ମୟ ପାତ୍ରମାନଙ୍କର ସଂଧାନ ମିଳୁଛି ଯାହାର କି ଇରାନ୍ ଓ ମେସୋପଟାମିଆର (ଇରାକ୍) ପାତ୍ର ନିର୍ମାଣ-ଶୈଳୀ ସହିତ ସୌସାଦୃଶ୍ୟ ବିଦ୍ୟମାନ । ଆମେ ଏପର୍ଯ୍ୟନ୍ତ ମଧ୍ୟ ଟୋକେଇରେ ଗୋବର ବୋଳି ତହିଁରେ ଧାନ, ଚାଉଳ ଆଦି ରଖୁଛୁ । ଏହା ଉକ୍ତ ଆଦିମ ପରଂପରାର ଅବଶେଷ ବୋଲି ମନେହୁଏ ।

ପ୍ରତ୍ନତାତ୍ତ୍ୱିକ ଆଲଚିନ୍ ଦମ୍ପତିଙ୍କ ମତରେ ଖ୍ରୀ: ପୂ: ୫୦୦୦ ବର୍ଷ ତଳେ ଏଠାରେ ଗହମ, ବାର୍ଲି ଏବଂ ଖଜୁରୀ ଚାଷ କରିବାର ନିଦର୍ଶନ ମେହେରଗଡ଼ଠାରେ ମିଳେ । ଆଉ ମଧ୍ୟ ବଣ୍ୟ ମେଷ, ଛାଗ, ଆଦିଙ୍କର ଅସ୍ଥ୍ୟଂଶମାନ କମ୍ ମିଳୁଥିବା ବେଳେ ଗବାଦି ପଶୁମାନଙ୍କର ବହୁଳ ପରିମାଣରେ ମିଳେ । ଖାଦ୍ୟାଲାଗି ଏହି ଲୋକମାନେ ଅନ୍ୟ ପ୍ରାଣୀମାନଙ୍କଠାରୁ ଗବାଦି ପଶୁମାନଙ୍କ ଉପରେ ଅଧିକତର ନିର୍ଭରଶୀଳ ଥିବାର ଏହା ଏକ ନିଦର୍ଶନ । ପ୍ରସ୍ତର-ନିର୍ମିତ ଦାଆରେ ଲଗାଯାଇଥିବା ଆଲକାତରାରେ ଅନେକ ପ୍ରକାର ଗହମଦାନା ଲାଗି ରହିଥିବାର ଦେଖାଯାଏ । ଏଥିରୁ ଜଣାଯାଏ ଯେ ଏମାନେ ବହୁ ପ୍ରକାରର ଗହମ ଚାଷ କରୁଥିଲେ । କିନ୍ତୁ ଏଠାରେ ଧାନଚାଷର ପ୍ରମାଣ ମିଳୁନାହିଁ । ସମ୍ଭବତଃ ଧାନଚାଷ ପରେ ପ୍ରଚଳିତ ହୋଇଥିଲା । ଏହି ସମୟର ଆଉ ଏକ କୌତୂହଳୋଦ୍ଦୀପକ ଆବିଷ୍କାର ହେଉଛି କାର୍ପାସ-ଚାଷ ବିଷୟରେ ତଥ୍ୟ-ଉଦ୍‌ଘାଟନ । ସିନ୍ଧୁ-ସଂସ୍କୃତିର ଏକ

କବର ମଧ୍ୟରୁ କାର୍ପାସ ସୂତାର ଯେଉଁ ପ୍ରମାଣ ମିଳିଥିଲା, ଉପରୋକ୍ତ ତଥ୍ୟର ଆବିଷ୍କାର ଫଳରେ ଭାରତରେ କାର୍ପାସ-ସୂତାର ସମୟ ଆହୁ ପ୍ରାୟ ଦୁଇ ହଜାର ବର୍ଷ ତଳକୁ ଘୁଞ୍ଚାଯାଇ ପାରିଛି । କାର୍ପାସ ବସ୍ତ୍ରର ବ୍ୟବହାର ଏମାନେ ଜାଣିଥିବା ସମ୍ଭବ । ତା'ହେଲେ, ବସ୍ତ୍ର-ପ୍ରସ୍ତୁତିର କାରିଗରୀ କୌଶଳ ମଧ୍ୟ ଏମାନଙ୍କୁ ଜଣାଥିବ ।

ସିନ୍ଧୁ ନଦୀର ଉପନଦୀ ଘୋମାଲ ନଦୀର ଅବବାହିକାରେ ଅବସ୍ଥିତ ଗୁମଲାଠାରେ ଆଉ ଏକ ପ୍ରାଚୀନ ପ୍ରାଗୈତିହାସିକ କୃଷି-ସଂସ୍କୃତିନିଷ୍ଠ ବସତିର ସନ୍ଧାନ ବିଦ୍ୟମାନ । ତକ୍ଷଶିଳା ନିକଟବର୍ତ୍ତୀ ସରାଇଖୋଲା, ପଶ୍ଚିମ-ପଞ୍ଜାବର ଜଲିଲପୁର ଆଦି ସ୍ଥାନମାନଙ୍କରେ ମଧ୍ୟ ଅନୁରୂପ ପ୍ରତ୍ନତାତ୍ତ୍ୱିକ ଅବଶେଷମାନ ବିଦ୍ୟମାନ । ପେଶୱାର ବିଶ୍ୱବିଦ୍ୟାଳୟ ଦ୍ୱାରା ନିକଟ ଅତୀତରେ ହୋଇଥିବା ଖନନ ଫଳରେ ରହମାନଢେରୀଠାରେ ଗୋଟିଏ ବସତିର ସନ୍ଧାନ ମିଳିଛି, ଯାହାର ଦୈର୍ଘ୍ୟ ହେଉଛି ୫୫୦ ମିଟର ଓ ପ୍ରସ୍ଥ ହେଉଛି ୪୦୦ ମିଟର । ଏହାର ଚତୁର୍ଦ୍ଦିଗରେ ଗୋଟିଏ ପ୍ରାଚୀର ବିଦ୍ୟମାନ । ଉତ୍ତର-ପଶ୍ଚିମରୁ ଦକ୍ଷିଣ-ପୂର୍ବକୁ ଯାଇଥିବା ରାସ୍ତାଟିଏ ଏହାକୁ ଦୁଇ ଭାଗ କରିଦେଇଛି । ଗୃହ ଗୁଡ଼ିକ ରାସ୍ତା ସହିତ ସମକୋଣ କରି ଅବସ୍ଥିତ । ଏକ ବିଧିବଦ୍ଧ ନିର୍ମାଣ-ଯୋଜନାକୁ ଅନୁସରଣ କରି ଏଠାରେ ଗୃହମାନ ନିର୍ମିତ । ଏହା ୨୨ ହେକ୍ଟର ପରିମିତ ଜମିରେ ବିସ୍ତୃତ ଏକ ବସତି । ଆଲ୍‌ଚିନ୍ ଦମ୍ପତିଙ୍କ ମତରେ ଏହାର ତତ୍କାଳୀନ ଲୋକସଂଖ୍ୟା ଥିଲା ପ୍ରାୟ ୧୨,୦୦୦ । ସେହି ସମୟ କଥା ବିଚାରକୁ ନେଲେ ଏହାର ଲୋକସଂଖ୍ୟା ଖୁବ୍ ସାନ୍ଦ୍ର ଥିବା ଜଣାପଡ଼େ । ଏହା ଥିଲା ଏକ ବିରାଟ ଗ୍ରାମ ବା ଅର୍ଦ୍ଧ-ନଗରୀ । ଅଙ୍ଗାର-ପରୀକ୍ଷା ଫଳରେ ଏହାର କାଳକୁ ଖ୍ରୀ: ପୂ ୩୩୪୦ରେ ସ୍ଥିରୀକୃତ କରାଯାଇ ପାରିଛି । ଏହି ସଂସ୍କୃତି ଥିଲା ବାସ୍ତବିକ, ଖୁବ୍ ସୁଦୂରପ୍ରସାରୀ । ସୁଦୂର ଦକ୍ଷିଣରେ ରାଜସ୍ଥାନସ୍ଥ କାଲିବଙ୍ଗାଠାରେ ହରପ୍ପୀୟ ସଂସ୍କୃତିର ପୂର୍ବରୁ ଯେଉଁ ନଗରନିଷ୍ଠ ସଂସ୍କୃତିର ଧ୍ୱଂସାବଶେଷ ମିଳିଛି, ତଦ୍ୱାରା ଏହାର ସୁଦୂରପ୍ରସାରିତା ସୁସ୍ପଷ୍ଟ ପ୍ରମାଣିତ । ଏହିସବୁ ପ୍ରମାଣ ମାନଙ୍କରୁ ଆମେ ସିଦ୍ଧାନ୍ତ କରିପାରିବା ଯେ ସିନ୍ଧୁ-ଉପତ୍ୟକା ଓ ତାହାର ପଶ୍ଚିମାଞ୍ଚଳରେ ସିନ୍ଧୁ-ସଂସ୍କୃତିର (ଖ୍ରୀ:ପୂ: ୨୫୦୦) ପୂର୍ବବର୍ତ୍ତୀ ଆଉ ଏକ ସଂସ୍କୃତି ଗଢ଼ି ଉଠିଥିଲା, ଯାହା କି ଥିଲା କୃଷିଭିତ୍ତିକ ଏବଂ ପ୍ରାଚୀନ ପ୍ରସ୍ତରଯୁଗୀୟ ସଂସ୍କୃତିଠାରୁ ସୁସ୍ପଷ୍ଟ ଉନ୍ନତ । ଏହି ଲୋକମାନଙ୍କର ସଂସ୍କୃତି (ଖ୍ରୀ: ପୂ. ୬୦୦୦) କୃଷିଭିତ୍ତିକ ଥିଲେ ମଧ୍ୟ ଏମାନେ ପ୍ରଶସ୍ତ ଇଷ୍ଟକ ନିର୍ମିତ ଗୃହମାନଙ୍କରେ ଏକ ପରିଷ୍କାର ପରିଚ୍ଛନ୍ନ ପରିବେଶରେ ରହୁଥିଲେ । ଏହା ବୋଧହୁଏ ଥିଲା ପରବର୍ତ୍ତୀ କାଳରେ ଏହି ଅଞ୍ଚଳରେ ଗଢ଼ି ଉଠିଥିବା ଉନ୍ନତ ନଗରନିଷ୍ଠ ସଂସ୍କୃତିର ଏକ ଭ୍ରୂଣାତ୍ମକ ଅଭିପ୍ରକାଶ ।

## ପଶ୍ଚିମ ଓ ଉତ୍ତର ଭାରତ :

ହିମାଳୟର ଉପତ୍ୟକାସ୍ଥ ବହୁ ସ୍ଥାନରେ ନୂତନ ପ୍ରସ୍ତରଯୁଗୀୟ ଅବଶେଷମାନ ପରିଦୃଶ୍ୟମାନ । କାଶ୍ମୀର ଉପତ୍ୟକାସ୍ଥ 'ବୁର୍ଜାହୋମ' ହେଉଛି ଏମାନଙ୍କ ମଧ୍ୟରେ ଏକ ପ୍ରମୁଖ ସ୍ଥାନ । ଏହା ଶ୍ରୀନଗରର ଉତ୍ତର-ପୂର୍ବ ଦିଗରେ ଝେଲମ୍ ନଦୀର ସନ୍ନିକଟସ୍ଥ ସମତଳ ଭୂମିର ଉପର ମୁଣ୍ଡରେ ଅବସ୍ଥିତ । ୟେଲ୍ ଓ କ୍ୟାମ୍ବ୍ରିଜ ବିଶ୍ୱବିଦ୍ୟାଳୟ ଦ୍ୱୟର ଏକ ମିଳିତ ପ୍ରତ୍ନତାତ୍ତ୍ୱିକଦଳ ଏହି ସ୍ଥାନ ସଂପର୍କରେ ପୂର୍ବରୁ କିଛିଟା ପ୍ରାଥମିକ ଅନୁସଂଧାନ କରିଥିଲେହେଁ ପ୍ରକୃତରେ ବିଧିବଦ୍ଧ ଏବଂ ସଘନ ଅନୁସଂଧାନ କାର୍ଯ୍ୟ ଆରମ୍ଭ କରାଯାଇଥିଲା ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥାଦ୍ୱାରା ୧୯୬୯ ମସିହାରେ । ଭୂଖନନ ଫଳରେ ଏଠାରେ ଯେଉଁ ନୂତନ ପ୍ରସ୍ତରଯୁଗୀୟ ସଂସ୍କୃତିର ଅବଶେଷ ମିଳୁଛି, ତାହା ଖୁବ୍ କୌତୂହଳଜନକ; କାରଣ ଭାରତୀୟ ଅନ୍ୟାନ୍ୟ ସ୍ଥାନର ଅବଶେଷଠାରୁ ଏହାର ଏକ ସ୍ୱାତନ୍ତ୍ର୍ୟ ରହିଅଛି । ପ୍ରଥମ ସ୍ୱାତନ୍ତ୍ର୍ୟଟି ହେଲା ଭୂମିତଳେ ନିର୍ମିତ ହୋଇଥିବା ବାସସ୍ଥଳୀ । ଗୃହର ଚତୁର୍ଦ୍ଦିଗରେ ଥିବା ଖୁମ୍ବ ପୋତିବାର ଗର୍ତ୍ତମାନଙ୍କର ଅବସ୍ଥିତିରୁ ଜଣାଯାଏ ଯେ ଏହାର ଛାତ ସମ୍ଭବତଃ ଥିଲା ଗମ୍ବୁଜାକୃତିର । ଗୃହ ମଧ୍ୟରେ ପ୍ରବେଶ କରିବା ପାଇଁ ଉପରୁ ତଳକୁ ସୋପାନ-ଶ୍ରେଣୀ ଲମ୍ବିତ । ବୋଧହୁଏ ଶୀତର ପ୍ରକୋପରୁ ରକ୍ଷାପାଇବା ପାଇଁ ଏପରି ଭୂମିତଳ ଗୃହମାନ ଏମାନେ ନିର୍ମାଣ କରୁଥିଲେ ।

ଦ୍ୱିତୀୟ ସ୍ୱାତନ୍ତ୍ର୍ୟଟି ହେଲା କବର ଦେବା ପଦ୍ଧତିରେ । ଏଠାରେ ମଣିଷ ସହିତ କୁକୁରକୁ କବର ଦିଆଯାଉଥିଲା । ମାଞ୍ଚୁରିଆର 'ଆଙ୍ଗ୍-ଆଙ୍ଗ୍-ସି' ସଂସ୍କୃତି ସହିତ କୁକୁରକୁ କବର ଦେବା ପଦ୍ଧତିଟି ଏହା ସହିତ ସଂଶ୍ଳିଷ୍ଟ ବୋଲି କେତେକ ତତ୍ତ୍ୱବିଦ ମତ ଦିଅନ୍ତି । ଏବେ ମଧ୍ୟ ସେଠାରେ କେତେକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଲୋକ ମାଲିକଙ୍କ ସହିତ କୁକୁରକୁ ବଳି ଦେଇଥାନ୍ତି । ସମ୍ଭବତଃ ଏହି ସମୟରେ କୁକୁର ଏହି ଲୋକମାନଙ୍କର ଏକ ପୂଜା-ପର୍ଣ୍ଣ ସ୍ଥାନ ପ୍ରାପ୍ତ ହୋଇଥିବ । ମୃତଙ୍କର ସମାଧିର କୁକୁର ସହିତ ସଂପୃକ୍ତ ବିଷୟରେ ପରବର୍ତ୍ତୀ କାଳରେ ଯେଉଁ ଭାରତୀୟ ଚିନ୍ତାଧାରା ମୁଣ୍ଡଟେକି ଉଠିଛି, ତାହାର ଭ୍ରୂଣାତ୍ମକ ଅଭିପ୍ରକାଶ ଏହି ଆଦିମ ଗୋଷ୍ଠୀ ମଧ୍ୟରେ ଦେଖାଯାଇଥିବାର ସମ୍ଭବ । ଋଗ୍‌ବେଦରେ (୧ । ୬୨ । ୩) ଥିବା ଇନ୍ଦ୍ରଙ୍କ ଶ୍ୱାନ 'ସରମା' ଉପଖ୍ୟାନଟିର ସୃଷ୍ଟି ଉପରେ ଏହାର ପ୍ରଭାବ ମଧ୍ୟ ପଡ଼ିଥିବା ସ୍ୱାଭାବିକ । ଶ୍ୱାନକୁ ଏକ ପବିତ୍ର ଜୀବ ବୋଲି ସ୍ୱୀକାର କରାଯାଇଥିବା କଥା ଋଗ୍‌ବେଦର ଆଉ ଏକ ଦୃଷ୍ଟାନ୍ତରୁ ଜଣାପଡ଼େ । ବାଲଖିଲ୍ୟ-ସୂକ୍ତସ୍ଥ (ଋ: ବେ. ୮ । ୫୪ । ୩) ଦାନ-ସ୍ତୁତିରେ ଏକଶତ ଶ୍ୱାନଙ୍କୁ ଦାନ ଦିଆ-ଯାଇଥିବା କଥାର ଉଲ୍ଲେଖ ଅଛି । ଆଉ ମଧ୍ୟ ଧର୍ମରୂପୀ ଶ୍ୱାନ ଯୁଧିଷ୍ଠିରଙ୍କ ମହାଯାତ୍ରା ସମୟରେ ତାଙ୍କ ସହିତ ସ୍ୱର୍ଗକୁ ଯାଇଥିବାର ବର୍ଣ୍ଣନା ଆମେ ମହାଭାରତରେ

ପାଇଥାଉଁ । ଶ୍ୱାନ ପରଲୋକରେ ସ୍ୱର୍ଗକୁ ବାଟ କଢ଼ାଇନିଏ, ଏହି ଭାବର ସଙ୍କେତ ମହାଭାରତସ୍ଥ ଆଖ୍ୟାୟିକାଟିରୁ ମିଳୁଛି । ଶାଂସିର ନୂତନ ପ୍ରସ୍ତରଯୁଗୀୟ ଚନ୍ଦ୍ରାଧାର ସହିତ ଏହାର ମଧ୍ୟ ସାମ୍ୟ ଦର୍ଶନୀୟ । କୁକୁର ସ୍ୱର୍ଗ-ପଥକୁ ବାଟ କଢ଼ାଇ ନେବାର ଆଶା ଭରସା କରି ଏମାନେ ମୃତବ୍ୟକ୍ତିଙ୍କ ଶବ ସହିତ ଏହାକୁ କବର ଦେଉଥିବା ସମ୍ଭବ । ଏଥିରୁ ପରିଷ୍କାର ଭାବରେ ଜଣାପଡୁଛି ଯେ 'ପରଲୋକ' ବିଷୟରେ ଏମାନଙ୍କର ଏକ ଭ୍ରାନ୍ତ୍ୟାତ୍ମକ ଧାରଣା ଥିଲା ।

ଏହାର ଆଉ ଗୋଟିଏ ସ୍ୱାତନ୍ତ୍ର୍ୟ ମଧ୍ୟ ବିଦ୍ୟମାନ । ତାହା ହେଲା, ଏଠାରୁ ଆବିଷ୍କୃତ ହୋଇଥିବା ହାତହତିଆର ସଂପର୍କରେ । ଏଠାରେ ପ୍ରଚୁର ପରିମାଣରେ ଅସ୍ଥିନିର୍ମିତ ହତିଆର ଓ କୁମ୍ଭ ଆଦି ନିତ୍ୟ ବ୍ୟବହାର୍ଯ୍ୟ ଜିନିଷମାନ ମିଳୁଛି; ଆଉ ମଧ୍ୟ ଆୟତାକାର ବିଶିଷ୍ଟ ଛିଦ୍ରଯୁକ୍ତ ପ୍ରସ୍ତରନିର୍ମିତ ଛୁରୀମାନ ମିଳୁଛି । ଉତ୍ତର ଚୀନର ନୂତନ ପ୍ରସ୍ତରଯୁଗୀୟ-ସଂସ୍କୃତି ସହିତ ସଂପୃକ୍ତ ସ୍ଥାନମାନଙ୍କରେ ଏହି ପ୍ରକାର ଅବଶେଷମାନ ପ୍ରାୟ ସର୍ବତ୍ର ବିଦ୍ୟମାନ । ଅତଏବ, ଏହି ଲୋକମାନେ ହୁଏତ ମଙ୍ଗୋଲୀୟ ଗୋଷ୍ଠୀର ହୋଇପାରନ୍ତି । ଏହି ମଙ୍ଗୋଲୀୟ ଗୋଷ୍ଠୀ ପରେ କ୍ରମଶଃ ସିନ୍ଧୁ-ସଂସ୍କୃତି ସହିତ ସଂପୃକ୍ତ ମହେଞ୍ଜୋଦାରୋ, ହରପ୍ପା ଆଦି ସ୍ଥାନମାନଙ୍କୁ ଗତି କରିଥିଲେ । ଏହାର ନିଦର୍ଶନ ହେଉଛି ହରପ୍ପୀୟ କବରମାନଙ୍କରୁ ମିଳିଥିବା ନର-କରୋଟୀ ମାନଙ୍କରେ ଅନ୍ୟାନ୍ୟ ଗୋଷ୍ଠୀ ମଧ୍ୟରେ ମଙ୍ଗୋଲୀୟ ଗୋଷ୍ଠୀର ନର-କରୋଟୀ ମାନଙ୍କର ବିଦ୍ୟମାନତା ।

ବେଲୁଚିସ୍ଥାନ ଓ ସିନ୍ଧୁ ଅବବାହିକାର ପଶ୍ଚିମରେ ଗହମ ଓ ବାର୍ଲିର ସନ୍ଧାନ ମିଳୁଥିବା ବେଳେ ଏଠାରେ ଗହମ ଓ ବାର୍ଲି ସହିତ ଚାଉଳର ସନ୍ଧାନ ମଧ୍ୟ ମିଳୁଛି । ପଥର ଚକିର ଆବିଷ୍କାରରୁ ଜଣାପଡୁଛି ଯେ ତାହା ଆଜିକାଲି ଭଳି ଖାଦ୍ୟଦ୍ରବ୍ୟର ଦାନା ପେଷିବା ପାଇଁ ବ୍ୟବହୃତ ହେଉଥିଲା ।

ପ୍ରତ୍ନତାତ୍ତ୍ୱିକମାନେ ରେଡ଼ିଓ କାର୍ବନ୍ ପରୀକ୍ଷା ଫଳରେ ଏହି ସଂସ୍କୃତିର କାଳକୁ ଖ୍ରୀ: ପୂ: ୨୯୨୦ରେ ସ୍ଥାନିତ କରିଛନ୍ତି । ଅତଏବ, ଏହା ହରପ୍ପୀୟ ସଂସ୍କୃତିଠାରୁ ପ୍ରାୟ ୫୦୦ ବର୍ଷ ଅଧିକ ପୁରାତନ । ଏହାର ଶେଷ ସମୟ ହେଉଛି ଖ୍ରୀ: ପୂ: ୧୭୦୦ । ଏହାର ତାତ୍ପର୍ଯ୍ୟ ହେଲା, ଏହାର ଶେଷ ସମୟ ପ୍ରାୟ ହରପ୍ପୀୟ ସଂସ୍କୃତିର ଶେଷ ସମୟ (ଖ୍ରୀ: ପୂ: ୧୭୫୦) ସହିତ ସମାନ । ଉଭୟ ସଂସ୍କୃତି କିଛି ସମୟ ଧରି ସମାନ୍ତରାଳ ଭାବରେ ଗତି କରିଥିବାର ପ୍ରମାଣ ଏଥିରୁ ମିଳୁଛି ।

## ଗାଙ୍ଗେୟ ଉପତ୍ୟକା ଓ ପୂର୍ବଭାରତ :

ସିନ୍ଧୁନଦୀର ପୂର୍ବକୁ ଗାଙ୍ଗେୟ ଉପତ୍ୟକା ଓ ଭାରତର ପୂର୍ବାଞ୍ଚଳରେ ମଧ୍ୟ ନୂତନ ପ୍ରସ୍ତର ଯୁଗର ଅବଶେଷମାନ ବିଦ୍ୟମାନ । ଜନ୍ତୁ ଏ ପର୍ଯ୍ୟନ୍ତ ଖୁବ୍ ସୀମିତ ସ୍ଥାନମାନଙ୍କରେ ଏହି ଅବଶେଷ ଗୁଡ଼ିକର ସନ୍ଧାନ ମିଳିଛି । ନୂତନ ପ୍ରସ୍ତରଯୁଗୀୟ ପ୍ରଧାନ ଚିହ୍ନ ଗୁଡ଼ିକ ହେଲା କୃଷି, ପଶୁପାଳନ, ମୃଣ୍ମୟପାତ୍ର ନିର୍ମାଣ ଓ ଚକ୍ର ସଂପର୍କରେ ଅଧିବାସୀମାନଙ୍କର ଜ୍ଞାନ । ଏହି ମାନଦଣ୍ଡରେ ମାପିଲେ ଏଠାକାର ଆବିଷ୍କୃତ ସ୍ଥଳୀମାନଙ୍କ ମଧ୍ୟରୁ ଅଧିକାଂଶ ହେଉଛି ପ୍ରାଚୀନ ପ୍ରସ୍ତରଯୁଗ ଓ ନୂତନ ପ୍ରସ୍ତରଯୁଗର ମଧ୍ୟବର୍ତ୍ତୀ ଯୁଗ (Mesolithic Age) ସହିତ ସଂଶ୍ଳିଷ୍ଟ ।

୧୯୭୧ ମସିହାରେ ସର୍ବପ୍ରଥମେ ଗୁରୁଦୀପ ସିଂହ ନାନା ପ୍ରକାର ବୈଜ୍ଞାନିକ ଗବେଷଣା ଓ ପରୀକ୍ଷା ନିରୀକ୍ଷା ପରେ ପ୍ରମାଣ ଦର୍ଶାଇଲେ ଯେ ସିନ୍ଧୁନଦୀର ପୂର୍ବାଞ୍ଚଳରେ ଖ୍ରୀ. ପୂ. ୫୦୦୦ରେ କୃଷି-କାର୍ଯ୍ୟ ପ୍ରବର୍ତ୍ତିତ ହୋଇଥିଲା । ସେ ଭୂମିତଳେ ପୋତିହୋଇ ରହିଥିବା ପୁଷ୍ପରେଣୁ ଗୁଡ଼ିକର ପରୀକ୍ଷା କରି ଏ ପ୍ରକାର ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ଏହାର ତିନି ବର୍ଷ ପରେ (୧୯୭୪ରେ) ମେହେରଗଡ଼ ଠାରେ (ବର୍ତ୍ତମାନ ପାକିସ୍ଥାନରେ) ଆବିଷ୍କୃତ ହୋଇଥିବା ସମକାଳୀନ କୃଷି-ସଂସ୍କୃତିର ଅବଶେଷମାନ ତାଙ୍କର ଏହି ସିଦ୍ଧାନ୍ତକୁ ଏକ ଦୃଢ଼ତର ଭିତ୍ତି ପ୍ରଦାନ କଲା । ଜି. ଆର୍. ଶର୍ମା ଓ ତାଙ୍କ ଏଲାହାବାଦ ବିଶ୍ୱବିଦ୍ୟାଳୟର ସହକର୍ମୀମାନେ ଏଲାହାବାଦ ନିକଟବର୍ତ୍ତୀ କୋଲ୍ଡିହ୍ୱା ଓ ମହଗରା ନାମକ ଦୁଇଟି ସ୍ଥାନରେ ନୂତନ ପ୍ରସ୍ତରଯୁଗୀୟ ସଂସ୍କୃତିର ଅବଶେଷମାନ ଆବିଷ୍କାର କରିଥିଲେ । ଏଥିରେ ପ୍ରସ୍ତର ଓ ଅସ୍ଥି ନିର୍ମିତ ହତିଆରମାନ ଏବଂ ଅତି ଅମସୃଣ ମୃଣ୍ମୟପାତ୍ରମାନ ଅନ୍ତର୍ଭୁକ୍ତ । ଅନେକ ପାତ୍ରରେ ଦଉଡ଼ି କମ୍ବା ଆଙ୍ଗୁଠିର ଚିହ୍ନ ବିଦ୍ୟମାନ । ଏହି ଦଉଡ଼ି ହୁଏତ ବଣୀ ଘାସରେ କମ୍ବା ଏହି ଲୋକମାନଙ୍କ ଦ୍ୱାରା ଉତ୍ପନ୍ନ କୌଣସି ଶସ୍ୟର ନଳିରେ ବଳାଯାଇ ତିଆରି ହୋଇଥିବ । ଏହି ମୃଣ୍ମୟପାତ୍ର ମାନଙ୍କର ଆଉ ଏକ ବିଶେଷତ୍ୱ ହେଉଛି, ଏଥିରେ କୁଣ୍ଡା ମିଶି କରି ରହିଛି । ମାଟି ସହିତ କୁଣ୍ଡା ଗୋଳାଇ ଏହାକୁ ବୋଧହୁଏ ତିଆରି କରାଯାଉଥିଲା । ଏହିପରି କୁଣ୍ଡା ମିଶାଇବା ପଦ୍ଧତିରେ ହାଣ୍ଡି ମାଠିଆ ତିଆରି କରିବା, ଏପରିକି ଇଟା ତିଆରି କରିବାର କୌଶଳ ପୂର୍ବଭାରତରେ ଖ୍ରୀଷ୍ଟପର କାଳ ପର୍ଯ୍ୟନ୍ତ ଚାଲୁଥିବାର ପ୍ରତ୍ନତାତ୍ତ୍ୱିକ ପ୍ରମାଣମାନ ମଧ୍ୟ ମିଳେ । ଓଡ଼ିଶାର କେନ୍ଦୁଝର ଜିଲ୍ଲାସ୍ଥ ସୀତାବିଞ୍ଜି ଠାରେ (ଖ୍ରୀଷ୍ଟୀୟ ୩ୟ-୪ର୍ଥ ଶତାବ୍ଦୀ) ଏହିଭଳି କୁଣ୍ଡାମିଶା ଇଟାର ଧ୍ୱଂସାବଶେଷ ମିଳିଛି । ବର୍ତ୍ତମାନ ମଧ୍ୟ ଓଡ଼ିଶାର କେତେ ଅଞ୍ଚଳରେ କୁମ୍ଭାରମାନେ ମାଟିରେ କୁଣ୍ଡା ମିଶାଇ ମୃଣ୍ମୟପାତ୍ରମାନ ଗଢ଼ୁଛନ୍ତି । ଅଙ୍ଗାର ପରୀକ୍ଷା ଫଳରେ

କୋଲ୍‌ଡିହ୍ୱାର ଏହି କୃଷି-ସଂସ୍କୃତିକୁ ଖ୍ରୀ: ପୂ: ୬୫୭୦ରୁ ଖ୍ରୀ: ପୂ. ୪୫୩୦ ମଧ୍ୟରେ ସ୍ଥାପିତ କରାଯାଇପାରିଛି ।

ଏହି ସଂସ୍କୃତିର ଅବଶେଷମାନ ବିହାରର ଚିରାଣ୍ଡରେ, ଓଡ଼ିଶାର ବୁଢ଼ାବଲଙ୍ଗ ଉପତ୍ୟକାସ୍ଥ କୁଚେଇ ଓ କୁଲିଅଣାରେ, ଉତ୍ତରପ୍ରଦେଶର ସରାଚ-ନହର-ରାଇରେ ଏବଂ ଆସାମର ଗୌହାଟି ନିକଟସ୍ଥ ସାରୁତାରୁରେ ମଧ୍ୟ ବିଦ୍ୟମାନ । ଏହାର ବିସ୍ତୃତି ସୁଦୂର ବ୍ରହ୍ମଦେଶ ପର୍ଯ୍ୟନ୍ତ ମଧ୍ୟ ଅଛି ।

## ଦକ୍ଷିଣ ଭାରତ :

ଉତ୍ତରଭାରତରେ ନୂତନ ପ୍ରସ୍ତରଯୁଗୀୟ ସଂସ୍କୃତି ସାଧାରଣତଃ ଖ୍ରୀ: ପ. ୪ର୍ଥ ସହସ୍ରାବ୍ଦୀରେ ଏବଂ କୋଲ୍‌ଡିହ୍ୱା (ଉତ୍ତରପ୍ରଦେଶ) ଭଳି ସ୍ଥାନରେ ଖ୍ରୀ: ପୂ. ୭ମ ସହସ୍ରାବ୍ଦୀ ତଳେ ଗଢି ଉଠିଥିବା ବେଳେ, ଦକ୍ଷିଣ-ଭାରତରେ ଏହାର ଅଭ୍ୟୁଦୟ ଥିଲା ବହୁ ବିଳମ୍ବିତ । କର୍ଣ୍ଣାଟକର ଉଟ୍‌ନୁର୍, କୁପ୍‌ଗାଲ୍ ଓ ପାଲ୍ଲାଭୟ ଆଦି ସ୍ଥାନମାନଙ୍କରୁ ଯେଉଁ ନୂତନ ପ୍ରସ୍ତରଯୁଗୀୟ ସଂସ୍କୃତିର ଅବଶେଷ ମିଳିଛି, ତାହାକୁ ଅଙ୍ଗାର-ପରୀକ୍ଷା ଫଳରେ ପ୍ରତ୍ନତାତ୍ତ୍ୱିକମାନେ ଖ୍ରୀ: ପୂ. ୩ୟ ସହସ୍ରାବ୍ଦୀରେ ସ୍ଥାପିତ କରିଛନ୍ତି । ତାହାଠାରୁ ପୂର୍ବତନ ଅବଶେଷ ଏ ପର୍ଯ୍ୟନ୍ତ ଅନାବିଷ୍କୃତ । ବିଶ୍ୱରେ ସର୍ବତ୍ର ପ୍ରାୟ ଏକ ସ୍ୱାଭାବିକ କ୍ରମବିକାଶ କ୍ରମ-ଧାରାର ଅନୁବର୍ତ୍ତୀ ହୋଇ ମାନବ ତା'ର ଆଦିମ ବାରବୁଲା ଗୁହା-ଜୀବନରୁ କ୍ରମଶଃ ନୂତନ ପ୍ରସ୍ତରଯୁଗୀୟ ସଂସ୍କୃତି ସ୍ତରକୁ ଉନ୍ନୀତ ହୋଇଛି । ଏହାକୁ ଭିତ୍ତିକରି ବର୍ତ୍ତମାନ ନିଃସନ୍ଦେହରେ କୁହାଯାଇ ପାରେ ଯେ ଦକ୍ଷିଣ-ଭାରତରେ ଆଦିମାନବର ଆବିର୍ଭାବ ଉତ୍ତର ଭାରତ ଅପେକ୍ଷା ଯଥେଷ୍ଟ ବିଳମ୍ବିତ । ଏହି ସମୟର ବ୍ୟବଧାନ ପ୍ରାୟ ଅଢ଼େଇ ହଜାର ବର୍ଷ ପର୍ଯ୍ୟନ୍ତ ବ୍ୟାପ୍ତ ।

ଗତ ଶତାବ୍ଦୀରେ ଗବେଷକ ବ୍ରୁସ୍ କର୍ଣ୍ଣାଟକର ଉଟ୍‌ନୁରଠାରେ ଏକ ଆଦିମ ଗୋଗୋଷ୍ଠର ସନ୍ଧାନ ପାଇ ଏହା ନୂତନ ପ୍ରସ୍ତରଯୁଗୀୟ ସଂସ୍କୃତିର ଗୋଟିଏ ସ୍ଥଳୀ ହୋଇପାରେ ବୋଲି ଯେଉଁ କଳ୍ପନା କଳ୍ପନା କରିଥିଲେ ତାହା ଏବେ ଉକ୍ତ ସ୍ଥାନରେ ଓ ଉପରଲିଖିତ ଆଉ କେତେକ ସ୍ଥାନରେ ପ୍ରତ୍ନତାତ୍ତ୍ୱିକ ଭୂଖନନ ଫଳରେ ପ୍ରମାଣିତ ହୋଇ ପାରିଛି । ଏହାର କାଳକୁ ଖ୍ରୀ: ପୂ. ୩୦୦୦ରେ ସ୍ଥାପିତ କରାଯାଇ ପାରିଛି । ଏହି ଗାଈ-ଖୁଆଡ଼ମାନଙ୍କରେ ସର୍ବତ୍ର ମୋଟା ମୋଟା ତାଳଗଛର ଗଣ୍ଡିରେ ଦୁଇ ପ୍ରସ୍ଥରେ ବାଡ଼ ଦିଆଯାଇଛି । ଭିତର ପ୍ରତ୍ୟେକଟି ଗାଈମାନଙ୍କ ରହିବାଲାଗି ଉଦ୍ଦିଷ୍ଟ ଥିବାଭଳି ମନେହୁଏ । ଏଭଳି ଦୃଢ଼ ବାଡ ଦେବାର ଉଦ୍ଦେଶ୍ୟ ଥିଲା ଗୋଷ୍ଠ ମଧ୍ୟରେ

ଥିବା ଗାଈ ଗୋରୁମାନଙ୍କୁ ବନ୍ୟଜନ୍ତୁର ଆକ୍ରମଣରୁ ରକ୍ଷାକରିବା । କେତେକ ଗବେଷକ ମତ ଦିଅନ୍ତି ଯେ ଏଠାରେ ବଣୁଆ ଗାଈମାନଙ୍କୁ ରଖାଯାଇ ପୋଷା ମନା ଯାଉଥିଲା । ଆଉ କେତେକ ଗବେଷକ ମତ ଦିଅନ୍ତି ଯେ ଏଠାରେ ଗୃହପାଳିତ ଗାଈଗୋରୁମାନଙ୍କୁ ରଖାଯାଉଥିଲା । ବର୍ତ୍ତମାନ ମଧ୍ୟଭାରତର ଅନେକ ସ୍ଥାନରେ, ବିଶେଷକରି ଓଡ଼ିଶା ଓ ମଧ୍ୟପ୍ରଦେଶରେ ଲୋକମାନେ ଜଙ୍ଗଲ ମଧ୍ୟରେ କିମ୍ବା ବସ୍ତିର ସୀମାରେ ଗାଈଗୋରୁ ଏହିଭଳି ଖୁଆଡ଼ ମାନଙ୍କରେ ରଖୁଛନ୍ତି । ବଣୁଆହାତୀ ଧରିବା ପାଇଁ ଏବେ ମଧ୍ୟ ଯେଉଁ ଖେଦା ତିଆରି କରାଯାଉଛି, ସେଥିରେ ଏହିଭଳି ଦୁଇ ସ୍ତରରେ କାଠର ବାଡ ଦିଆଯାଉଛି । ଏହାସବୁ ଏହି ପ୍ରାଚୀନ ଗୋଗୋଷ୍ଠ ନିର୍ମାଣ ପଦ୍ଧତିର ଅନୁକରଣାତ୍ମକ ଅବଶେଷ ଭଳି ମନେହୁଏ ।

ଏହି ଗୋଗୋଷ୍ଠ ମାନଙ୍କରେ ଥିବା ବିରାଟ ଆକୃତି ବିଶିଷ୍ଟ ଭସ୍ମ-ସ୍ତୂପମାନ ଆଉ ଏକ ବିସ୍ମୟ । ଉଟ୍ନୁର୍ଠାରେ ଗୋଗୋଷ୍ଠର ଭୂମି ଉପରେ ବିସ୍ତୃତ ହୋଇଥିବା ଭସ୍ମ ଉପରେ ଗୋଷ୍ପଦର ଚିହ୍ନମାନ ଆବିଷ୍କୃତ । ପ୍ରଶ୍ନ ହୋଇପାରେ, ଏଭଳି ବିରାଟ ଭସ୍ମସ୍ତୂପମାନ କପରି ଭାବରେ ଗଢି ଉଠିଛି ? କେତେକ ତତ୍ତ୍ୱବିଦ୍ କୁହନ୍ତି ଯେ ବୋଧହୁଏ କୌଣସି ଉତ୍ସବ ଅବସରରେ ଏଠାରେ ସ୍ତୂପୀକୃତ ଗୋମୟ ଓ ଅନ୍ୟାନ୍ୟ ଦାହ୍ୟ ବସ୍ତୁମାନଙ୍କରେ ଅଗ୍ନି ସଂଯୋଗ କରାଯାଇ ଏକ ପବିତ୍ର ଉତ୍ସବୀୟ ଅଗ୍ନିର ସୃଷ୍ଟି କରାଯାଉଥିଲା । ବର୍ଷ ବର୍ଷ ଧରି ଏହିଭଳି କରିବା ଫଳରେ ବିରାଟ ଭସ୍ମସ୍ତୂପର ସୃଷ୍ଟି ସମ୍ଭବ ହୋଇପାରିଛି । ଆଉ କେତେକଙ୍କ ମତରେ ଗୋଟିଏ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ଗୋଷ୍ଠକୁ ସ୍ଥାନାନ୍ତରିତ କଲାବେଳେ ଏଭଳି ଅଗ୍ନି-ସଂଯୋଗ କରାଯାଉଥିଲା କିମ୍ବା ଗୋବତ୍ସାର ଜନ୍ମ ସମୟରେ ଅଥବା ଏମାନଙ୍କର ସନ୍ତାନ-ଜନ୍ମ ସମୟରେ ଏଭଳି ପବିତ୍ର-ଅଗ୍ନିର ସୃଷ୍ଟି କରାଯାଉଥିଲା; ତାହା ଅବଶ୍ୟ କହିହେବ ନାହିଁ । ସେ ଯାହା ହେଉ, ଗୋଷ୍ଠ-ସ୍ଥାନାନ୍ତର ସମୟରେ ଅଗ୍ନି-ସଂଯୋଗ କରିବାର ସମ୍ଭାବନା କମ୍ ବୋଲି ଆମର ମତ । କାରଣ ଏଭଳି ଅଗ୍ନି ସଂଯୋଗ ଥରେ ମାତ୍ର କରାଯାଇଥିବ । ତଦ୍ୱାରା କଦାପି ଏତେ ବିରାଟ ଆକୃତିବିଶିଷ୍ଟ ଭସ୍ମସ୍ତୂପର ସୃଷ୍ଟି ଅସମ୍ଭବ । ଅତଏବ, ଏହାର ସୃଷ୍ଟି ସହିତ ବର୍ଷ ବର୍ଷ ଧରି ବହୁବାର କୌଣସି ଉତ୍ସବ ପାଳନ କର୍ମ ସଂଶ୍ଳିଷ୍ଟ ଥିବାର ସମ୍ଭାବନା ଅଧିକ ଯୁକ୍ତିଯୁକ୍ତ ଭଳି ମନେହୁଏ ।

ଏଠାରୁ ମିଳିଥିବା ଅବଶେଷମାନଙ୍କରେ ପ୍ରସ୍ତର ନିର୍ମିତ କୁରାଢ଼ି, ଛୁରୀ ଓ ମୃଣ୍ମୟ ପାତ୍ରମାନ ଅନ୍ତର୍ଭୁକ୍ତ । ହାତ-ତିଆରି ମୃଣ୍ମୟ ପାତ୍ର ଗୁଡ଼ିକର ନିର୍ମାଣ-କୌଶଳ ଅତି ଅପରିପକ୍ୱ । କୁମ୍ଭାରଚକ ଏ ପର୍ଯ୍ୟନ୍ତ ଅନାବିଷ୍କୃତ । କାରଣ ତାହା ଥିଲେ, ପାତ୍ର ଗୁଡ଼ିକର ମସୃଣତା ଆଣି ହୋଇ ପାରିଥାନ୍ତା । ଏ ପର୍ଯ୍ୟନ୍ତ ଯେଉଁ ଅବଶେଷମାନ

ମିଳନ୍ତି, ତହିଁରୁ ଏମାନଙ୍କର ଗୃହ-ନିର୍ମାଣ ଶୈଳୀ ବିଷୟରେ କିଛି ଧାରଣା ଅବଶ୍ୟ କରି ହେଉନାହିଁ । ଏମାନେ ବହୁଳ ଭାବରେ କୃଷି ଉପରେ ନିର୍ଭର କରୁଥିବାର ପ୍ରମାଣ ମଧ୍ୟ ମିଳୁନାହିଁ । ଅତଏବ ଏମାନେ ବାରବୁଲା ଅବସ୍ଥା ଓ ସ୍ଥାୟୀ ଭାବରେ ବସତି-ସ୍ଥାପନ କରିବା ଅବସ୍ଥାର ଏକ ମଧ୍ୟବର୍ତ୍ତୀ ଅବସ୍ଥାରେ ଥିବାର ସମ୍ଭାବନା ଖୁବ୍ ଅଧିକ । ଏମାନେ କୃଷିଜାତ ଦ୍ରବ୍ୟ ଅପେକ୍ଷା ଗୋଦୁଗ୍ଧ, ଗୋମାଂସ, ଅନ୍ୟ ମାଂସ, ବନ୍ୟ-ଫଳମୂଳ ଆଦି ଉପରେ ଜୀବନ-ଧାରଣ ପାଇଁ ବିଶେଷ ନିର୍ଭରଶୀଳ ଥିବାର ମନେହୁଏ । ଅତଏବ, ଏହାକୁ କୃଷି-ସଂସ୍କୃତିର ଏକ ଭ୍ରୂଣାତ୍ମକ ଅବସ୍ଥା କହିଲେ ସତ୍ୟର ଅପଲାପ ହେବନାହିଁ ।

ଦାକ୍ଷିଣାତ୍ୟରେ ଗଢ଼ିଉଠିଥିବା ଭସ୍ମସ୍ତୂପ ସହିତ ସଂଶ୍ଳିଷ୍ଟ ଏହି ଆଦ୍ୟ କୃଷି-ସଂସ୍କୃତି ସମ୍ପର୍କରେ ଗବେଷଣା ଏ ପର୍ଯ୍ୟନ୍ତ ମଧ୍ୟ ବହୁମାତ୍ରାରେ ଅସମ୍ପୂର୍ଣ୍ଣ । ଏହି ସଂସ୍କୃତି କଦାପି କେବଳ କର୍ଣ୍ଣାଟକର କେତୋଟି ଅଞ୍ଚଳରେ ବିକ୍ଷିପ୍ତ ଭାବରେ ସୀମାବଦ୍ଧ ହୋଇ ରହି ନଥିବ । ଭ୍ରମଣଶୀଳ ଏହି ଗୋଷ୍ଠୀ ନିଶ୍ଚିତ ଭାବରେ ସେମାନଙ୍କ ସଂସ୍କୃତିକୁ ଅନ୍ୟ ଅଞ୍ଚଳମାନଙ୍କୁ ନେଇଥିବେ । ଓଡ଼ିଶା ଓ ମଧ୍ୟପ୍ରଦେଶର ବିଭିନ୍ନ ଅଞ୍ଚଳକୁ ଏହି ସଂସ୍କୃତି ନିଶ୍ଚିତ ଭାବରେ ପରିପ୍ରସାରିତ ହୋଇଥିବ । କିନ୍ତୁ ଦୁର୍ଭାଗ୍ୟବଶତଃ ଅନ୍ୟ କୌଣସିଠାରେ ଏହି ସଂସ୍କୃତିର ଅବଶେଷ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇପାରି ନାହିଁ । ଭବିଷ୍ୟତରେ ପ୍ରତ୍ନତାତ୍ତ୍ୱିକ ଗବେଷଣା ଏ ଦିଗରେ ଯଥେଷ୍ଟ ଆଲୋକପାତ କରିବ ବୋଲି ଆଶା କରାଯାଏ ।

## କୃଷି-ସଂସ୍କୃତିର ଫଳଶ୍ରୁତି :

କୃଷି-ସଂସ୍କୃତିର ଅଭ୍ୟୁଦୟ ଫଳରେ ମାନବଜାତିର ବ୍ୟକ୍ତିଗତ, ପାରିବାରିକ ତଥା ସାମାଜିକ କ୍ଷେତ୍ରରେ ବିରାଟ ପରିବର୍ତ୍ତନମାନ ଦେଖାଦେଲା । ଧର୍ମ ସମ୍ପର୍କରେ ମଧ୍ୟ ନୂତନ ଭାବଧାରାର ଉଦୟ ହେଲା । ପ୍ରତ୍ନତାତ୍ତ୍ୱିକ ଆଲ୍‌ଚିନ୍ ଦମ୍ପତି ଠିକ୍ ଯଥାର୍ଥରେ କହିଛନ୍ତି : "When man first started to cultivate crops and to herd his own domesticated animals an increased interest in fertility and his magical means of promoting it, appear to have become an universal aspect of culture" ※

※ Bridget and Raymond Allchin ; The Rise of Civilization in India and Pakistan p. 99,

ଭାରତରେ ମଧ୍ୟ ଠିକ୍ ଅନୁରୂପ ଘଟିଥିଲା । ଏଠାରେ ମଧ୍ୟ ଲୋକେ ପ୍ରଜନନ-ସଚେତନ ହୋଇ ଉଠିଥିଲେ ଏବଂ ସେହି ଶକ୍ତିର ଅଭିବୃଦ୍ଧି ଲାଗି ମାନ୍ତ୍ରିକ ସହାୟତା ଲୋଡ଼ୁଥିଲେ । ଏହି ପ୍ରଜନନ-ସଚେତନତା ଏ ପର୍ଯ୍ୟନ୍ତ ମଧ୍ୟ ଆମ ସମାଜରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରି ବସିଛି । ବର୍ତ୍ତମାନ ମଧ୍ୟ ଯଦି ନାରୀ କମ୍ବା ପୁରୁଷଙ୍କ ପାଖରେ ପ୍ରଜନନ-କ୍ଷମତା ନାହିଁ, ତେବେ ସେ ହେଉଛନ୍ତି ସମାଜରେ ନିନ୍ଦିତ । ସେଥିପାଇଁ ପରି ଆମେ ବେଦର ଛନ୍ଦେ ଛନ୍ଦେ ଦେଖିବାକୁ ପାଇଥାଉଁ ଅଧିକ ସନ୍ତାନ ଉତ୍ପାଦନ ଲାଗି, ଅଧିକ ଶସ୍ୟ ଉତ୍ପାଦନ ଲାଗି ଏବଂ ଗୋସଂପଦର ଅଭିବୃଦ୍ଧି ଲାଗି ଆର୍ଯ୍ୟଋଷିଙ୍କର ଦେବତାଙ୍କ ପାଖରେ ଆକୁଳ ପ୍ରାର୍ଥନା ।

କୃଷି-ସଂସ୍କୃତିର ଫଳଶ୍ରୁତି କଭଳି ବ୍ୟାପକ ହୋଇଥିଲା, ତାହା ନିମ୍ନରେ ସୂଚିତ :

କ—ପୂର୍ବ କଥିତମତେ ଏହା ଲୋକମାନଙ୍କୁ ପ୍ରଜନନ-ସଚେତନ କରିଦେଲା; ଏବଂ ତତ୍‌ଫଳରେ ସେମାନେ ମାନ୍ତ୍ରିକ ଶକ୍ତିର ସହାୟତା ନେଇ ଏହି କ୍ଷମତାର ଅଭିବୃଦ୍ଧି ଲାଗି ଉଦ୍ୟମଶୀଳ ହୋଇ ଉଠିଲେ ।

ଖ—ଧର୍ମ-ଧାରଣାର ଆମୂଳଚୂଳ ପରିବର୍ତ୍ତନ ଆସିଯାଇ ମୃତ୍ୟୁ ପରେ ପରଲୋକ, ପୁନର୍ଜନ୍ମ ଓ ଆତ୍ମାର ଗୋଟିଏ ଘଟରୁ ଅନ୍ୟ ଘଟକୁ ଗତି ସମ୍ପର୍କୀୟ ଭ୍ରୂଣାତ୍ମକ ଧାରଣା-ମାନ ଆସିଲା; ଯାହାର ଭିତ୍ତିଭୂମି ପରେ ବେଦ, ଉପନିଷଦ ଆଦିରେ ହୋଇ ପାରିଥିଲା । ଆଦିମ ଅସଭ୍ୟ ମାନବ ଏହା ଫଳରେ ଜଣେ ଦାର୍ଶନିକ ଭାବରେ ରୂପାନ୍ତରିତ ହୋଇଗଲା ।

ଗ—ଶସ୍ୟ ଉତ୍ପାଦନର ବିଭିନ୍ନ ପର୍ଯ୍ୟାୟ ସହିତ ସଂଶ୍ଳିଷ୍ଟ ଥାଇ ନାନା ପ୍ରକାର ପର୍ବ-ପର୍ବାଣିର ଅଭ୍ୟୁଦୟ ହେଲା । ଏହାର ପ୍ରଭାବ ଏ ପର୍ଯ୍ୟନ୍ତ ମଧ୍ୟ ଆମ ଦେଶରେ ବିଦ୍ୟମାନ । ସାରା ଦେଶରେ ପ୍ରାୟ ସବୁ ଗୋଷ୍ଠୀର ଲୋକେ କୃଷିକର୍ମ ସହିତ ସଂଶ୍ଳିଷ୍ଟ ବିଭିନ୍ନ ପର୍ବପର୍ବାଣି ଓ ଉତ୍ସବ ମାନୁଛନ୍ତି ।

ଘ—ମଣିଷର ଜନ୍ମ ଓ ମୃତ୍ୟୁ ଉପଲକ୍ଷେ ବିଭିନ୍ନ ଉତ୍ସବମାନ ପାଳନ କରାଗଲା, ଯେଉଁ ପରଂପରା ବି ଏବେ ମଧ୍ୟ ଅନୁସୃତ ।

ଙ—ବାରବୁଲା ଶିକାରୀ ଜୀବନରେ ମଣିଷ ପଶୁମାନଙ୍କ ଭଳି ସାମୟିକ ଆହାର ଖୋଜୁଥିଲା । ପଶୁମାଂସ ଯେତେବେଳେ ସହଜଲଭ୍ୟ ଥିବାରୁ ସେଥିପାଇଁ ତାକୁ ବିଶେଷ ପରିଶ୍ରମ କରିବାକୁ ପଡୁନଥିଲା । ଏହା ଫଳରେ ତା'ଠାରେ ଆଳସ୍ୟ-ଭାବ ଦେଖା-

ଦେଉଥିଲା । କିନ୍ତୁ କୃଷି-କର୍ମରେ ତାକୁ ବହୁ ସମୟ କାର୍ଯ୍ୟବ୍ୟସ୍ତ ରହିବାକୁ ପଡ଼ିବାରୁ ସେ ଅଧିକତର କର୍ମତତ୍ପର ହୋଇ ଉଠିଲା ଏବଂ ତାର ଗୁହା-ଜୀବନର ଜାନ୍ତବ ଆଳସ୍ୟ ଦୂରୀଭୂତ ହୋଇଗଲା ।

ଚ—ସ୍ଥାୟୀ ଭାବରେ ଗୋଟିଏ ସ୍ଥାନରେ ରହିବା ଫଳରେ ତା'ର ସେହି ସ୍ଥାନ ପ୍ରତି, ପରିବାର ପ୍ରତି ଓ ଗୋଷ୍ଠୀ ପ୍ରତି ଅଧିକତର ମମତାବୋଧ ଆସିଗଲା । ପାରିବାରିକ ଓ ସାମାଜିକ ବନ୍ଧନ ଏହା ଫଳରେ ଦୃଢ଼ୀଭୂତ ହେଲା । ସ୍ଥାନ ପ୍ରତି ଥିବା ଏହି ମମତା-ବୋଧର ଗଛରେ ଯେତେବେଳେ ବହୁ ବର୍ଷ ପରେ ଫୁଲ ଫଳ ଧରିଲା, ଆମେ ସେତେବେଳେ ତାକୁ କହିଲୁ ଦେଶାତ୍ମବୋଧ ବା ଜାତୀୟତାବୋଧ ।

ଛ—କୃଷିକର୍ମ ଓ ପଶୁପାଳନକୁ ନେଇ ବହୁ ଦେବତାମାନଙ୍କର ଆବିର୍ଭାବ ହେଲା । କାଳକ୍ରମେ ଏହି ଦେବତାମାନେ ଧୀରେ ଧୀରେ ଆର୍ଯ୍ୟ-ସଂସ୍କୃତିର ମହାନ୍ ସ୍ରୋତରେ ମିଶିଗଲେ । ଏହି ସ୍ରୋତରେ ମିଶିପାରି ନଥିବା ଅନେକ ଦେବତା ଏ ପର୍ଯ୍ୟନ୍ତ ମଧ୍ୟ ଆଦିବାସୀମାନଙ୍କ ଦ୍ୱାରା ପୂଜିତ ହେଉଛନ୍ତି । ବାସ୍ତବିକ, ଆମର ବହୁ ଦେବଦେବୀ-ମାନଙ୍କର ଉଦ୍ଭବର ଇତିବୃତ୍ତି ଆମେ ଯଦି ଅନୁସଂଧାନ କରିବା, ତେବେ ଜାଣିପାରିବା ଯେ ସେମାନଙ୍କ ମଧ୍ୟରୁ ଅନେକ ହେଉଛନ୍ତି ଏହାର ପ୍ରାଚୀନ ଦେବ ଗୋଷ୍ଠୀର ଅନ୍ତର୍ଭୁକ୍ତ ।

ଜ—ଏହି ସଂସ୍କୃତିର ଅଧିକାରୀମାନେ କେତେକ ସ୍ଥାନରେ ବୃଷ୍ଟି-ଜଳ ଓ ଝରଣା-ଜଳକୁ ଆବଦ୍ଧ କରି ରଖି ସେହି ଜଳକୁ ଶସ୍ୟକ୍ଷେତ୍ରରେ ଜଳସେଚନ ଲାଗି ବ୍ୟବହାର କରୁଥିଲେ । କେଉଁ ଆଦିମାନବଙ୍କ ମସ୍ତିଷ୍କରୁ ଏ କୌଶଳଟିର ଉଦ୍ଭବ ହୋଇଥିଲା, ତାହା ଅବଶ୍ୟ କହି ହେବନାହିଁ । କିନ୍ତୁ ସେ ସମୟର କାରିଗରୀ କୌଶଳ ସମ୍ପର୍କୀୟ ସ୍ୱଳ୍ପ ଜ୍ଞାନ କଥା ବିଚାରକଲେ ଆମେ ନିଶ୍ଚିତ ଭାବରେ ବୁଝି ପାରିବା ଯେ ସେ ଜଣେ ଥିଲେ ବିଶିଷ୍ଟ ସମ୍ମାନାସ୍ପଦ ପୃଥିବୀପ୍ରସିଦ୍ଧ ଯନ୍ତ୍ରୀ । ଏହା ଫଳରେ ଆଦିମାନବ ପ୍ରକୃତିକୁ ନିୟନ୍ତ୍ରଣ କରି ତାକୁ ନିଜ ମଙ୍ଗଳରେ ବିନିଯୋଗ କରିବାର କ୍ଷମତା ହାସଲ କଲା । ଏଥିରେ ତା'ର ଆତ୍ମ-ବିଶ୍ୱାସ ବଢ଼ିଗଲା ।

ଝ—କୃଷି-କର୍ମ ଲାଗି ପରିବାରର ବହୁ ସଭ୍ୟଙ୍କର ଆବଶ୍ୟକତା ଥିବାରୁ, ପରିବାରର ଲୋକସଂଖ୍ୟା ବଢ଼ିବାକୁ ଲାଗିଲା ଏବଂ ଏକାନ୍ନବର୍ତ୍ତୀ ବୃହତ୍ ପରିବାରର ଆବଶ୍ୟକତା ଅନୁଭୂତ ହେଲା । ବାସ୍ତବିକ ବହୁବର୍ଷ ଧରି ପରିବାରର ଏକାନ୍ନବର୍ତ୍ତିତା ଭାରତୀୟ ସଂସ୍କୃତିର ଏକ ବିଶିଷ୍ଟ ବିଭବ ଭାବେ ଗଣ୍ୟ ହୋଇ ଆସୁଛି ।

ଞ—କୃଷି-କର୍ମରେ ବ୍ୟବହୃତ ବିଭିନ୍ନ ଯନ୍ତ୍ରପାତିର ନିର୍ମାଣ ଲାଗି ବିଭିନ୍ନ କାରିଗରୀ

କୌଶଳ ଉଦ୍ଭାବିତ ହେଲା । ଏହା ଫଳରେ ପ୍ରସ୍ତର ଓ ପରେ ପରେ ଧାତୁନିର୍ମିତ ଯନ୍ତ୍ରପାତି ଗୁଡ଼ିକର ବହୁଳ ନିର୍ମାଣ ଓ ପ୍ରସାର ସମ୍ଭବ ହୋଇ ପାରିଲା ।

୨—ସ୍ଥାୟୀ ଭାବରେ ବସତି ସ୍ଥାପନ କରିବା ଫଳରେ ଏହି ଲୋକମାନଙ୍କର ଘର-କରଣା ଜିନିଷମାନଙ୍କର ଆବଶ୍ୟକତା ବୃଦ୍ଧି ପାଇବାକୁ ଲାଗିଲା । ଏହି ଘରକରଣା ଜିନିଷମାନଙ୍କ ମଧ୍ୟରୁ ମୃଣ୍ମୟପାତ୍ର ହେଉଛି ସର୍ବପ୍ରଧାନ । ବିଭିନ୍ନ ମୃଣ୍ମୟପାତ୍ର ନିର୍ମାଣ କରିବା ଏବଂ ସେଗୁଡ଼ିକୁ ବିଭିନ୍ନ ପ୍ରକାର ଚିତ୍ରିତ କରିବାର କଳା-କୌଶଳ ବିକଶିତ ହେବା ସମ୍ଭବ ହୋଇପାରିଲା ।

୦—ମୂଳତଃ ଏମାନଙ୍କର ସାମାଜିକ, ଧାର୍ମିକ ଓ ଅର୍ଥନୈତିକ କ୍ଷେତ୍ରକୁ ସମ୍ପୂର୍ଣ୍ଣ ଭାବରେ ଏହି କୃଷି-ସଂସ୍କୃତି ଆଚ୍ଛନ୍ନ କରି ରଖିଥିଲା । ଏହାର ପ୍ରଭାବ ଏତେ ଶକ୍ତିଶାଳୀ ଓ ସୁଦୂରପ୍ରସାରୀ ଯେ ବହୁ ସହସ୍ର ବର୍ଷ ପରେ ମଧ୍ୟ ଆମ୍ଭେମାନେ ସେ ପ୍ରଭାବରୁ ମୁକ୍ତି ପାଉନାହୁଁ ।

ଉପରୋକ୍ତ ଆଲୋଚନାମାନଙ୍କରୁ ଜଣାଯିବ ଯେ ଆମ ଦେଶରେ ଆଦିକୃଷି-ସଂସ୍କୃତିର ଉଦ୍ଭବ ହୋଇଥିଲା ବେଲୁଚିସ୍ଥାନ ଓ ସିନ୍ଧୁନଦୀର ପଶ୍ଚିମାଞ୍ଚଳରେ (ବର୍ତ୍ତମାନ ପାକିସ୍ଥାନରେ) । ପରେ ପରେ ଏହା ଦେଶର ଅନ୍ୟ ଆଡ଼କୁ ବ୍ୟାପ୍ତ ହୋଇଥିଲା । କିନ୍ତୁ ଦକ୍ଷିଣ ଭାରତରେ ପ୍ରାୟ ଆହୁରି ଦୁଇହଜାର ବର୍ଷ ପରେ ଏକ ଭିନ୍ନରୂପ ସହିତ ସଶ୍ଳିଷ୍ଟ କୃଷି-ସଂସ୍କୃତିର ଆବିର୍ଭାବ ହୋଇଥିଲା, ଯାହା ବିଷୟରେ ଆମର ଜ୍ଞାନ ଏ ପର୍ଯ୍ୟନ୍ତ ମଧ୍ୟ ଖୁବ୍ ସୀମିତ । ଏହି ସଂସ୍କୃତିର ସୁଦୂର-ପ୍ରସାରୀ ପ୍ରଭାବ ଏବେ ମଧ୍ୟ ଭାରତୀୟ ଅର୍ଥନୈତିକ, ସାମାଜିକ ଓ ଧାର୍ମିକ ଜୀବନ-ଧାରାକୁ ଆଚ୍ଛନ୍ନ କରି ରଖିଛି ।

## ସହାୟକ ଗ୍ରନ୍ଥସୂଚୀ


1. ଋଗ୍‌ବେଦ ।
2. ଯଜୁର୍ବେଦ ।
3. ଅଥର୍ବବେଦ ।
4. S. S. Sarkar : The Aboriginal Races of India (1954)
5. Bridget Allchin and Raymond Allchin : The Birth of Indian Civilization. (1968).

6. Bridget Allchin and Raymond Allchin : The Rise of Civilization in India and Pakisthan (1983).

7. R. C. Majumdar : Ancient India (1952).

8. S. Piggot : Prehistoric India (1950).

9. D. H. Gordon : The Prehistoric Background of Indian Culture (1958).

10. A.L. Basham : The Wonder that was India (1985 Reprint).

11. J G. Shaffer . Prehistoric Baluchisthan (Delhi, 1978).

12. F. R. Allchin and N. Hammond (Ed) : Archaeology of Afganisthan (1978).

13. Madhu Bala : A Survey of Protohistoric Investigation in Jammu and Kashmir . The Anthropologist, 21, 1975.

14. F.R. Allchin : Neolithic Cattle-keepers of South India (1963).

15. K. Paddayya : Investigations into the Neolithic Culture of the Shorapur Doab in South India (1973).

16. G. Childe : New Light on the Most Ancient East, 4th Edn, (1952).

17. H. T. Lambrick : History of Sind, vol. I (1964).

18. History and Culture of the Indian People vol. I (1950)

19. The Cultural Heritage of India vol, I (1982. Reprint.)

20. N. K. Sahu, P. K. Mishra and J.K. Sahu, History of Orissa. (1981)

21. ଅମଲାନନ୍ଦ ଘୋଷ (କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ) : ଭାରତୀୟ ପ୍ରତ୍ନତତ୍ତ୍ୱ ।

22. D. D. Kosambi : The Culture and Civilization of Ancient India in Historical Line (1977).



## ତୃତୀୟ ପରିଚ୍ଛେଦ

# ସିନ୍ଧୁ ସଂସ୍କୃତି ଆର୍ଯ୍ୟ ନା ଦ୍ରାବିଡ଼ ?

ଗୋଟିଏ ପୁରୁଷ ତଳେ ଐତିହାସିକ ଓ ପ୍ରାଚ୍ୟତତ୍ତ୍ୱବିଦ୍‌ମାନଙ୍କର ଧାରଣା ଥିଲା ଯେ ପ୍ରାଚୀନ ବୈଦିକ ଆର୍ଯ୍ୟମାନେ ସାଧାରଣତଃ କୃଷିଜୀବୀ ଥିଲେ ଏବଂ ଗ୍ରାମ୍ୟ ଜୀବନ ଯାପନ କରୁଥିଲେ । ନଗର ଜୀବନ ସେମାନଙ୍କ ନିକଟରେ ଅଜ୍ଞାତ ଥିଲା । କାଳକ୍ରମେ ଷୋହଳଟି 'ମହାଜନ ପଦ'ର ସୃଷ୍ଟି ହେଲା ଏବଂ ସେହି ମହାଜନପଦଗୁଡ଼ିକର ଶାସନର କେନ୍ଦ୍ରବିନ୍ଦୁକୁ ନେଇ ନଗରମାନ ଗଢ଼ି ଉଠିଲା । ସେମାନଙ୍କ ମତରେ ଇତିହାସଭିତ୍ତିକ ଆର୍ଯ୍ୟମାନଙ୍କର ସର୍ବବୃହତ୍ତ୍ ନଗର ହେଉଛି ପାଟଳୀପୁତ୍ର (ଆଧୁନିକ ପାଟଣା) । କିନ୍ତୁ ୧୯୨୫ ମସିହାରେ ପ୍ରତ୍ନତତ୍ତ୍ୱବିଦ୍‌ମାନେ ଭୂ-ଖନନ ଫଳରେ 'ମହେଞ୍ଜୋଦାରୋ' ଓ 'ହରପ୍ପା' ଠାରେ ଯେଉଁ ଦୁଇଟି ବୃହତ୍ତ୍ ନଗରର ଧ୍ୱଂସାବଶେଷ ଆବିଷ୍କାର କଲେ, ଏହା ଫଳରେ ଉପର୍ଯ୍ୟୁକ୍ତ ଧାରଣା ପୁରାପୁରି ବଦଳିଗଲା । ଉଭୟ ନଗରର ଧ୍ୱଂସାବଶେଷ ସିନ୍ଧୁ ଅବବାହିକା ଅଞ୍ଚଳରେ ଅବସ୍ଥିତ । ମହେଞ୍ଜୋଦାରୋ ସିନ୍ଧୁ ପ୍ରଦେଶସ୍ଥ (ବର୍ତ୍ତମାନ ପାକିସ୍ଥାନରେ) ସିନ୍ଧୁନଦୀର ଦକ୍ଷିଣରେ ଅବସ୍ଥିତ । ସେହିପରି ହର୍‌ପ୍ପା ସିନ୍ଧୁନଦୀର ଉପନଦୀ ରାଭି ନଦୀର ବାମ ତୀରରେ ପଶ୍ଚିମ ପଞ୍ଜାବରେ (ବର୍ତ୍ତମାନ ପାକିସ୍ଥାନରେ) ଅବସ୍ଥିତ । ୧୯୪୭ ମସିହାରେ ଭାରତ ଓ ପାକିସ୍ଥାନ ପୃଥକ୍ ପୃଥକ୍ ହୋଇଯିବା ପରେ ମଧ୍ୟ ସାର୍ ମର୍ଟିମର ହୁଇଲର ଏହା ଉପରେ ଆହୁ କିଛି ଗବେଷଣା କରିଥିଲେ । ଏହା ଛଡ଼ା ନିକଟରେ ପେନ୍‌ସିଲ୍‌ଭାନିଆ ବିଶ୍ୱବିଦ୍ୟାଳୟର ଡ଼କ୍ଟର ଜର୍ଜ ଡ଼େଲସ୍ ଏହା ଉପରେ ଅଧିକତର ଗବେଷଣା କରିଛନ୍ତି । ଏ ସଂସ୍କୃତିର ଧ୍ୱଂସାବଶେଷ ଭାରତ ଓ ପାକିସ୍ଥାନର ୭୪ ଗୋଟି ସ୍ଥାନରେ ଦେଖିବାକୁ ମିଳୁଥିଲେ ହେଁ ସର୍ବବୃହତ୍ତ୍ ନଗର ଦୁଇଟି ହେଉଛି ମହେଞ୍ଜୋଦାରୋ ଓ ହରପ୍ପା । ସେଇଭଳି ଗୁଜରାଟର କାମ୍ବେ ଉପସାଗର ଅଞ୍ଚଳସ୍ଥ ଲୋଥାଲ୍‌ଠାରେ ମଧ୍ୟ ଏହି ଜାତୀୟ ଧ୍ୱଂସାବଶେଷ ମିଳିଛି । ଏହାର ବିଶେଷତ୍ୱ ହେଉଛି ଗୋଟିଏ ପ୍ରାଚୀନ ବନ୍ଦରର ଧ୍ୱଂସାବଶେଷର ଆବିଷ୍କାର । ଗୁଜୁରାଟରେ ହରପ୍ପୀୟ ସଂସ୍କୃତିର ନୂଆ ନୂଆ ଧ୍ୱଂସାବଶେଷମାନ ମଧ୍ୟ ମିଳିବାରେ ଲାଗିଛି । ନିକଟରେ (Times of India, 15. 1. .88) ରାଜକୋଟ୍ ଜିଲ୍ଲାର କୋଣ୍ଡାସି ଗ୍ରାମରେ ୧୦୦ ମିଟର ଦୀର୍ଘ ଓ ୯୦ ମିଟର ପ୍ରସ୍ଥ ବିଶିଷ୍ଟ ହରପ୍ପୀୟ କାଳୀନ ଗୋଟିଏ ଦୁର୍ଗର ଧ୍ୱଂସାବଶେଷ ମିଳିଛି । ରାଜସ୍ଥାନର ଗଙ୍ଗାନଗର ଜିଲ୍ଲାସ୍ଥ କାଲିବଙ୍ଗାରେ ମଧ୍ୟ ଏଭଳି ନଗର-ସଭ୍ୟତାର ଧ୍ୱଂସାବଶେଷ ମିଳିଛି । ଏ ଧ୍ୱଂସାବଶେଷର ବିଶେଷତ୍ୱ ହେଉଛି ଏହି ଯେ ଏଥିରେ ହରପ୍ପାର ପୂର୍ବକାଳୀନ ସଭ୍ୟତାର ଚିହ୍ନ ମଧ୍ୟ ବିଦ୍ୟମାନ ।

ରେଡିଓ-କାର୍ବନ ପରୀକ୍ଷା ଫଳରେ ଏହି ନଗର ସଭ୍ୟତାକୁ ହାରପ୍ପାର ଖ୍ରୀ. ପୂ. ୨୫୦୦ ବର୍ଷ ତଳର ବୋଲି ନିର୍ଦ୍ଧାରିତ କରାଯାଇଛି । (୧) ଏ ପ୍ରକାର ସଭ୍ୟତାର ସ୍ତରକୁ ପହଞ୍ଚିବା ଲାଗି ପୁଣି ସଂପୃକ୍ତ ଜାତିଟିକୁ କେତେ ଶହ ବା କେତେ ହଜାର ବର୍ଷ ଲାଗିଥିବ, ସେକଥା ବିଚାର କଲେ ବାସ୍ତବିକ ବିସ୍ମୟାଭିଭୂତ ହେବାକୁ ପଡ଼େ ।

ସଂକ୍ଷିପ୍ତ ଆଲୋଚନାକୁ ଏକ ସୀମିତ ଗଣ୍ଡି ଭିତରେ ରଖାଯିବାର ଅଭିପ୍ରାୟ ରହିଅଛି । ଏହା ହେଉଛି ସିନ୍ଧୁ-ସଂସ୍କୃତି ଏକ ସ୍ୱତନ୍ତ୍ର ସଂସ୍କୃତି ନା ଆର୍ଯ୍ୟ ସଂସ୍କୃତିର ଅଂଶ ବିଶେଷ ? ଯଦି ଏହା ଆର୍ଯ୍ୟ-ସଂସ୍କୃତିର ଅଂଶବିଶେଷ, ତେବେ ଆର୍ଯ୍ୟ-ସଂସ୍କୃତିର କେଉଁ କେଉଁ ବିଭବ-ଗୁଡ଼ିକ ଏଥିରେ ପରିଦୃଶ୍ୟମାନ ? ଏହା ଆର୍ଯ୍ୟ-ସଂସ୍କୃତିର ପୂର୍ବବର୍ତ୍ତୀ ନା ସମସାମୟିକ ? ଏ ସମସ୍ତ ବିଷୟମାନଙ୍କର ବିସ୍ତୃତ କରିବାର ଅବକାଶ ଏଠାରେ ରହିଅଛି । ଆଉ ମଧ୍ୟ ଏ କଥା ପରୀକ୍ଷା କରିବାକୁ ହେବ ଯେ ଆମେ ସାଧାରଣରେ ବୁଝୁଥିବା ଭଳି ଏହା ଦ୍ରାବିଡ଼-ସଭ୍ୟତାର ଜନକ କି ନୁହେଁ । ପୁଣି ଦକ୍ଷିଣ ଭାରତରେ ତେଲୁଗୁ, ତାମିଲ, ମାଲୟାଲମ୍ ଆଦି ଯେଉଁ ଭାଷାଭାଷୀମାନେ ଅଛନ୍ତି, ସେମାନଙ୍କର ସଂସ୍କୃତି, ସିନ୍ଧୁ-ସଂସ୍କୃତିଭିତ୍ତିକ କି ନୁହେଁ । ଉପରୋକ୍ତ ପରିପ୍ରେକ୍ଷୀରେ ଆଲୋଚନାଟି ତେଣୁ ନିଶ୍ଚିତ ଭାବରେ କୌତୂହଳୋଦ୍ଦୀପକ ଅଟେ ।

ମହେଞ୍ଜୋଦାରୋ ଓ ହରପ୍ପାଠାରେ ଯେଉଁ ନଗର ସଭ୍ୟତାର ଧ୍ୱଂସାବଶେଷ ବାହାରିଥିଲା ତାକୁ ଭିତ୍ତିକରି ବିଦ୍ୱାନ୍‌ମାନେ ଆଗେ ମତ ଦେଉଥିଲେ ଯେ ପଞ୍ଜାବର ସିନ୍ଧୁ ଓ ତାହାର ଉପନଦୀ ରାଭି ନଦୀର ଉପତ୍ୟକାରେ ଏକ ନଗର-ସଭ୍ୟତା ଗଢ଼ି ଉଠିଥିଲା ଏବଂ ଏହା ଆର୍ଯ୍ୟମାନଙ୍କର ଗ୍ରାମଭିତ୍ତିକ ତଥା କୃଷି-ଭିତ୍ତିକ ସଭ୍ୟତାଠାରୁ ଥିଲା ପୃଥକ୍ ଏବଂ ଉନ୍ନତତର ମଧ୍ୟ । ଆର୍ଯ୍ୟମାନେ ମଧ୍ୟ-ଏସିଆରୁ ଭାରତଭୂମିରେ ପଦାର୍ପଣ କରିବା ପରେ ଏମାନଙ୍କ ସହିତ ସଂଘର୍ଷରେ ସମ୍ମୁଖୀନ ହୋଇଥିଲେ । ଏ ସଂଘର୍ଷର ଫଳଶ୍ରୁତି ସ୍ୱରୂପ ସିନ୍ଧୁ ସଭ୍ୟତାର ଆର୍ଯ୍ୟେତର ଲୋକମାନେ ଆର୍ଯ୍ୟମାନଙ୍କ ଦ୍ୱାରା ପରାଭୂତ ହୋଇ କ୍ରମେ କ୍ରମେ ଦକ୍ଷିଣକୁ ଅଗ୍ରସର ହେଲେ । ଆର୍ଯ୍ୟମାନେ ଏ ନଗର-ସଭ୍ୟତାକୁ ଧ୍ୱସ୍ତ କରି ସପ୍ତସିନ୍ଧୁରେ (ସାତ ନଦୀର ଦେଶ) ସେମାନଙ୍କର ସଭ୍ୟତା ଓ ସଂସ୍କୃତିକୁ ପ୍ରତିଷ୍ଠିତ କରାଇଲେ । ଏହା ଥିଲା ଋଗ୍‌ବେଦର ରଚନା କାଳ । ପରେ ସେମାନେ କ୍ରମେ କ୍ରମେ ପୂର୍ବ ଆଡ଼କୁ ଅଗ୍ରସର ହେଲେ । ସେତେବେଳେ ଯାଇ ଅନ୍ୟାନ୍ୟ ବେଦ ଓ ଉପନିଷଦମାନଙ୍କର ରଚନା କରାଯାଇଥିଲା । ଏହି ପରାଜିତ ଜାତି ହେଲେ ଦ୍ରାବିଡ଼, ଯାହାର ବଂଶଧରମାନଙ୍କୁ ଆମେ ବର୍ତ୍ତମାନ ତେଲୁଗୁ, ତାମିଲ, ମାଲୟାଲମ୍ ଆଦି ଭାଷା-ଭାଷୀମାନଙ୍କରେ ପାଇବା । ସେମାନେ ଋଗ୍‌ବେଦ-ବର୍ଣ୍ଣିତ ଦାସ, ଦସ୍ୟୁ ବା ଅନାସ । ଆର୍ଯ୍ୟେତର ଲୋକମାନଙ୍କ ସହିତ ଆର୍ଯ୍ୟମାନଙ୍କର ଯେଉଁ ଯୁଦ୍ଧ ହୋଇଥିଲା ଏବଂ ଇନ୍ଦ୍ରଙ୍କ

'ପୁରଭିତ୍' ବା ନଗର ଧ୍ୱଂସକାରୀ ଭାବରେ ଯେଉଁ ଇନ୍ଦ୍ର ଋଗ୍‌ବେଦରେ ଆବାହନ କରାଯାଇଅଛି ତାଙ୍କୁ ହିଁ ଉକ୍ତିକରି ସେମାନେ ଏ କଥା କହିଥାନ୍ତି । କିନ୍ତୁ ପରବର୍ତ୍ତୀ ପ୍ରତ୍ନତାତ୍ତ୍ୱିକ ଖନନ ଫଳରେ ଏ ପ୍ରକାର ଧ୍ୱଂସାବଶେଷ ଭାରତର ଅନେକ ସ୍ଥାନରେ ଦେଖାଗଲାଣି । ସେଗୁଡ଼ିକ ହେଲେ ରାଜସ୍ଥାନର କାଲିବଙ୍ଗା, ଗୁଜରାଟର ଲୋଥାଲ୍, ସୌରାଷ୍ଟ୍ରର ରୋଜଡ଼ି, କଚ୍ଛ ଜିଲ୍ଲାର ଦେଶଳପୁର, ପଞ୍ଜାବର ରୂପର୍, ଉତ୍ତରପ୍ରଦେଶର ଆଲମ୍‌ଗିରପୁର ଇତ୍ୟାଦି । ଭବିଷ୍ୟତରେ ଏ ପ୍ରକାର ଧ୍ୱଂସାବଶେଷ ଯେ ଅନ୍ୟତ୍ର ନ ମିଳିବ ସେ କଥା କୁହାଯାଇ ନ ପାରେ । ବରଂ ମିଳିବାର ସମ୍ଭାବନା ବେଶୀ । ବ୍ରିକେଟ୍ ଓ ରେମଣ୍ଡ ପ୍ରତ୍ନତତ୍ତ୍ୱବିଦ୍ ଦମ୍ପତି ବାସ୍ତବିକ ଏଥିରେ ବିସ୍ମିତ ହୋଇ କହିଛନ୍ତି—"The extension of the civilisation eastward towards the Ganges-Jamuna Doab raises various interesting possibilities which must await the research of coming years" (୭) ଅର୍ଥାତ୍ ଏ ସଭ୍ୟତାର (ସିନ୍ଧୁ ସଭ୍ୟତା) ପୂର୍ବଦିଗରେ ଗଙ୍ଗା-ଯମୁନା ଦୋଆବ୍ ଅଞ୍ଚଳରେ ବିସ୍ତୃତି ନାନାପ୍ରକାର କୌତୂହଳୋଦ୍ଦୀପକ ସମ୍ଭାବନାମାନ ସୃଷ୍ଟି କରୁଛି ଯାହାର ଫଳାଫଳ ନିଶ୍ଚିତ ଭାବରେ ଆଗାମୀ ବର୍ଷମାନଙ୍କର ଗବେଷଣା-ସାପେକ୍ଷ ଅଟେ । ସେମାନେ ନିଶ୍ଚିତ ଭାବରେ କହୁନାହାନ୍ତି ଯେ ସିନ୍ଧୁ-ସଂସ୍କୃତି କେବଳ ସିନ୍ଧୁ ଓ ତାର ଉପତ୍ୟକା ମଧ୍ୟରେ ସୀମିତ । ବରଂ ପ୍ରତ୍ନତାତ୍ତ୍ୱିକ ଗବେଷଣା ଫଳରେ ଜଣାଯାଉଛି ଯେ ଭାରତର ଅନ୍ୟତ୍ର ମଧ୍ୟ ବ୍ୟାପ୍ତ । ଆର୍ଯ୍ୟମାନଙ୍କର ସିନ୍ଧୁର ପୂର୍ବ ଆଗକୁ ଋଗ୍‌ବେଦୋତ୍ତର ଯୁଗରେ ଗତି ସହିତ ସମତାଳ ରଖି ଏ ସଂସ୍କୃତି ଯେତେବେଳେ ପୂର୍ବ ଆଡ଼କୁ ବ୍ୟାପ୍ତ ହୋଇଛି, ସେଥିରୁ ଏହି ସୂଚନା ମିଳିବ ଯେ ଏ ସଂସ୍କୃତି ଆର୍ଯ୍ୟ-ମାନଙ୍କର ଗତି ସହିତ ସମ୍ବନ୍ଧିତ । ଆର୍ଯ୍ୟମାନଙ୍କର ଉଦ୍ଦେଶ୍ୟ ଥିଲା, ଯେଉଁମାନେ ଆର୍ଯ୍ୟ-ବା ସଭ୍ୟ ନୁହନ୍ତି, ଯେଉଁମାନେ ଜଡ଼ବାଦୀ ବା ଯେଉଁମାନଙ୍କର ଆଧ୍ୟାତ୍ମିକ ଚିନ୍ତା ନାହିଁ, ସେମାନଙ୍କୁ ଆର୍ଯ୍ୟ କରାଇନେବା । ଏହା ଋଗ୍‌ବେଦୋକ୍ତ 'କୃଣ୍ୱନ୍ତୋ ବିଶ୍ୱମାର୍ଯ୍ୟମ୍' (୮) ବା "ସାରା ବିଶ୍ୱକୁ ଆମେ ଆର୍ଯ୍ୟ କରାଇ ନେଉଛୁ" ପଂକ୍ତିରୁ ସୁସ୍ପଷ୍ଟ । ଅତଏବ ଆର୍ଯ୍ୟମାନେ ସେମାନଙ୍କର ମୂଳ ଜନ୍ମଭୂମି 'ସପ୍ତସିନ୍ଧୁ' ଦେଶରୁ ଯେ ପୂର୍ବ, ପଶ୍ଚିମ, ଦକ୍ଷିଣ ଆଦି ବିଭିନ୍ନ ଦିଗକୁ ଗତି କରି ନଥିବେ ସେକଥା ଅବଶ୍ୱାସ କରି ହେବନାହିଁ । ବରଂ ଗତି କରିଥିବା କଥାଟି ଅଧିକତର ସମ୍ଭାବ୍ୟ । ସେମାନେ ଯେଉଁ ଆଡ଼େ ଯାଇଛନ୍ତି, ସିନ୍ଧୁ-ସଂସ୍କୃତିର ଧ୍ୱଂସାବଶେଷ ଯେତେବେଳେ ସେଇ ଆଡ଼େ ମିଳୁଛି, ଏଥିରୁ ଏହି ସତ୍ୟ ନିଷ୍ପନ୍ନ ନିଷ୍କାନ୍ତ ହେବ ଯେ ସେମାନଙ୍କ ସହିତ ଏହି ତଥାକଥିତ ସିନ୍ଧୁ ସଂସ୍କୃତିର ନିବିଡ଼ ସମ୍ପର୍କ ରହିଅଛି । ଅନ୍ୟ ଭାଷାରେ କହିବାକୁ ଗଲେ ଏହା ଆର୍ଯ୍ୟ ସଂସ୍କୃତିର ଏକ ଅଙ୍ଗ-ବିଶେଷ ହେବାର ସମ୍ଭାବନା ଅଧିକ । ପୂର୍ବକଥିତ ପ୍ରତ୍ନତତ୍ତ୍ୱବିତ୍ ଦ୍ୱୟ ଏ ସମ୍ପର୍କରେ ଯେଉଁ ବହୁ ସମ୍ଭାବନା ବିଷୟ ଚିନ୍ତା କରିଛନ୍ତି, ତହିଁରୁ ଉପରୋକ୍ତ ସମ୍ଭାବନାଟି ଯେ ଅଧିକତର ବିଶ୍ୱାସଯୋଗ୍ୟ, ତାହା ପରବର୍ତ୍ତୀ ଅନୁଚ୍ଛେଦମାନଙ୍କରେ ହେଉଥିବା ଆଲୋଚନାରୁ ଜଣାପଡ଼ିବ ।

ପ୍ରତ୍ନତାତ୍ତ୍ୱିକ ଖୋଦନ ଫଳରେ ହିନ୍ଦୁ-ସଭ୍ୟତାର ସ୍ଥାନମାନଙ୍କରେ ଏକ ଉନ୍ନତ ଧରଣର ନଗର-ସଭ୍ୟତା ଥିବାର ଜଣାଯାଏ । ଆହୁ ମଧ୍ୟ ଏ ନଗରର ପ୍ରଶାସନ ଲାଗି ଏକ ସୁନ୍ଦରପୂର୍ଣ୍ଣ ପୌର ପ୍ରଶାସନ କାର୍ଯ୍ୟ କରୁଥିବାର ଜଣାଯାଏ । ଘରଗୁଡ଼ିକ ପୋଡ଼ା ଇଟାରେ ତିଆରି ଓ ବହୁତାଳ ବିଶିଷ୍ଟ । କେତେକ ଘରର କାନ୍ଥ ୭ ଫୁଟ ଚଉଡ଼ା ଅଛି । ଏଥିରୁ ଜଣାପଡୁଛି, ଏଗୁଡ଼ିକ ବୋଧହୁଏ ଅପେକ୍ଷାକୃତ ସମ୍ଭ୍ରାନ୍ତ ପରିବାରର ଘର ଏବଂ ବହୁତାଳ ବିଶିଷ୍ଟ ହୋଇଥିବ । ଏଥିରୁ ଆହୁ ମଧ୍ୟ ଜଣାପଡୁଛି ଯେ ସମାଜରେ ବୋଧହୁଏ ବିଭିନ୍ନ ବର୍ଗର ଲୋକ ଥିଲେ । ରାସ୍ତାଗୁଡ଼ିକ ଖୁବ୍ ପ୍ରଶସ୍ତ ଏବଂ ଛକମାନଙ୍କରେ ପରସ୍ପରକୁ ସମକୋଣରେ କାଟୁଅଛନ୍ତି । ଘରମାନଙ୍କରେ ସ୍ନାନାଗାର ଓ ଶୌଚାଳୟମାନ ରହିଅଛି । ରାସ୍ତାର ଦୁଇ ପାଖରେ ପକ୍କା ନାଳୀର ବ୍ୟବସ୍ଥା ଅଛି । ଏହି ନାଳୀଗୁଡ଼ିକ କିଛି ପଥ ଅଗ୍ରସର ହେବାପରେ ଶୋଷକ ଗର୍ତ୍ତ (Soakage pit) ଦ୍ୱାରା ସଂଯୁକ୍ତ ହୋଇଛନ୍ତି । ସୁମେର, ବେବିଲୋନ୍ ଓ ଆକ୍କାଡ଼ରେ ମଧ୍ୟ ଏହିଭଳି ନଗରମାନ ସେତେବେଳେ ଥିବାର ପ୍ରତ୍ନତାତ୍ତ୍ୱିକ ପ୍ରମାଣମାନ ମିଳୁଅଛି । କିନ୍ତୁ ଏଗୁଡ଼ିକ ସିନ୍ଧୁ ସଭ୍ୟତାର ନଗର ଗୁଡ଼ିକଠାରୁ ଯଥେଷ୍ଟ ନ୍ୟୂନ ଅଟନ୍ତି । ଏଭଳି ବାଧିବନ୍ଧ ନଗର ନିର୍ମାଣ ଯୋଜନାକୁ ଅବଲମ୍ବନ କରି ଘରଗୁଡ଼ିକ ସେଠି ତିଆରି ହୋଇନଥିଲା । ଏଗୁଡ଼ିକର ରାସ୍ତାଗୁଡ଼ିକ ଅଙ୍କାବଙ୍କା ଥିଲା, ଯାହାକି ଆମେ ଏବେ ମଧ୍ୟ କେତେକ ଆଧୁନିକ ନଗର ଯଥା ଲଣ୍ଡନ, ପ୍ୟାରିସ, କଲିକତା ଆଦିରେ ଦେଖିବାକୁ ପାଇବା । ଏହି ସହରଗୁଡ଼ିକର ଶସ୍ୟ ମହଜୁଦ୍ କରିବା ଲାଗି ଖୁବ୍ ବୃହଦାକାର ଭଣ୍ଡାର-ଘରମାନ ଥିଲା । ଏଗୁଡ଼ିକର ବୃହତ୍ ଆକାରରୁ ଜଣାପଡୁଛି ଯେ ଏଗୁଡ଼ିକ କୌଣସି ବ୍ୟକ୍ତି ବିଶେଷଙ୍କର ହୋଇନଥିବ । ବରଂ ଏହା ସର୍ବସାଧାରଣଙ୍କ ଶସ୍ୟ-ଭଣ୍ଡାର ହୋଇଥିବ । ଏହି ଶସ୍ୟ ଭଣ୍ଡାରକୁ ଲାଗି ଛୋଟ ଛୋଟ କୋଠରିମାନ ରହିଅଛି । ବୋଧହୁଏ ଏଥିରେ କୁଲି ମଜୁରିଆମାନେ ରହି ଏହି ଶସ୍ୟକୁ ଖାଦ୍ୟୋପଯୋଗୀ କରିବା ଲାଗି କୁଟିବା କାମରେ ନିଯୁକ୍ତ ଥିଲେ । ସବଂଶ ଅଗ୍ନିପୂଜାର ନିଦର୍ଶନ ସ୍ୱରୂପ ଯଜ୍ଞ-କୁଣ୍ଡର ଧ୍ୱଂସାବଶେଷ ମଧ୍ୟ ମିଳୁଅଛି ।

ମହେଞ୍ଜୋଦାରୋର ୨୩'×୩୯'×୮' ଆୟତନ ବିଶିଷ୍ଟ ଗୋଟିଏ ପୋଡ଼ା-ଇଟାରେ ତିଆରି ପକ୍କା ପୋଖରୀର ସନ୍ଧାନ ମିଳିଛି । ଏହାକୁ କେହି କେହି ବିରାଟ ସର୍ବସାଧାରଣ ସ୍ନାନ-ପୁଷ୍କରିଣୀ ବୋଲି କହନ୍ତି । ଏହାର ଚାରିପାଖରେ ଛୋଟ ଛୋଟ ଘରମାନ ଅଛି ଯାହାକୁ କି ସେମାନେ ସ୍ନାନାଗାର ବୋଲି କହନ୍ତି । କିନ୍ତୁ ପ୍ରଖ୍ୟାତ ପ୍ରାଚ୍ୟତତ୍ତ୍ୱବିତ୍ ଡ଼. ଡ଼. କୋଶାମ୍ବୀ ଭିନ୍ନ ମତ ପୋଷଣ କରନ୍ତି । ତାଙ୍କ ମତରେ ଏହା ହେଉଛି ଏକ ଧର୍ମୀୟ ପବିତ୍ର ପୁଷ୍କରିଣୀ ଯାହାର ନାମ ପୁଷ୍କର ଅଟେ । ଏଠାରେ 'ମହା ନାରୀଶକ୍ତି' ବା 'ପ୍ରଜନନ ଶକ୍ତି'ର ଆରାଧନା କରାଯାଉଥିଲା । ଏଠାରେ କେତେକ

ରମଣୀ ରହୁଥିଲେ ଯେଉଁମାନେ କି ସେହି ମହା ନାରୀଶକ୍ତିର ପ୍ରତୀକ ରୂପେ ଗଣ୍ୟା ହେଉଥିଲେ । ସେମାନଙ୍କର ଗୃହଣକ୍ଷେତ୍ର ଥିଲା ଏହି ପୁଷ୍କରର ପବିତ୍ର ଜଳ । ଏଣୁ ସେମାନଙ୍କୁ କୁହାଯାଉଥିଲା ଜଳଗୃହିଣୀ ବା ଅପ୍‌ସରା । ଏହାର ପବିତ୍ର ଜଳରେ ସ୍ନାନ କରି ଏହି ଦେବୀମାନଙ୍କ ସହିତ ପବିତ୍ର ପ୍ରଜନନ କ୍ରିୟାରେ ଲଗ୍ନ ରହିବା ଏକ ଧାର୍ମିକ କର୍ମ-ବିଧି ଥିଲା । (୫) ବାସ୍ତବିକ ଏ ପ୍ରକାରର ଧାର୍ମିକ ପ୍ରଜନନ-କର୍ମବିଧି ଦାକ୍ଷିଣାତ୍ୟର ଦେବାଳୟମାନଙ୍କରେ ଖ୍ରୀଷ୍ଟପର ବହୁ ଶତାବ୍ଦୀ ଧରି ଚାଲିଥିଲା । ପରବର୍ତ୍ତୀ କାଳରେ ସୃଷ୍ଟି ପର୍ଯ୍ୟନ୍ତ ହୋଇଥିବା 'ଦେବଦାସୀ ପ୍ରଥା'ର ମୂଳ ଭିତ୍ତିଭୂମି ବୋଧହୁଏ ରହିଛି ଏଇଠି । ଦେବାଳୟ-ମାନଙ୍କ ନିକଟରେ ପୋଖରୀ ଖୋଳାଇବାର ପରମ୍ପରା ଓ ଏହାକୁ 'ପୁଷ୍କରିଣୀ' ବା 'ପଦ୍ମଫୁଲ ଭରା ପୋଖରୀ' ବୋଲି କହିବାର ଯଥାର୍ଥ୍ୟ ରହିଛି ଏଇଠି ।

ପ୍ରତି ସହରରେ ଏକ ବୃହଦାକାର ଧ୍ୱଂସ-ସ୍ତୂପ (Citadel mound) ଆବିଷ୍କାର କରାଯାଇଅଛି । ଏଥିରୁ ଯୁଦ୍ଧର ସାମଗ୍ରୀ କିଛି ମିଳୁନାହିଁ । ଏଣୁ ଏହା ଦୁର୍ଗ ରୂପରେ ବ୍ୟବହୃତ ହୋଇଥିବାର ସମ୍ଭାବନା ଖୁବ୍ କମ୍ । ବୋଧହୁଏ ଏହା ଏକ ଦେବାଳୟ ରୂପେ ବ୍ୟବହୃତ ହେଉଥିବ । ପର୍ବତ ଉପରେ କିମ୍ବା କୃତ୍ରିମ ପର୍ବତ ସୃଷ୍ଟି କରି ତା' ଉପରେ ଦେବତାଙ୍କୁ ଅବସ୍ଥାପିତ କରି ତାଙ୍କର ପୂଜା କରିବା ଥିଲା ଏକ ପ୍ରାଚୀନତମ ପରମ୍ପରା । କୋଶାମ୍ବୀଙ୍କ ମତରେ ସୁମେରୀୟମାନେ କଞ୍ଚା ଇଟାରେ ୭୦ ଫୁଟ କିମ୍ବା ତା'ଠାରୁ ଉଚ୍ଚ ସ୍ତୂପ ନିର୍ମାଣ କରି ଭଗବାନଙ୍କୁ ପୂଜା କରୁଥିଲେ । ଏଗୁଡ଼ିକ ଏକ କୃତ୍ରିମ ପର୍ବତ ସଦୃଶ ଥିଲା । ଏଗୁଡ଼ିକୁ କୁହାଯାଉଥିଲା 'ଜିଗୁରତ୍' । ଏମାନଙ୍କ ସହିତ ସିନ୍ଧୁ-ସଭ୍ୟତାର ଲୋକମାନଙ୍କର ପାରସ୍ପରିକ ଯୋଗାଯୋଗ ରହିଥିଲା । ଏଣୁ ସିନ୍ଧୁ ସଭ୍ୟତାର ସ୍ତୂପଗୁଡ଼ିକ ଏହି 'ଜିଗୁରତ୍'ର, ଏକ ସ୍ଥାନୀୟ ସଂସ୍କରଣ ବୋଲି ସେ ମତ ଦିଅନ୍ତି । ଏଥିରେ ପ୍ରଭେଦ ଏତିକି ଯେ ସିନ୍ଧୁ ଓ ତା' ଉପନଦୀର ବନ୍ୟାରୁ ରକ୍ଷା ପାଇବା ଲାଗି ଏଠାରେ କଞ୍ଚା ଇଟା ପରିବର୍ତ୍ତେ ପୋଡ଼ା ଇଟା ବ୍ୟବହାର କରାଯାଉଥିଲା । (୬) ଏହି 'ଜିଗୁରତ୍'ରେ 'ପଶୁପତି'ଙ୍କର ଆରାଧନା କରାଯାଉଥିବାର ସମ୍ଭାବନା ରହିଅଛି । ଏ 'ପଶୁପତି' ପୁଣି କିଏ ? କେହି କେହି ଏହାକୁ ଶିବ ବୋଲି କହନ୍ତି । କିନ୍ତୁ ଏ ହେଉଛନ୍ତି ପ୍ରକୃତରେ 'ଅଗ୍ନି' ଯାହାଙ୍କର ଆରାଧନା ଖାଲି ଭାରତର ସପ୍ତ-ସିନ୍ଧୁ ଅଞ୍ଚଳରେ କରାଯାଉ ନଥିଲା; ବରଂ ଭାରତ ବାହାରେ ଆର୍ଯ୍ୟ-ସଭ୍ୟତା ବିସ୍ତାର ଲାଭ କରିଥିବା ସବୁ ଅଞ୍ଚଳରେ କରାଯାଉଥିଲା । ଏହାର ସବିଶେଷ ଆଲୋଚନା ଡ଼ଃ ଏସ୍. ଆର. ରାଓ ଏବେ ବମ୍ବେ ବିଶ୍ୱବିଦ୍ୟାଳୟରେ ହୋଇଥିବା ଏକ ସମ୍ମାନରେ କରିଛନ୍ତି । (୭) ଶତପଥ ବ୍ରାହ୍ମଣରେ ଅଗ୍ନିଙ୍କର ଆଠଟି ନାମ ଭିତରୁ ଗୋଟିଏ ହେଉଛି ପଶୁପତି । ଲୋଥାଲ୍, କାଲିବଙ୍ଗା ମହେଞ୍ଜୋଦାରୋ ଓ ହରପ୍ପାରେ ଯେପରି ଭାବରେ ପ୍ରଚୁର ପରିମାଣରେ ଯଜ୍ଞକୁଣ୍ଡର ଧ୍ୱଂସାବଶେଷ ମିଳୁଛି, ସେଥିରୁ ଜଣାପଡୁଛି ଯେ ଉକ୍ତ ନଗରର ଅଧିବାସୀମାନେ ନିଶ୍ଚିତ

ଭାବରେ ଅଗ୍ନି-ପୂଜକ ଥିଲେ । ଅବଶ୍ୟ ମହେଞ୍ଜୋଦାରୋ ଓ ହରପ୍‌ପାର ଆଦ୍ୟ ଖନନକାରୀମାନଙ୍କ ଦୃଷ୍ଟିରେ ଯଜ୍ଞକୁଣ୍ଡମାନ ପଡ଼ିନଥିଲା କିମ୍ବା ଯଦିବା ପଡ଼ିଥିଲା ସେମାନେ ସେତେବେଳେ ଏହାର ପ୍ରକୃତ ତଥ୍ୟ ବାହାର କରିପାରି ନଥିଲେ । କିନ୍ତୁ ଏବେ ଲୋଥାଲ୍ ଓ କାଲିବଙ୍ଗାର ଖନନ ପରେ ଏ ଧାରଣା ବଦଳି ଯାଉଛି ଏବଂ ସମସ୍ତ ହରପ୍‌ପା ସଭ୍ୟତାର ଲୋକମାନେ ଅଗ୍ନି-ପୂଜକ ଥିଲେ ବୋଲି ଧାରଣା ବର୍ତ୍ତମାନ ଦୃଢ଼ୀଭୂତ ହୋଇଛି । (୮) ଋଗ୍‌ବେଦରେ ଅଗ୍ନିଙ୍କର ଗୋଟିଏ ନାମ ହେଉଛି 'ଦ୍ରୁଷଦ୍' ବା 'ଦ୍ରୁମଜାତ' । (୯) ମହେଞ୍ଜୋଦାରୋରୁ ମିଳିଥିବା ଗୋଟିଏ ମୃଣ୍ମୟ ମୋହରରେ (ମୋହର ସଂଖ୍ୟା ୪୭୦) ଗୋଟିଏ ବୃକ୍ଷରେ ଯଜ୍ଞ-କୁଣ୍ଡଟିଏ ଚିହ୍ନିତ ହୋଇଅଛି । ଏଥିରୁ ଅନୁମାନ ହୁଏ, ଅଗ୍ନି ଯେ ଦ୍ରୁମ-ଜାତ ଏ ଧାରଣା ସିନ୍ଧୁ-ସଭ୍ୟତାର ଲୋକଙ୍କର ଥିଲା । ଗୁଜରାଟର ଦ୍ୱାରକାଠାରେ (ଦାରୁକବନ) ଗୋଟିଏ ଗୋଲାକୃତି ଯଜ୍ଞ-କୁଣ୍ଡର ଧ୍ୱଂସାବଶେଷ ଖନନ ଫଳରେ ମିଳିଅଛି । ଏହି ଦାରୁ ଜାତ ଅଗ୍ନି ଦେବତାଙ୍କ ନାମକୁ ନେଇ ସେ ଅଞ୍ଚଳର ନାମ 'ଦାରୁକ-ବନ' ଓ ପରେ ଦ୍ୱାରକା ହୋଇଛି କି ନାହିଁ ଏହା ଅବଶ୍ୟ ଗବେଷଣା-ସାପେକ୍ଷ ଅଟେ ।

ଏ ପରିପ୍ରେକ୍ଷୀରେ ଋଗ୍‌ବେଦ ଓ ଜେନ୍ଦ୍ ଆବେସ୍ତାରେ କିପରି ଭାଷାଗତ, ଭାବଗତ ଓ ଧର୍ମଗତ ସାମ୍ୟ ରହିଛି ତାହା ଅନୁଧ୍ୟାନ କରିବାର କଥା । ଏଥିରୁ ସ୍ପଷ୍ଟ ଅନୁମିତ ହେବ, କାସ୍ପିଆନ୍ ହ୍ରଦଠାରୁ ଆରମ୍ଭ କରି ଇରାନ୍ ଓ ସପ୍ତ-ସିନ୍ଧୁ ଦେଶ ପର୍ଯ୍ୟନ୍ତ ଗୋଟିଏ ହିଁ ସଭ୍ୟତା ଓ ସଂସ୍କୃତି ବିରାଜମାନ କରୁଥିଲା । ସିନ୍ଧୁ ସଭ୍ୟତା ଅଞ୍ଚଳରେ ଚାଲୁଥିବା ଅଗ୍ନିଦେବଙ୍କର ପୂଜା ସହିତ ଇରାନ୍‌ରେ ଚାଲୁଥିବା ଅଗ୍ନିପୂଜାର କିଭଳି ସାମ୍ୟ ରହିଅଛି ତାହାର ସବିଶେଷ ଆଲୋଚନା ପରବର୍ତ୍ତୀ ଅନୁଚ୍ଛେଦମାନଙ୍କରେ ହେବ । ଏ ପ୍ରକାର ଅଗ୍ନିପୂଜା ବାସ୍ତବିକ ଇରାନରେ ମହମ୍ମଦଙ୍କ ଦ୍ୱାରା (୫୭୦-୬୩୨ ଖ୍ରୀ. ଅ.) ମୁସଲମାନ ଧର୍ମ-ପ୍ରଚାର ପର୍ଯ୍ୟନ୍ତ ଚାଲୁଥିଲା । ଅଗ୍ନି-ପୂଜକ ପାର୍ସିମାନେ ନିଜ ଧର୍ମକୁ ରକ୍ଷା କରିବା ଲାଗି ପରବର୍ତ୍ତୀ କାଳରେ ଅଗ୍ନି-ଆରାଧନା ଅକ୍ଷୁଣ୍ଣ ଥିବା ଦେଶ ଭାରତବର୍ଷକୁ ଆଶ୍ରୟ ଲାଗି ଚାଲି ଆସିଥିଲେ । ଭାଷାଗତ, ଭାବଗତ, ଧର୍ମଗତ ସାମ୍ୟ ନଥିଲେ ସେମାନେ ଅନ୍ୟ ଦେଶକୁ ନ ଯାଇ ଭାରତକୁ କାହିଁକି ବା ଆସିଥାନ୍ତେ ? ଯେ ଯାହାହେଉ, ଋଗ୍‌ବେଦ ଓ ଆବେସ୍ତାରେ ଭାଷାଗତ ସାମ୍ୟ ଥିବାର କେତେକ ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

| ବେଦ | ଆବେସ୍ତା | ବେଦ | ଆବେସ୍ତା |
|---|---|---|---|
| ଅସୁର | ଅହୁର | ସୋମ | ହୋମ |
| ସପ୍ତ | ହପ୍ତ | ହିମ | ଜିମ |

| ବେଦ | ଆବେସ୍ତା | ବେଦ | ଆବେସ୍ତା |
|---|---|---|---|
| ହୃଦସ୍ | ଜର୍ଦସ୍ | ଶ୍ୱାନ | ସ୍ପାନ |
| | | ପିତା | ପିତା |
| ବାହୁ | ବାଜୁ | ମାତା | ମାତା |
| ଅଶ୍ୱ | ଅସ୍ପ | ଜନ୍ତୁ | ଜନ୍ତୁ |
| ମିତ୍ର | ମିଥ୍ର | | |
| ପଶୁ | ପଶୁ | ଅର୍ଯ୍ୟମନ୍ | ଐର୍ଦମନ୍ |
| ମକ୍ଷୀ | ମକ୍ଷୀ | ଭଗ | ଭଗ |

କେବଳ ତ ଭାଷାଗତ ସାମ୍ୟ ନୁହେଁ ,ଆବେସ୍ତାରେ ପୂଜିତ ହେଉଥିବା ଅଗ୍ନି ଦେବଙ୍କର ପୂଜା-ପଦ୍ଧତି ସହିତ ମଧ୍ୟ ଋଗ୍‌ବେଦ ବର୍ଣ୍ଣିତ ଅଗ୍ନିଦେବଙ୍କର ପୂଜା-ପଦ୍ଧତି ପୂରା ମେଳ ଖାଉଅଛି । ଆବେସ୍ତା ଅନୁସାରେ ଅଗ୍ନିଙ୍କର ନାମ 'ଅତର' ବା 'ଅଥର୍' । ଏହାଙ୍କ ମାଧ୍ୟମରେ ଅନ୍ୟ ଦେବତାଙ୍କ ଆରାଧନା କରାଯାଇଥାଏ । ଋଗ୍‌ବେଦରେ ଠିକ୍ ସମଚନ୍ତାଧାରାର ପ୍ରତିଫଳନ ଘଟିଛି । ସେଠି ଅଗ୍ନିଙ୍କୁ କୁହାଯାଇଛି 'ହବ୍ୟବାହନ' ଅର୍ଥାତ୍ 'ଦେବତାମାନଙ୍କ ଲାଗି ସମର୍ପିତ ପୂଜାର ବହନକାରୀ' । ଅନ୍ୟ ଦେବତାଙ୍କ ଉପାସନା ଏହି ଅଗ୍ନିଙ୍କ ମାଧ୍ୟମରେ ହିଁ ହୋଇଥାଏ । ଅଗ୍ନିଙ୍କୁ ଆହୂତି ଦେଇ ଅନ୍ୟ ଦେବତାମାନଙ୍କୁ ଆବାହନ କରାଯାଇଥାଏ । ଋଗ୍‌ବେଦରେ ଅଗ୍ନିଙ୍କୁ ଠାଏ 'ଅଥର୍ବୁ' ବୋଲି କୁହାଯାଇଅଛି । ଏହାର ନିବିଡ଼ ସମ୍ପର୍କ ଆବେସ୍ତା ବର୍ଣ୍ଣିତ 'ଅତର' ଶବ୍ଦ ସହିତ ରହିଥିବା ପରି ମନେ ହୁଏ । ସେହିପରି 'ଅଥର୍ବନ୍'; 'ଅଧ୍ୱର' (ଯଜ୍ଞ) ଆଦି ଶବ୍ଦର ମଧ୍ୟ ଆବେସ୍ତୀୟ 'ଅତର୍' ଶବ୍ଦ ସହିତ ସମ୍ବନ୍ଧ ଥିବାର ଅନୁମିତ ହୁଏ । ଏଥିରୁ ଏହି ସତ୍ୟ ନିଷ୍ପ୍ରାନ୍ତ ହେବ ଯେ ସିନ୍ଧୁ-ସଂସ୍କୃତିର ତଥାକଥିତ ପରିସୀମାକୁ ଅତିକ୍ରମ କରି ଏକ ସଂସ୍କୃତି ଗଢି ଉଠିଥିଲା, ଯାହାର କି ସିନ୍ଧୁ-ସଂସ୍କୃତି ସହିତ ଭାଷାଗତ, ଭାବଗତ ଓ ଧର୍ମଧାରଣାଗତ ସାମ୍ୟ ରହିଅଛି । ଅତଏବ ଏଥିରୁ ଏହି ସିଦ୍ଧାନ୍ତ ବାହାରେ ଯେ ସିନ୍ଧୁ-ସଂସ୍କୃତି ଏକ ସ୍ୱତନ୍ତ୍ର ସଂସ୍କୃତି ନୁହେଁ । ଅନ୍ୟ ପକ୍ଷରେ ଏହା ଏକ ବୃହତ୍ତର ସଂସ୍କୃତିର ଅଂଶବିଶେଷ ଅଟେ ।

ଋଗ୍‌ବେଦ ସହିତ ଜେନ୍ଦ୍ ଆବେସ୍ତାରେ ଥିବା ସାମ୍ୟ ବିଷୟ ଆଲୋଚନା କଲେ ଏବଂ ତଦ୍‌ବର୍ଣ୍ଣିତ ବିଭିନ୍ନ ବିଷୟବସ୍ତୁକୁ ଆଧୁନିକ ପ୍ରତ୍ନତାତ୍ତ୍ୱିକ ଗବେଷଣା-ପ୍ରସୂତ ତଥ୍ୟ-ମାନଙ୍କ ସହିତ ତୁଳନା କଲେ ଜଣାଯିବ ଯେ ସିନ୍ଧୁ-ସଂସ୍କୃତିର ଛନ୍ଦେ ଛନ୍ଦେ ବୈଦିକ ସଂସ୍କୃତିର ପ୍ରଭାବ ପଡ଼ିଅଛି । ଅତଏବ ସେ ସଂସ୍କୃତିର ସ୍ରଷ୍ଟା ଆର୍ଯ୍ୟେତର ଦ୍ରାବିଡ଼ ନୁହନ୍ତି । ଅନ୍ୟ ପକ୍ଷରେ ସେ ସଂସ୍କୃତିର ସ୍ରଷ୍ଟା ହେଉଛନ୍ତି ଆର୍ଯ୍ୟ । ନିମ୍ନଲିଖିତ କାରଣମାନ ଏ ସମ୍ପର୍କରେ ପ୍ରଣିଧାନଯୋଗ୍ୟ ।

୧ । ଋଗ୍-ବେଦରେ 'ଦାସ', 'ଦସ୍ୟୁ', 'ଅନାସ', 'ଶିଶ୍ନଦେବ' ଆଦି ଶବ୍ଦର ବ୍ୟବହାର ଓ ଦେବତାମାନଙ୍କ ସାହାଯ୍ୟରେ ଆର୍ଯ୍ୟମାନଙ୍କର ସେମାନଙ୍କୁ ପରାସ୍ତ କରିଥିବାର ବର୍ଣ୍ଣନାକୁ ଦେଖି କେତେ କେତେ ଗବେଷକ ଅନୁମାନ କରନ୍ତି ଯେ ଋଗ୍‌ବେଦର ସୃଷ୍ଟି ସମୟରେ ଆର୍ଯ୍ୟମାନଙ୍କୁ ଏକ ଆର୍ଯ୍ୟେତର ଅନୁନ୍ନତ ଜାତି ସହିତ ସଂଗ୍ରାମ କରିବାକୁ ହୋଇଥିଲା । ଇନ୍ଦ୍ରଙ୍କୁ 'ପୁରଭିତ୍' ବା 'ନଗରଧ୍ୱଂସକାରୀ' ରୂପରେ ଆବାହନ କରାଯାଇଥିବାରୁ ସେ ସିନ୍ଧୁ-ସଂସ୍କୃତିର ନଗର-ସଭ୍ୟତାର ଧ୍ୱଂସକାରୀ ବୋଲି କଳ୍ପନା କରାଯାଇଥିବା କଥା ସେମାନେ ଅନୁମାନ କରନ୍ତି ଏବଂ ଏହି ନଗର-ସଭ୍ୟତାର ଅଧିକାରୀ ଦ୍ରାବିଡ଼ମାନେ ବୋଲି ସେମାନେ ମତ ଦିଅନ୍ତି । କିନ୍ତୁ ଋଗ୍‌ବେଦର ସୂକ୍ତଗୁଡ଼ିକୁ ଗଭୀର ଭାବରେ ଅନୁଧ୍ୟାନ କଲେ ଜଣାଯାଏ ଯେ 'ଦାସ' ବା 'ଦସ୍ୟୁ'ମାନଙ୍କ ସହିତ ଯେଉଁ ଯୁଦ୍ଧବିଷୟକ ବର୍ଣ୍ଣନା ଉପସ୍ଥ ରହିଅଛି, ତହିଁରେ ଅତୀତ କାଳର କ୍ରିୟାପଦ ବ୍ୟବହୃତ ହୋଇଅଛି । ପକ୍ଷାନ୍ତରେ 'ଦାଶରାଜ୍ଞ' (୧୦) ଯୁଦ୍ଧ ବିଷୟର ବର୍ଣ୍ଣନାରେ ହିଁ ବର୍ତ୍ତମାନ କାଳର କ୍ରିୟାପଦ ବ୍ୟବହୃତ ହୋଇଅଛି । ଏଥିରୁ ବୁଝାପଡ଼ିବ ଯେ 'ଦାସ' ବା 'ଦସ୍ୟୁ'ମାନଙ୍କ ସହିତ ଆର୍ଯ୍ୟମାନଙ୍କର ଯୁଦ୍ଧ କାହିଁ କେଉଁ ଅନାଦି କାଳରେ କେବେ ହୋଇଥିବ । ପରଂପରା-କ୍ରମେ ଗଢ଼ି ଆସିଥିବା ଲୋକକଥାଗୁଡ଼ିକୁ ଅବଲମ୍ବନ କରି ଋଗ୍‌ବେଦର ଋଷିଗଣ ଏଗୁଡ଼ିକ ବିଷୟରେ ସୂଚନା ଦେଇଥିବେ ମାତ୍ର । ଅତଏବ କେବଳ 'ଦାଶରାଜ୍ଞ' ଯୁଦ୍ଧ ହିଁ ଋଗ୍-ବେଦର ରଚନା ସମୟର ସମକାଳୀନ ଯୁଦ୍ଧ ଅଟେ । ତେଣୁ 'ଦାସ' ବା 'ଦସ୍ୟୁ'ମାନଙ୍କ ସହିତ ଋଗ୍‌ବେଦୀୟ ଆର୍ଯ୍ୟମାନଙ୍କର ଯୁଦ୍ଧ ହୋଇଥିବା କଥା ଆଦୌ ବିଶ୍ୱାସଯୋଗ୍ୟ ନୁହେଁ । ସେହିପରି 'ଶିଶ୍ନଦେବ' ଶବ୍ଦର ଅର୍ଥ ନୁହେଁ 'ଶିଶ୍ନ' ବା ପୁଂଜନନେନ୍ଦ୍ରିୟକୁ ଦେବତା ମଣି ପୂଜା କରୁଥିବା ବ୍ୟକ୍ତି ବା ଗୋଷ୍ଠୀ । ସମଗ୍ର ବୈଦିକ ସାହିତ୍ୟ ଅନୁଶୀଳନ କଲେ ଜଣାଯାଏ ଯେ ସମାସଯୁକ୍ତ 'ଦେବ' ଶବ୍ଦ ପୂଜା କରିବା ଅର୍ଥରେ କୁତ୍ରାପି ବ୍ୟବହୃତ ହୋଇନାହିଁ । ବୈଦିକ ସାହିତ୍ୟରେ ଗୁରୁ ଶିଷ୍ୟକୁ ଉପଦେଶ ଦେଇ କହୁଛନ୍ତି, "ମାତୃଦେବୋ ଭବ ପିତୃଦେବୋ ଭବ ଅତିଥିଦେବୋ ଭବ" । ଏହାର ଅର୍ଥ ହେଲା, "(ତୁମେ) ବାପା, ମାଆ, ଅତିଥିଙ୍କର ସେବା କର" । ସେହି ଭାବରେ ଶିଶ୍ନଦେବର ଅର୍ଥ ହେଉଛି ଇନ୍ଦ୍ରିୟ-ସେବୀ ବା ଅତ୍ୟନ୍ତ ଇନ୍ଦ୍ରିୟାସକ୍ତ ବ୍ୟକ୍ତି । ବାସ୍ତବିକ ନିରୁକ୍ତକାର ଯାସ୍କ 'ଶିଶ୍ନଦେବ'ର ଅର୍ଥ କରିବାକୁ ଯାଇ କହିଛନ୍ତି,— 'ଅବ୍ରହ୍ମଚର୍ଯ୍ୟା ଶିଶ୍ନେନ ଦିବ୍ୟନ୍ତୀତି' । ଅର୍ଥାତ୍ ଅବ୍ରହ୍ମଚାରୀମାନେ ଇନ୍ଦ୍ରିୟ ପ୍ରତି ଆସକ୍ତ ଥାଆନ୍ତି । ତେଣୁ ସେମାନଙ୍କୁ କୁହାଯାଏ 'ଶିଶ୍ନଦେବ' । ଆର୍ଯ୍ୟମାନେ ସେହିମାନଙ୍କୁ ହିଁ ଘୃଣା କରୁଥିଲେ । ଉଭୟ ଆର୍ଯ୍ୟମାନଙ୍କ ମଧ୍ୟରେ ଏବଂ ଆର୍ଯ୍ୟେତରମାନଙ୍କ ମଧ୍ୟରେ ଏଭଳି କେତେକ ଲୋକଥିଲେ ଯେଉଁମାନେ କି ଇନ୍ଦ୍ରିୟ ପ୍ରତି ଖୁବ୍ ଆସକ୍ତ ଥିଲେ । ଦେହର ଖୁବ୍ ସେବା କରୁଥିଲେ । ଦେହେତର ଉପରେ ବିଶ୍ୱାସ ସେମାନଙ୍କର ନଥିଲା । ସେହିମାନେ ହିଁ ବୈଦିକ ସାହିତ୍ୟରେ ନିନ୍ଦିତ ହୋଇଛନ୍ତି । ଏ ନିନ୍ଦା କୌଣସିମତେ

ତଥାକଥିତ ଆର୍ଯ୍ୟେତର ଦ୍ରାବିଡ ଜାତି ପ୍ରତି ପ୍ରଯୁକ୍ତ ନୁହେଁ । ଏପରିକି ଆର୍ଯ୍ୟମାନେ ଦାସ-ସ୍ୱଭାବ-ବିଶିଷ୍ଟ ସେମାନଙ୍କ ନିଜ ସମ୍ପ୍ରଦାୟରେ ଥିବା ଆର୍ଯ୍ୟମାନଙ୍କୁ ମଧ୍ୟ ଘୃଣା କରୁଥିଲେ । ଋଗ୍‌ବେଦରେ ତେଣୁ ଦାସ-ସ୍ୱଭାବ-ବିଶିଷ୍ଟ ଆର୍ଯ୍ୟମାନଙ୍କୁ ବିନାଶ କରିବା ପାଇଁ ସେମାନେ ଇନ୍ଦ୍ରଙ୍କୁ ପ୍ରାର୍ଥନା କରିଛନ୍ତି । (୧୧)

୨ । ଉପରୋକ୍ତ 'ଦଶରାଜ୍ଞ' ଯୁଦ୍ଧରେ ରାଭି ନଦୀ ତୀରସ୍ଥ 'ହରିୟୁପିଆ' ନଗରଟି 'ଅଗ୍ନି' ଦେବଙ୍କ ଶୁଭାଶୀର୍ବାଦ ଫଳରେ ଭାରତମାନଙ୍କ ରାଜା ସୁଦାସ ଧ୍ୱଂସ କରି ଦେଇଥିଲେ ବୋଲି ଋଗ୍‌ବେଦରେ ବର୍ଣ୍ଣିତ ହୋଇଅଛି । ଏହି 'ହରିୟୁପିଆ' ନଗରଟି ଆଧୁନିକ ରାଭି ନଦୀର ପୂର୍ବତଟରେ ଥିବା ହରପ୍ପା ହୋଇଥିବା ସମ୍ଭବ । ଏ ନଗରଟି ଉପରୋକ୍ତ ଦଶ ଜଣ ରାଜାଙ୍କ ମଧ୍ୟରେ କାହାର ଅଧୀନରେ ଥିବ। ତାହା କଦାପି ଦ୍ରାବିଡ଼ମାନଙ୍କର ଅଧୀନରେ ନଥିବ । ତେବେ ତଦାଶ୍ରିତ ସଭ୍ୟତା ଦ୍ରାବିଡ଼ମାନଙ୍କର ହେବ ବା କିପରି ?

୩ । ଯଦି ଆର୍ଯ୍ୟମାନଙ୍କ ଚାପରେ ଅତିଷ୍ଠ ହୋଇ ଦ୍ରାବିଡମାନେ ସିନ୍ଧୁ-ଉପତ୍ୟକା ଛାଡ଼ି ଭାରତର ଦକ୍ଷିଣକୁ ଚାଲିଆସିଲେ ଏବଂ ପରିଶେଷରେ ଦକ୍ଷିଣ ଭାରତରେ ବସତି ସ୍ଥାପନ କଲେ, ତେବେ ସେହିଭଳି ନଗର-ସଭ୍ୟତା ସେମାନେ ଦକ୍ଷିଣରେ କେଉଁଠି ନିଶ୍ଚୟ ଗଢ଼ିଥାଆନ୍ତେ । କିନ୍ତୁ ସେଭଳି ନଗର-ସଭ୍ୟତା ଗଢ଼ିଥିବାର ପ୍ରତ୍ୟକ୍ଷ ପ୍ରମାଣ ଏ ପର୍ଯ୍ୟନ୍ତ ମିଳିନାହିଁ । ଏଣୁ ଆର୍ଯ୍ୟମାନଙ୍କ ଚାପରେ ଦ୍ରାବିଡ଼ମାନେ ଦକ୍ଷିଣ-ଦେଶକୁ ଚାଲି ଆସିଥିବା କଥା ଭ୍ରମାତ୍ମକ ଅଟେ ।

୪ । ପ୍ରତ୍ନତତ୍ତ୍ୱବିଦ୍ ବ୍ରିଜେଟ୍ ଓ ରେମଣ୍ଡ ଆଲଚିନଙ୍କ ମତରେ କର୍ଣ୍ଣାଟକର କେତେକ ଲୋକଙ୍କର ନୂତନ ପ୍ରସ୍ତରଯୁଗର ଲୋକଙ୍କ ସହିତ ନୃତାତ୍ତ୍ୱିକ ଗଭୀର ସୌସାଦୃଶ୍ୟ ରହିଅଛି । ଲୌହଯୁଗର (ଖ୍ରୀ: ପୂ ୧୦୦୦) ଏକହଜାର ବର୍ଷ ପୂର୍ବରୁ ମଧ୍ୟ ସେଠାରେ ଲୋକବସତି ଥିଲା । ଏହି ପ୍ରକାର ସାଂସ୍କୃତିକ ନିରବଚ୍ଛିନ୍ନତା ଦକ୍ଷିଣ ଭାରତର ଅନ୍ୟାନ୍ୟ ଅଞ୍ଚଳମାନଙ୍କରେ ମଧ୍ୟ ରହିଆସିଅଛି । (୧୨) ଏଥିରୁ ଅନୁମିତ ହୁଏ ଯେ ଦକ୍ଷିଣ ଭାରତରେ ଗଢ଼ି ଉଠିଥିବା ଦ୍ରାବିଡ଼-ସଂସ୍କୃତିର ଜନକ ସିନ୍ଧୁ-ସଂସ୍କୃତି କଦାପି ହୋଇ ନପାରେ । ବାସ୍ତବିକ ଦେଖିବାକୁ ଗଲେ ତେଲୁଗୁ, ତାମିଲ, ମାଲୟାଲମ ଆଦି ଭାଷାମାନଙ୍କର ପରସ୍ପର ସହିତ ଏଭଳି ବୈଷମ୍ୟ ରହିଛି ଯେ ସେଗୁଡ଼ିକ ଯେ ଗୋଟିଏ ସଭ୍ୟତା ଓ ସଂସ୍କୃତିଧାରୀ ଜାତିର ଅନୁବର୍ତ୍ତୀ ହୋଇଥିବେ, ତାହା କଦାପି ବିଶ୍ୱାସଯୋଗ୍ୟ ନୁହେଁ । ବରଂ ଦାକ୍ଷିଣାତ୍ୟର ଏ ସଂସ୍କୃତି ଓ ଭାଷା ପୃଥକ୍ ପୃଥକ୍ ଭାବରେ ନିଜ ନିଜର ମାଟିରେ

ନୂତନ ସ୍ତରର ଯୁଗ କମ୍ପା ତତ୍ତ୍ୱପୂର୍ବକୁ ଗଠିତ ଓ ପରସ୍ପଷ୍ଟ ହୋଇଆସିଥିବା କଥାଟି ଅଧିକତର ବିଶ୍ୱାସଯୋଗ୍ୟ ଅଟେ । ହୁଏତ ପରବର୍ତ୍ତୀ କାଳରେ ଆର୍ଯ୍ୟମାନେ 'କୃଣ୍ୱନ୍ତୋବିଶ୍ୱମାର୍ଯ୍ୟମ୍' (୧୩) ବା 'ସାରା ବିଶ୍ୱକୁ ଆର୍ଯ୍ୟ ବା ସଭ୍ୟ କରାଇନେବା' ନୀତି ଅବଲମ୍ବନ କରି ଯେତେବେଳେ ସାଂସ୍କୃତିକ ଅଭିଯାନମାନ କରିଛନ୍ତି, ତାରି ଫଳରେ ସେ ସଂସ୍କୃତି ଆର୍ଯ୍ୟ-ସଂସ୍କୃତି ଦ୍ୱାରା ସମ୍ୟକ୍ ଭାବରେ ପ୍ରଭାବାନ୍ୱିତ ହୋଇଅଛି । ଏହାର ଫଳଶ୍ରୁତି ଭାବରେ ସେଠାରେ ଆର୍ଯ୍ୟ ଓ ଆର୍ଯ୍ୟେତର ସଂସ୍କୃତିର ଏକ ଅଭିନବ ସମନ୍ୱୟ ସଙ୍ଘଟିତ ହୋଇଅଛି । ବାସ୍ତବିକ, ବର୍ତ୍ତମାନ ଅବସ୍ଥାରେ ଏହାର ଅନ୍ୟ ସଂସ୍କୃତି ଅପେକ୍ଷା ଆର୍ଯ୍ୟ-ସଂସ୍କୃତି ସହିତ ବିଶେଷ ସୌସାଦୃଶ୍ୟ ରହିଅଛି ।

୫ । ମୃତ୍ୟୁର ରାଜା ଯମ ଓ ଏହାଙ୍କ ଆସ୍ଥାନ ଦକ୍ଷିଣ ଦିଗରେ ବୋଲି ଆର୍ଯ୍ୟମାନଙ୍କର ଧାରଣା ଥିଲା । ମହେଞ୍ଜୋଦାରୋ, ହରପ୍ପା, କାଲିବଙ୍ଗା, ଲୋଥାଲ୍, ଇତ୍ୟାଦି ସିନ୍ଧୁ-ସଂସ୍କୃତିର ଧ୍ୱଂସାବଶେଷରୁ ଜଣାଯାଏ ଯେ, ଜନବସତିର ଦକ୍ଷିଣ ଦିଗରେ କବର-ସ୍ଥାନମାନ ରହିଅଛି । ମୃତବ୍ୟକ୍ତିକୁ ଉତ୍ତର-ଦକ୍ଷିଣ କରି ଶୁଆଇ ଦିଆଯାଇଛି । ପ୍ରାୟ ସମସ୍ତ ଶବର ମୁଣ୍ଡକୁ (ଗୋଟିକୁ ଛାଡ଼ି) ଉତ୍ତର ଦିଗକୁ କରି ଶୁଆଇ ଦିଆଯାଇଛି । ଆର୍ଯ୍ୟମାନଙ୍କ ମତରେ ଉତ୍ତର ଦିଗରେ ଅଛି ଦେବ-ଭୂମି ବା ସ୍ୱର୍ଗ-ଭୂମି । ଏପରି କରିବା ଦ୍ୱାରା ମୃତ ବ୍ୟକ୍ତିଙ୍କ ଆତ୍ମା ଦେବ-ଭୂମି ଆଡ଼କୁ ଗତି କରିଥିବାର ଭାବଟି ବ୍ୟକ୍ତ କରାଯାଇଛି । ମିଳିଥିବା ଯେଉଁ ଗୋଟିଏ ଶବର ମୁଣ୍ଡ ଦକ୍ଷିଣକୁ କରାଯାଇଛି, ତାହା ନିଶ୍ଚିତ ଭାବରେ ଜାଣିଶୁଣି କରାଯାଇଛି । କୌଣସି ବ୍ୟକ୍ତିଙ୍କର ଆତ୍ମା ଦେବ-ଭୂମିକୁ ଯିବାର ଗୌରବରୁ ବଞ୍ଚିତ ହୋଇଛି । ଏ ବ୍ୟକ୍ତି ହୁଏତ ସେପରି କିଛି କୁକର୍ମ କରିଥାଇ ପାରନ୍ତି, ଯାହା ଫଳରେ କି ସ୍ୱାଙ୍କର ସ୍ୱର୍ଗଦ୍ଧି ପାଇବାର ସମ୍ଭାବନା ନଥିଲା । (୧୪) ଏବର ପ୍ରଥାଭଳି ମୃତବ୍ୟକ୍ତିର ପ୍ରେତଲାଗି ମୃଣ୍ମୟପାତ୍ରରେ ଖାଦ୍ୟ ଓ ଅନ୍ୟାନ୍ୟ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ଦେବାର ମଧ୍ୟ ବ୍ୟବସ୍ଥା ହୋଇଅଛି ।

୬ । ସିନ୍ଧୁ-ସଭ୍ୟତାର ମୃଣ୍ମୟ ମୋହରମାନଙ୍କରେ ବୃଷଭ, ଛାଗ, ସିଂହ, ମୃଗ ଆଦି ଯେଉଁ ପ୍ରାଣୀମାନଙ୍କର ମୂର୍ତ୍ତି ଅଙ୍କିତ ହୋଇଛି, ଏଗୁଡ଼ିକ ସବୁ ପୁଂ-ପ୍ରଧାନ ଅଟନ୍ତି । ଏହାଛଡ଼ା ମହେଞ୍ଜୋଦାରୋରେ ଶ୍ମଶ୍ରୁଳ ଗୋଟିଏ ପୁରୁଷର ଶିଳା-ମୂର୍ତ୍ତି ମଧ୍ୟ ଦେଖିବାକୁ ମିଳେ । ଏସବୁ ମୂର୍ତ୍ତିମାନଙ୍କରେ ସ୍ତ୍ରୀ-ପ୍ରାଧାନ୍ୟ ଆଦୌ ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ବୈଦିକ ଆର୍ଯ୍ୟମାନଙ୍କର ସମାଜ ପିତୃକୈନ୍ଦ୍ରିକ ଥିବାର ଭୂରି ଭୂରି ପ୍ରମାଣ ବେଦ, ଉପନିଷଦମାନଙ୍କରେ ଦେଖିବାକୁ ମିଳେ । ଉପଯୁକ୍ତ ପିତୃ-ପରିଚୟ ନପାଇ ଜବାଲାଙ୍କ ନନ୍ଦନ ସତ୍ୟକାମ, ବା ଇତରାଙ୍କ ନନ୍ଦନ ମହିଦାସ କପରି ବ୍ୟଥିତ

ହୋଇଛନ୍ତି ତା'ର ପରିଚୟ ଆମେ ଯଥାକ୍ରମେ ଛାନ୍ଦୋଗ୍ୟ ଉପନିଷଦ ଓ ଐତରେୟ ଉପନିଷଦରେ ପାଇଥାଉ । ଏ ଉପନିଷଦ ଦ୍ୱୟର ସୃଷ୍ଟି ଋଗ୍‌ବେଦର ବହୁପରେ (ଖ୍ରୀ ପୂ ୧୨୦୦ ରୁ ୮୦୦ ମଧ୍ୟରେ) ହୋଇଥିଲେ ହେଁ ତଦ୍‌ବର୍ଣ୍ଣିତ ପିତୃକୈନ୍ଦ୍ରିକ ସମାଜ ଯେ ବୈଦିକ ପରମ୍ପରା ଉପରେ ପ୍ରତିଷ୍ଠିତ ଏଥିରେ ସନ୍ଦେହ ନାହିଁ । ସିନ୍ଧୁ-ସଭ୍ୟତାର ପୁଂକୈନ୍ଦ୍ରିକ ମୃଣ୍ମୟ ମୋହରଗୁଡ଼ିକରୁ ଏହି ସଙ୍କେତ ମିଳୁଅଛି ଯେ ଉକ୍ତ ସଭ୍ୟତାର ଅଧିବାସୀମାନେ ଏକ ପିତୃକୈନ୍ଦ୍ରିକ ସମାଜର ଅଂଶୀଦାର ଥିଲେ । ଏ ସମାଜ ନିଶ୍ଚିତ ଭାବରେ ଯେ ବୈଦିକ ସମାଜ ସହିତ ସମ୍ପର୍କିତ ଥିଲା ଏଥିରେ ସନ୍ଦେହ ନାହିଁ ।

୭ । ପ୍ରତ୍ନତତ୍ତ୍ୱବିତ୍ ହଣ୍ଟର, ଲଙ୍ଗ୍‌ଡନ୍, ମାର୍ଶାଲ, ହୁଇଲର ଓ ଅନ୍ୟମାନେ ସର୍ବମୋଟ ପ୍ରାୟ ୪୦୦୦ଟି ମୃଣ୍ମୟ ମୋହରରେ ହୋଇଥିବା ଚିତ୍ରଗୁଡ଼ିକୁ ଆବିଷ୍କାର କରିଛନ୍ତି । ଏଥିରେ ସର୍ବମୋଟ ୪୧୯ଟି ସାଙ୍କେତିକ ଚିହ୍ନ ରହିଅଛି । ଏହି ଚିହ୍ନଗୁଡ଼ିକ ଏକକ ଭାବରେ କମ୍ବା ମିଶ୍ରିତ ଭାବରେ ରହିଅଛି । କେତେକ ଗବେଷକଙ୍କ ମତରେ ଏଗୁଡ଼ିକ କେବଳ ଚିତ୍ର ନୁହଁନ୍ତି; ଅନ୍ୟ ପକ୍ଷରେ ଏଗୁଡ଼ିକ ଚିତ୍ରଲିପି । ପ୍ରତ୍ନତତ୍ତ୍ୱବିତ୍ ବି. ବି. ଲାଲଙ୍କ ମତରେ ଏହି ଲିପିସବୁ ଡାହାଣରୁ ବାମକୁ ଲେଖା ଯାଇଅଛି । ସେ ଏଥିମଧ୍ୟରୁ କେତୋଟିର ପାଠୋଦ୍ଧାର କରିଛନ୍ତି । (୧୫) ଏସ୍. ଆର. ରାଓ ମଧ୍ୟ ଏଥିମଧ୍ୟରୁ ବହୁ ଚିତ୍ରଲିପିର ପାଠୋଦ୍ଧାର କରିଛନ୍ତି । (୧୬) ସେ ଏଥିରେ ବୈଦିକ ସଂସ୍କୃତି ଓ ସଭ୍ୟତାର ଅନେକ ଚିହ୍ନ ଆବିଷ୍କାର କରିଅଛନ୍ତି । ପ୍ରତ୍ନତାତ୍ତ୍ୱିକ ଆଲଚିନ୍ ଦମ୍ପତି ମଧ୍ୟ ଏଥିରେ ସହମତ । ସେ ଦୁହେଁ କହିଛନ୍ତି, "There are many traits which appear to anticipate the features of the religion of the Vedic times or later Hinduism." (୧୭) ଅର୍ଥାତ୍ ଏଥିରେ (ସିନ୍ଧୁ-ସଂସ୍କୃତିରେ) ଏପରି ଅନେକ ବିଷୟ ଅଛି ଯହିଁରୁ ଅନୁମାନ କରାଯାଏ ଯେ ବୈଦିକ କାଳ କମ୍ବା ପରବର୍ତ୍ତୀ କାଳରେ ହିନ୍ଦୁ-ଧର୍ମର ଧାର୍ମିକ ଧାରଣାର ସଙ୍କେତମାନ ଏଥିରେ ବିଦ୍ୟମାନ । ପ୍ରାଚୀନ ବ୍ୟାବିଲୋନ୍, ଆସିରିଆ, ଗ୍ରୀଲ୍ୟାଣ୍ଡ୍‌ଆରେ ଏପ୍ରକାର ଚିତ୍ର-ଲିପି ଚଳୁଥିବାର ପ୍ରମାଣ ମିଳିଅଛି । ଆଧୁନିକ ଯୁଗରେ ଚୀନରେ ମଧ୍ୟ ଚିତ୍ର-ଲିପିର ପ୍ରଚଳନ ରହିଅଛି । ସିନ୍ଧୁ-ସଭ୍ୟତାର ଚିତ୍ରଲିପି ବୋଧହୁଏ ପ୍ରାଚୀନ ବ୍ରାହ୍ମୀଲିପିର ପୂର୍ବବର୍ତ୍ତୀ ପ୍ରଚଳିତ ଲିପି ଥିଲା ।

୮ । ସିନ୍ଧୁ-ସଭ୍ୟତାର ଗୋଟିଏ ମୃଣ୍ମୟ ମୋହରରେ ଗଛଟିଏ ଓ ତା'ଉପରେ ବସି ରହିଥିବା ଦୁଇଟି ପକ୍ଷୀର ଚିତ୍ର ରହିଅଛି । କେହି କେହି ଗବେଷକ ଏହାକୁ ଭୂତର ଚିତ୍ର ବୋଲି କୁହନ୍ତି । କିନ୍ତୁ ଏଡ଼େ ବଡ଼ ଉନ୍ନତ ସଭ୍ୟ ଜାତି ଯେ କି ଆଧୁନିକ

ନଗର ନିର୍ମାଣ ଯୋଜନା ବିଷୟରେ ସମ୍ପୂର୍ଣ୍ଣ ଅବହିତ ଥିଲେ ଏବଂ ପୃଥିବୀର ପ୍ରାଚୀନତମ ଲୋଥାଲସ୍ଥ ପୋତାଶ୍ରୟର ନିର୍ମାଣ କରି ପାରିଥିଲେ ସେ କଦାପି ଭୂତପ୍ରେତର ଅନ୍ଧବିଶ୍ୱାସକୁ ଆଶ୍ରୟ କରି ଏଭଳି ଚିତ୍ରାଙ୍କନ କରି ନଥିବେ । ଚିତ୍ରଲିପିଟିକୁ ଗଭୀର ଭାବରେ ଅନୁଧ୍ୟାନ କଲେ ଜଣାଯିବ ଯେ ବେଦବର୍ଣ୍ଣିତ 'ପରମାତ୍ମା' ଓ 'ଜୀବାତ୍ମା' ସମ୍ପର୍କୀୟ ତଥ୍ୟଟି ଦୁଇଟି ପକ୍ଷୀର ଉଦାହରଣ ଦେଇ ଏଠାରେ ସରଳ ଭାବରେ ବୁଝାଇ ଦେବାର ପ୍ରଚେଷ୍ଟା କରାଯାଇଅଛି । ଏହି ମନ୍ତ୍ରଟି ହେଲା—

ଦ୍ୱାସୁପର୍ଣ୍ଣା ସଯୁଜା ସଖାୟା ସମାନଂ
ବୃକ୍ଷଂ ପରିଷସ୍ୱଜାତେ ।
ତୟୋରନ୍ୟଃ ପିପ୍‌ପଲଂ
ସ୍ୱାଦ୍ୱତ୍ତ୍ୟ ନଶ୍ନନ୍ନନ୍ୟୋ ଅଭିଚାକଶୀତି ।

ଅର୍ଥାତ୍ ଗୋଟିଏ ଅଶ୍ୱତ୍ଥ ଗଛରେ ସଖା-ସ୍ୱଭାବ ଧରି ଦୁଇଟି ଚଢେଇ ବସିଛନ୍ତି । ସେଥିରୁ ଗୋଟିଏ (ଜୀବାତ୍ମା) ଫଳର ସ୍ୱାଦ ଗ୍ରହଣ କରୁଛି । ଆରଟି (ପରମାତ୍ମା) ସେଥିପରି ନିର୍ଲିପ୍ତ ଭାବରେ ଚାହିଁ ରହିଛି । ଏ ଚିତ୍ରାଙ୍କନଟି ତେଣୁ ଆର୍ଯ୍ୟ ସଂସ୍କୃତିର ପ୍ରଭାବର ଫଳଶ୍ରୁତି ଛଡ଼ା ଆଉ କିଛି ନୁହେଁ ।

୯ । ଲୋଥାଲ, କାଲିବଙ୍ଗା, ନାଗେଶ୍ୱର, ହରପ୍ପା ଆଦି ସ୍ଥାନମାନଙ୍କରେ ଭୂରିଭୂରି ଅଗ୍ନିପୂଜାର ସନ୍ଧାନ ମିଳିଛି । ଏଠାକାର ଧ୍ୱଂସାବଶେଷରୁ ଆୟତକ୍ଷେତ୍ରାକୃତିର କମ୍ବା ବୃତ୍ତାକୃତିର ଯଜ୍ଞକୁଣ୍ଡମାନଙ୍କର ଚିହ୍ନ ଆବିଷ୍କାର କରାଯାଇଅଛି । ଯଜ୍ଞରେ ପଶୁବଳି ଦିଆଯାଉଥିବାର ପ୍ରମାଣ ସ୍ୱରୂପ ପଶୁ ଅସ୍ଥି ବିଶେଷ କରି ଅଶ୍ୱ-ଅସ୍ଥି ଇତ୍ୟାଦି ମିଳୁଛି । (୧୮) ତେଣୁ ଏ ଲୋକମାନେ ଅଶ୍ୱର ବ୍ୟବହାର ଯେ ଜାଣିଥିଲେ ଏଥିରେ ସନ୍ଦେହ ନାହିଁ । ବେଦରେ ଅଶ୍ୱ ଓ ଅଶ୍ୱଚାଳିତ ରଥର ବହୁଳ ବର୍ଣ୍ଣନା ଦେଖାଯାଏ । ଆର୍ଯ୍ୟମାନେ ଯେ ସପ୍ତସିନ୍ଧୁ ଦେଶରେ ଅଶ୍ୱର ପ୍ରଚଳନ କରାଇଥିଲେ ଏଥିରେ ସମସ୍ତ ପ୍ରାଚ୍ୟତତ୍ତ୍ୱବିତ୍ ଏକମତ । ତେଣୁ ଏଥିରୁ ଏହି ସତ୍ୟ ଉପନୀତ ହେବ ଯେ ଉକ୍ତ ଯଜ୍ଞକୁଣ୍ଡ ଗୁଡ଼ିକର ସ୍ରଷ୍ଟା ତଥା ଉପାସକ ଆର୍ଯ୍ୟ ଛଡ଼ା ଆଉ କେହି ନୁହନ୍ତି ।

୧୦ । ଇରାମୀୟମାନଙ୍କ ଆବେସ୍ତାରେ ଅଗ୍ନିକୁ କୁହାଯାଇଛି 'ଅତର୍' ବା 'ଅଥର୍' ବୋଲି ହରପ୍ପା ମୃଣ୍ମୟ ମୋହରର ପାଠୋଦ୍ଧାର କରି ରାଓ ତହିଁରେ 'ଅଥର୍' ଲେଖାଥିବା କଥା କହିଛନ୍ତି । ଏହା ଋଗ୍‌ବେଦରେ ଲେଖାଥିବା "ଅର୍କ" ଶବ୍ଦ (ଉଭୟ ଅଗ୍ନି ଓ ସୂର୍ଯ୍ୟ ଅର୍ଥବୋଧକ) ସହିତ ତୁଳନୀୟ । ଆଉ ମଧ୍ୟ କେତେକ ମୋହରର ପାଠୋଦ୍ଧାର

କରି ତହିଁରେ 'ପା' (ପାଳନ-କର୍ତ୍ତା), ଝା (ଝାଣକର୍ତ୍ତା), ଓ ପତ୍ର (ପତି) ଶବ୍ଦ ବ୍ୟବହୃତ ହୋଇଛି ବୋଲି ସେ ମତ ଦେଇଛନ୍ତି । ଏ ଶବ୍ଦଗୁଡ଼ିକ ନିଶ୍ଚିତ ଭାବରେ ବେଦବର୍ଣ୍ଣିତ ଅଗ୍ନି ଦେବଙ୍କର ଐଶ୍ୱର୍ଯ୍ୟ ଓ ବିଭୂତି ସହିତ ସମ୍ପର୍କିତ । (୧୯) ଅତଏବ ହରପ୍ପା ବା ସିନ୍ଧୁ ସଭ୍ୟତାର ଅନ୍ୟ ଅଞ୍ଚଳମାନଙ୍କରେ ପୂଜିତ ହେଉଥିବା ଅଗ୍ନିଦେବ ବେଦ ବର୍ଣ୍ଣିତ ଅଗ୍ନିଙ୍କ ଛଡ଼ା ଆଉ କେହି ନୁହନ୍ତି । ବାସ୍ତବିକ ଋଗ୍‌ବେଦରେ ଅଗ୍ନିଦେବଙ୍କର ଭୂରି ଭୂରି ଆବାହନ କରାଯାଇଅଛି । ଏହାର ପ୍ରଥମ ମନ୍ତ୍ରଟି ସେହି ଅଗ୍ନିଦେବଙ୍କ ଲାଗି ହିଁ ଉଦ୍ଦିଷ୍ଟ । ଏହାଙ୍କ ମାଧ୍ୟମରେ ଅନ୍ୟ ଦେବତାମାନଙ୍କୁ ପୂଜାର ଅର୍ଘ୍ୟ ଦିଆଯାଇଥାଏ । ଏଣୁ ଏହାଙ୍କର ଅନ୍ୟନାମ ହେଉଛି 'ହବ୍ୟବାହନ' । ଅତଏବ, ସିନ୍ଧୁ-ସଂସ୍କୃତି ଓ ଆର୍ଯ୍ୟ-ସଂସ୍କୃତିରେ ଅଗ୍ନିପୂଜାର ପ୍ରାଧାନ୍ୟ ସମାନ ଭାବରେ ଥିବାର ଜଣାଯାଏ । ଏହା ଏ ଦୁଇଟିର ଅନନ୍ୟତାର ଆଉ ଏକ ପ୍ରମାଣ ବୋଲି ମନେହୁଏ ।

୧୧ । ରାଓ ମତ ଆଉ ଗୋଟିଏ ମୃଣ୍ମୟ ମୋହରସ୍ଥ ଚିହ୍ନଲିପିର ପାଠୋଦ୍ଧାର କରି ସେଠାରେ ଅଗ୍ନିଙ୍କୁ 'ସହସଃ' ବୋଲି ଆବାହନ କରାଯାଇଛି ବୋଲି କହିଛନ୍ତି । ଋଗ୍‌ବେଦରେ ଅଗ୍ନିଙ୍କୁ କୁହାଯାଇଛି 'ସହସସ୍ପୁତ୍ର' ବା 'ସାହସିକତାର ସନ୍ତାନ' ବୋଲି । ଏହି 'ସହସସ୍ପୁତ୍ର' ଶବ୍ଦଟି ହରପ୍ପାସ୍ଥ ମୃଣ୍ମୟ ମୋହରରେ ଲେଖାଥିବା 'ସହସଃ' ଶବ୍ଦ ସହିତ ତୁଳନୀୟ । ଏହି ଶବ୍ଦ ଦ୍ୱୟ ମଧ୍ୟରେ ନିଶ୍ଚିତ ଭାବରେ ନିବିଡ଼ ସାମଞ୍ଜସ୍ୟ ରହିଅଛି ଏବଂ ଏ ସାମଞ୍ଜସ୍ୟ ଆର୍ଯ୍ୟ-ସଂସ୍କୃତିର ପ୍ରଭାବର ଫଳଶ୍ରୁତି ଅଟେ ।

୧୨ । ଲୋଥାଲ୍‌ରୁ ମିଳିଥିବା ଗୋଟିଏ ମୃଣ୍ମୟ ମୋହରସ୍ଥ ଚିହ୍ନଲିପିର ପାଠୋଦ୍ଧାର କରି ରାଓ 'ଓକ୍' ଶବ୍ଦଟି ଲେଖା ହୋଇଥିବା କଥା ଆବିଷ୍କାର କରିଛନ୍ତି । ଋଗ୍‌ବେଦରେ ଯଜ୍ଞଶାଳାକୁ କୁହାଯାଇଛି 'ଓକସ୍' । ଏହି ଦୁଇ ଶବ୍ଦର ନିବିଡ଼ ସାମଞ୍ଜସ୍ୟରୁ ଋଗ୍-ବେଦ ବର୍ଣ୍ଣିତ ଯଜ୍ଞଶାଳା କଥା ଏ ଚିହ୍ନଲିପିରେ ଲେଖାଯାଇଛି ବୋଲି ପ୍ରମାଣିତ ହେଉଛି ।

୧୩ । ଆଉ ମଧ୍ୟ, ରାଓଙ୍କ ମତରେ ହରପ୍ପାର ଯଜ୍ଞକୁଣ୍ଡରୁ ଗୋରୁ-ହାଡ଼ ବାହାରିଛି । ଏହା ଗୋମେଧ ଯଜ୍ଞର ସୂଚନା ଦିଏ । ବୈଦିକ ଭାଷାରେ ଏ ଯଜ୍ଞର ନାମ ଥିଲା 'ଗବାମୟନ' । ସେହିପରି ଆଉ ଗୋଟିଏ ହରପ୍ପାସ୍ଥ ମୃଣ୍ମୟ ମୋହରରେ (ସଂଖ୍ୟା ୩୨୦) "ପତ-ଭଗ-ଅର୍କାହ' ଶବ୍ଦଟି ଲେଖା ଯାଇଛି ବୋଲି ଚିହ୍ନଲିପିଟିର ପାଠୋଦ୍ଧାର କରି ରାଓ କହିଛନ୍ତି । ଏହାର ବୈଦିକ ଭାଷାରେ ଅର୍ଥ ହେଲା "ବଳଶାଳୀ ପ୍ରଭୁ ଅର୍କ" । 'ଅର୍କ' ଶବ୍ଦଟି ଉଭୟ ସୂର୍ଯ୍ୟ ଓ ଅଗ୍ନିଙ୍କୁ ବୁଝାଏ । (୨୦) ଏହା ମଧ୍ୟ ବୈଦିକ ସଂସ୍କୃତିର ପ୍ରଭାବ ସୂଚାଇ ଦେଉଅଛି ।

୧୪ । ରାଜସ୍ଥାନସ୍ଥ କାଲିବଙ୍ଗାରେ ଥିବା ମନ୍ଦଦ୍‌-ସ୍ତୂପରୁ (Citadel mound)ରୁ ସାତୋଟି ଅଗ୍ନିକୁଣ୍ଡ ଏକତ୍ର ଥିବାର ଚିହ୍ନ ମିଳିଅଛି । 'ଅର୍କ' ବା ଅଗ୍ନିଙ୍କର ସାତ ଶିଖା ବିଷୟ ଏହା ସୂଚାଇ ଦେଉଛି ବୋଲି ମନେହୁଏ । 'ଅର୍କ'ର ଆଉ ଏକ ଅର୍ଥ ହେଉଛି 'ସୂର୍ଯ୍ୟ' । ସୂର୍ଯ୍ୟଙ୍କର ସାତଟି କିରଣ ଅଛି । ଆଉ ଗୋଟିଏ ଅର୍ଥରେ ସୂର୍ଯ୍ୟ-କିରଣରେ ଥିବା ସାତଟି କୁଣ୍ଡ ସାତ ରଙ୍ଗର ସଙ୍କେତ ଦେଇଥାଇପାରେ । ସେ ଯାହାହେଉ, ଉଭୟ ଅର୍ଥରେ ନେଲେ ହେଁ ଏଥିରେ ଆର୍ଯ୍ୟସଂସ୍କୃତିର ପ୍ରଭାବ ପଡ଼ିଥିବା ବିଷୟ ସୂଚିତ ହେଉଅଛି ।

୧୫ । ଅଗ୍ନି ତିନ ସ୍ଥାନରେ ଥାଆନ୍ତି । ସୂର୍ଯ୍ୟ ରୂପରେ ଥାଆନ୍ତି ଆକାଶରେ । ସାଧାରଣ ଅଗ୍ନି ରୂପରେ ଥାଆନ୍ତି ପୃଥିବୀରେ ଏବଂ ବଡ଼ବାଗ୍ନି ରୂପରେ ଥାଆନ୍ତି ସମୁଦ୍ରରେ । ଅଗ୍ନିଙ୍କର ଏହି ତିନ ସ୍ଥାନରେ ଅବସ୍ଥାନ ହେତୁ ଋଗ୍‌ବେଦରେ ତାଙ୍କୁ କୁହାଯାଇଛି 'ତ୍ରିସଧସ୍ଥ' (ତିନ ଜାଗାରେ ଥିଲାବାଲା) ବୋଲି । ମହେଞ୍ଜୋଦାରୋରେ ଥିବା ଗୋଟିଏ ମୃଣ୍ମୟ ମୋହରରେ ତିନ ମୁଣ୍ଡ ଥିବା ଯେଉଁ ଅଗ୍ନିଙ୍କର ଚିତ୍ର ଅଙ୍କିତ ହୋଇଛି ତାହା ବେଦବର୍ଣ୍ଣିତ ଅଗ୍ନିଙ୍କର 'ତ୍ରିସଧସ୍ଥ' ବା 'ତିନ ସ୍ଥାନରେ ବାସକାରୀ' ନାମଟିର ସାର୍ଥକ କରୁଛି ମାତ୍ର ।

୧୬ । ହରପ୍ପାସ୍ଥ ଗୋଟିଏ ମୃଣ୍ମୟ ମୋହରରେ (ସଂଖ୍ୟା ୩୦୯) ଅଗ୍ନିକୁଣ୍ଡଟିଏ ଗଛରୁ ବାହାରିଥିବାର ଚିତ୍ରଟିଏ ଅଛି । ଋଗ୍‌ବେଦରେ ଅଗ୍ନିଙ୍କୁ 'ଦ୍ରୁଷଦ୍' ବା 'ଦ୍ରୁମଜାତ' ବୋଲି ଆବାହନ କରାଯାଇଅଛି । ଆର୍ଯ୍ୟ ପରମ୍ପରାରେ ଦ୍ରୁମକୁ ଭଗବାନ ହିସାବରେ ପୂଜା କରିବାର ମୂଳ ଭିତ୍ତି ରହିଛି ଏଇଠି । ବୌଦ୍ଧ, ଜୈନ, ହିନ୍ଦୁ ସବୁ ଧର୍ମରେ ବୃକ୍ଷ ପୂଜାର ପ୍ରଚଳନ ରହିଅଛି । ଉପରୋକ୍ତ ଚିତ୍ରଟିରେ ତେଣୁ ଆର୍ଯ୍ୟ ଧର୍ମ-ଧାରଣାର ପ୍ରଭାବ ନିଶ୍ଚିତ ଭାବରେ ପଡ଼ିଛି ବୋଲି ମନେହୁଏ ।

୧୭ । ଆଉ ମଧ୍ୟ ରାଓ ସିନ୍ଧୁ-ସଭ୍ୟତାର କେତୋଟି ମୃଣ୍ମୟ ମୋହରର ଚିତ୍ରଲିପିରୁ ପାଠୋଦ୍ଧାର କରି ତହିଁରେ 'ତ୍ରାତୃ', 'ତର' ଓ 'ପା' ଶବ୍ଦ ପ୍ରୟୋଗ ହୋଇଥିବା କଥା କହିଛନ୍ତି । ଏଗୁଡ଼ିକ ସବୁ ରକ୍ଷା କରିବା ଅର୍ଥରେ ପ୍ରଯୁକ୍ତ । (୨୧) ଋଗ୍‌ବେଦରେ ଅଗ୍ନିଙ୍କୁ 'ତ୍ରାତାରଂ' ବା 'ତ୍ରାଣକର୍ତ୍ତା' ବୋଲି କୁହାଯାଇଅଛି । (୨୨) ଏହି ଚିତ୍ରଲିପିଗୁଡ଼ିକରେ ତେଣୁ ବୈଦିକ ସଂସ୍କୃତିର ପ୍ରଭାବ ପଡ଼ିଥିବାର ସୂଚନା ମିଳେ ।

୧୮ । ଯଜ୍ଞ କଲାବେଳେ ସାତ ଜଣ ପୁରୋହିତ ଦରକାର । ସେଥିପାଇଁ ପରି ଅଗ୍ନିଙ୍କୁ ଆବାହନ କରି କୁହାଯାଇଛି :

ସପ୍ତହୋତାରଃ ସପ୍ତଧା ତ୍ୱା ଯଜନ୍ତି (୨୩)

ଅର୍ଥାତ୍ (ହେ ଅଗ୍ନି !) ସାତ ଜଣ ପୁରୋହିତ ସାତ ପ୍ରକାର ତୁମକୁ ଆରାଧନା କରନ୍ତି । ଏହି ସାତ ଜଣ ପୁରୋହିତ ଅଗ୍ନିଙ୍କ ଆରାଧନା ଲାଗି ନିୟୋଜିତ ହେଉଥିବା କଥା ସିନ୍ଧୁ-ସଭ୍ୟତାର ଗୋଟିଏ ମୁଣ୍ଡସ୍ଥ ମୋହରରୁ ଚିତ୍ରରୁ ଜଣାପଡ଼େ । ଏଥିରେ ଅଶ୍ୱତ୍ଥ ମୂଳ ଥାଇ ବୃକ୍ଷରେ ଅଧିଷ୍ଠିତ ଥିବା ଅଗ୍ନିଦେବଙ୍କର ଚିତ୍ର କରାଯାଇଅଛି । (୨୪) ଯଜ୍ଞ ପଶୁଟିଏ (ଜଙ୍ଗଲ୍ ଛେଳି) ସେଠାରେ ଅର୍ପିତ ହୋଇଛି । ଯଜମାନ ଅଗ୍ନିଙ୍କ ସମ୍ମୁଖରେ ନତ ହୋଇ ଠିଆ ହୋଇଛନ୍ତି । ଆଉ ସାତ ଜଣ ପୁରୋହିତ ମଧ୍ୟ ଠିଆ ହୋଇଛନ୍ତି । ଏମାନେ ବେଦୋକ୍ତ 'ସପ୍ତହୋତା' ଛଡ଼ା ଆଉ କେହି ନୁହନ୍ତି ।

୧୯ । କେତେକ ଗବେଷକ କୁହନ୍ତି ଯେ ସିନ୍ଧୁ ସଭ୍ୟତାର ଲୋକମାନେ ତାମ୍ର ଓ ବ୍ରୋଞ୍ଜର ବ୍ୟବହାର ଜାଣିଥିଲେ ଏବଂ ଲୌହର ବ୍ୟବହାର ଆଦୌ ଜାଣି ନଥିଲେ । ସେମାନଙ୍କ ମତରେ ଆର୍ଯ୍ୟମାନେ ଲୌହର ବ୍ୟବହାର ଜାଣିଥିଲେ ଏବଂ ସେଥିଯୋଗୁଁ ସେମାନେ ସିନ୍ଧୁ-ସଭ୍ୟତାର ଅଧିବାସୀମାନଙ୍କୁ ଅନାୟାସରେ ଯୁଦ୍ଧରେ ପରାସ୍ତ କରିପାରିଥିଲେ । ସିନ୍ଧୁ-ସଭ୍ୟତାର ଧ୍ୱଂସାବଶେଷରୁ ମିଳୁଥିବା ବ୍ରୋଞ୍ଜନିର୍ମିତ ଅସ୍ତ୍ରଶସ୍ତ୍ର, ନିତ୍ୟବ୍ୟବହାର୍ଯ୍ୟ ପଦାର୍ଥ ଆଦିରୁ ଏହା ପ୍ରମାଣିତ ହେଉଛି ବୋଲି ସେମାନେ କୁହନ୍ତି । କିନ୍ତୁ ଏହା ଭ୍ରମାତ୍ମକ ଅଟେ । ବାସ୍ତବିକ ଋଗ୍‌ବେଦରେ ଲୌହର ବର୍ଣ୍ଣନା କୁତ୍ରାପି ଦେଖିବାକୁ ମିଳେ ନାହିଁ । ଅନ୍ୟ ପକ୍ଷରେ ଏଥିରେ 'ଅୟଃ'ର ବର୍ଣ୍ଣନା କରାଯାଇଅଛି, ଯାହାର ବର୍ଣ୍ଣ ଲାଲ୍ ଅଟେ । ଏହା ନିଶ୍ଚୟ ତମ୍ବା କିମ୍ବା ବ୍ରୋଞ୍ଜ ଉଭୟ ହୋଇପାରେ । ଋଗ୍‌ବେଦର ପରବର୍ତ୍ତୀ କାଳରେ ରଚିତ ବୈଦିକ-ସାହିତ୍ୟ, ବିଶେଷ କରି ଯଜୁର୍ବେଦ ଓ ଅଥର୍ବବେଦରେ ହିଁ ଲୌହର ବର୍ଣ୍ଣନା ଦେଖିବାକୁ ମିଳେ । ପ୍ରତ୍ନତତ୍ତ୍ୱବିତ୍ ଅଲ୍‌ଚିନ ଦମ୍ପତି ମଧ୍ୟ ଏହି ମତ ପୋଷଣ କରନ୍ତି । (୨୫) ଏଥିରୁ ପରିଷ୍କାର ବୁଝାପଡୁଛି ଯେ ସିନ୍ଧୁ-ସଭ୍ୟତାରୁ ଆବିଷ୍କୃତ ହୋଇଥିବା ତମ୍ବା କିମ୍ବା ବ୍ରୋଞ୍ଜ ନିର୍ମିତ ପଦାର୍ଥଗୁଡ଼ିକ ସହିତ ଋଗ୍‌ବେଦ ବର୍ଣ୍ଣିତ 'ଅୟଃ'ର ଘନିଷ୍ଠ ସମ୍ପର୍କ ରହିଅଛି । ଲୌହନିର୍ମିତ ଅସ୍ତ୍ରଶସ୍ତ୍ର ଦ୍ୱାରା ଆର୍ଯ୍ୟମାନେ ସିନ୍ଧୁ-ସଭ୍ୟତାର ଲୋକମାନଙ୍କୁ ପରାସ୍ତ କରିଥିଲେ ବୋଲି ଯେଉଁ କଥା କୁହାଯାଉଛି ତାହା ନିଶ୍ଚିତ ଭାବରେ ଭ୍ରମାତ୍ମକ ଅଟେ । ମହାମହୋପାଧ୍ୟାୟ ବାଲଶାସ୍ତ୍ରୀ ହରଦାସଙ୍କ ଭଳି ଗବେଷକ ମଧ୍ୟ ଠିକ୍ ଅନୁରୂପ ମତ ପୋଷଣ କରନ୍ତି । ତାଙ୍କ ମତରେ, "There is no convincing evidence in the Vedic literature to endorse the theory that there was a continuous conflict between the two races called the Aryans and the Dravidas." ଅର୍ଥାତ୍ ଆର୍ଯ୍ୟ ଓ ଦ୍ରାବିଡ଼ ନାମକ ଦୁଇ ଜାତି ମଧ୍ୟରେ ଅବିରତ ଯୁଦ୍ଧ ଲାଗି ରହିଥିଲା, ଏ ମତଟିକୁ ଗ୍ରହଣ କରିବା ପାଇଁ ବୈଦିକ-ସାହିତ୍ୟରେ ବିଶ୍ୱାସଯୋଗ୍ୟ ଦୃଢ଼ ପ୍ରମାଣ ନାହିଁ । (୨୬)

ଉପସଂହାର କ୍ରମରେ ଏତିକି କୁହାଯାଇପାରେ ଯେ, ଉପରୋକ୍ତ ବଳିଷ୍ଠ ପ୍ରମାଣମାନଙ୍କ ଦୃଷ୍ଟିରେ ସିନ୍ଧୁ-ସଂସ୍କୃତି ଯେ ଦ୍ରାବିଡ଼-ସଂସ୍କୃତି ନୁହେଁ ଏ କଥା ସୁସ୍ପଷ୍ଟ । ବରଂ ଏହା ଯେ ଆର୍ଯ୍ୟ-ସଂସ୍କୃତି-ଆଧାରିତ ଏବଂ ତଦ୍ଦ୍ୱାରା ପରିପୁଷ୍ଟ ସେଥିରେ ତିଳେମାତ୍ର ସନ୍ଦେହ ନାହିଁ । ଆଉ ମଧ୍ୟ କୁହାଯାଇପାରେ ଯେ, ଦକ୍ଷିଣ ଭାରତର ଦ୍ରାବିଡ଼-ସଂସ୍କୃତି ଆଦୌ ସିନ୍ଧୁ-ସଂସ୍କୃତିଭିତ୍ତିକ ନୁହେଁ । ସେଠାକାର ବିଭିନ୍ନ ଭାଷା ଓ ସଂସ୍କୃତି ଅତି ପ୍ରାଚୀନ କାଳରୁ ସେଠାରେ ବାସ କରି ଆସୁଥିବା ନୂତନ ପ୍ରସ୍ତର-ଯୁଗର ଲୋକମାନଙ୍କର ଉତ୍ତରଦାୟାଦ ମାତ୍ର ଏବଂ ବର୍ଷ ବର୍ଷ ଧରି ତଦୁପରି ଆର୍ଯ୍ୟ ସଂସ୍କୃତିର ପ୍ରଭାବ ଫଳରେ ଏହା ପରିପୁଷ୍ଟ, ପରିବର୍ଦ୍ଧିତ ଓ ପରିମାର୍ଜିତ ହୋଇ ଆସିଅଛି । ତେବେ ଏହି ଦୃଷ୍ଟିକୋଣରୁ ଆଉ ଅଧିକତର ଗବେଷଣା ହେବା ଆବଶ୍ୟକ ଯାହା ଫଳରେ କି ଅନେକ ଅନାବିଷ୍କୃତ ତଥ୍ୟ ପଦାକୁ ଫୁଟି ବାହାରି ପାରିବ ।

## ଗ୍ରନ୍ଥସୂଚୀ

(୧) ଅବଶ୍ୟ ୧୯୬୪ ମସିହା ରେ ଡ଼. ପି. ଅଗ୍ରଓ୍ୱାଲ୍ ବମ୍ବେସ୍ଥିତ Tata Institute of Fundamental Researchର ପରୀକ୍ଷାଗାରରେ ପରୀକ୍ଷା ଫଳରେ ଏ ସଭ୍ୟତାକୁ ଖ୍ରୀ: ପୂ: ୨୩୦୦ରୁ ଖ୍ରୀ. ପୂ: ୧୭୫୦ ମଧ୍ୟରେ ସୀମିତ କରିଛନ୍ତି । ମେସୋପଟାମିଆର ଗ୍ରନ୍ଥୀୟ ସୂଚନାରୁ ଜଣାପଡୁଛି ଯେ, ସେଠାକାର ଅଧିବାସୀମାନେ ମେଲୁହରୁ (ବୋଧହୁଏ ସିନ୍ଧୁ ଉପତ୍ୟକା କମ୍ବା ପଶ୍ଚିମ ଭାରତ) ସେମାନଙ୍କର କେତେକ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ଆମଦାନୀ କରୁଥିଲେ । ପ୍ରଥମ ଗ୍ରନ୍ଥୀୟ ସୂଚନା ମିଳେ ଆକେଡ଼ର ସାଗିନ୍‌ଙ୍କ (ଖ୍ରୀ ପୂ: ୨୩୦୦) ସମୟରେ । ଏ ପ୍ରକାର ସାହିତ୍ୟ ଉର୍ ବଂଶରେ (ଖ୍ରୀ: ପୂ: ୨୧୩୦-୨୦୩୦) ଖୁବ୍ ବୃଦ୍ଧି ପାଇଛି । ଏହା ପରେ ପରେ ଲାର୍ସା ବଂଶରେ (ଖ୍ରୀ: ପୂ: ୨୦୩୦-୧୭୭୦) ଏହାର ପରିସମାପ୍ତି ଘଟିଅଛି । ଏ ସମସ୍ତ ରେଡ଼ିଓ କାର୍ବନ୍ ପରୀକ୍ଷାରେ ଅଗ୍ରଓ୍ୱାଲଙ୍କ ଦ୍ୱାରା କଳ୍ପିତ ସମୟ (ଖ୍ରୀ. ପୂ: ୨୩୦୦-୧୭୫୦) ସହିତ ପ୍ରାୟ ମେଳ ଖାଇ ଯାଉଅଛି । ଏ ସମ୍ପର୍କରେ ଥିବା ବିଭିନ୍ନ ମତାମତକୁ ବିଚାର କରି ଏ ସଭ୍ୟତାର ଆରମ୍ଭକୁ ଖ୍ରୀ: ପୂ: ୨୫୦୦ ବର୍ଷରେ ଅବସ୍ଥାପିତ କଲେ, ସତ୍ୟର ଅପଳାପ ହେବ ନାହିଁ ବୋଲି ମନେହୁଏ । ଏହାର ଶେଷ ସମୟସୀମା ଯେ ଖ୍ରୀ: ପୂ: ୧୭୫୦, ଏ ବିଷୟରେ ସବୁ ପ୍ରତ୍ନତତ୍ତ୍ୱବିତ୍‌ମାନେ ଏକମତ ଅଟନ୍ତି । ଏ ସମ୍ପର୍କରେ ଦେଖନ୍ତୁ— Bridget and Raymond Allchin; The Birth of Indian Civilization, P—140.

(୨) ଏହି ସାତ ନଦୀ ହେଲେ ସିନ୍ଧୁ, ଶତଦ୍ରୁ (ଆଧୁନିକ ସଟ୍‌ଲେଜ୍), ପରୁଷ୍ଣୀ (ଆଧୁନିକ ରାଭି), ଅଶିକ୍ନୀ (ଆଧୁନିକ ଚେନାବ୍), ଆର୍ଯ୍ୟକୀୟା (ଆଧୁନିକ ବେଆସ୍),

ବେତସ୍ତା (ଆଧୁନିକ ଝେଲମ୍) ଓ ସରସ୍ୱତୀ (ଆଧୁନିକ ଘଗ୍‌ଗର ଯାହାର ଧାରା ଲୁପ୍ତ) ।

(୩) Bridget and Raymond Allchin : op. cit. p. 136.

(୪) ଋଗ୍‌ବେଦ : ୧୦।୬୫।୧୧ ।

(୫) D. D. Kosambi : The Culture and Civilization of Ancient India In Historical Line (1977), p. 68.

(୬) D. D. Kosambi : op. cit. p. 65.

(୭) ଦେଖନ୍ତୁ :—S. R Rao, Key-Note Address at the seminar on 'Sacrifice in India—Concept & Evolution' held on 3rd, 4th and 5th March, 1986.

(୮) S. R. Rao : "Lothal and the Indus Civilizations", Asia Publishing House, Bombay (1973), p. 139.

(୯) ଏହି 'ଦୃଷଦ୍' ଶବ୍ଦରୁ ଉତ୍ପନ୍ନ ହୋଇଛି ଦୃଷଦ୍‌ବତୀ ଯାହାକି ସରସ୍ୱତୀ ନଦୀର ନାମାନ୍ତର ଅଟେ । ଏହି ନଦୀର ଉଭୟ ତଟରେ ଅଗ୍ନିଦେବଙ୍କର ପୂଜା କରାଯାଉଥିଲା ଏବଂ ଏହା ଫଳରେ ଏହାର ତଟଦେଶ ଅଗ୍ନି-କୁଣ୍ଡରେ ଭରି ଯାଉଥିଲା । ତେଣୁ ଏହାର ନାମ ହେଲା ଦୃଷଦ୍‌ବତୀ । ଆର୍ଯ୍ୟମାନେ ପୂର୍ବାଭିମୁଖୀ ହୋଇ ଗତି କରି ଯେତେବେଳେ ଗଙ୍ଗା ଓ ଯମୁନା ଦୋଆବ ଅଞ୍ଚଳରେ ପହଞ୍ଚିଲେ, ସେହି ସମୟରେ ରଚିତ ଶତପଥ ବ୍ରାହ୍ମଣରେ (ଖ୍ରୀ: ପୂ: ୧୦୦୦-୮୦୦) ତେଣୁ ଯଥାର୍ଥରେ କୁହାଯାଇଛି 'ଦୃଷଦ୍‌ବତୀ' ନଦୀତଟରୁ ଅଗ୍ନିଙ୍କୁ ପୂର୍ବଦେଶକୁ ଅଣାଯାଇଥିଲା । ଅଗ୍ନିଙ୍କର ପୂର୍ବଦେଶକୁ ଆଗମନ ତେଣୁ ଆର୍ଯ୍ୟମାନଙ୍କର ପୂର୍ବାଭିମୁଖୀ ଗତି ସହିତ ସମ୍ବନ୍ଧିତ ଅଟେ ।

(୧୦) ଏହି 'ଦଶରାଜ୍ଞଃ' ଯୁଦ୍ଧଟି ଦଶ ଜଣ ରାଜାଙ୍କ ମଧ୍ୟରେ ପାରୁଷ୍ଣୀ ନଦୀ (ଆଧୁନିକ ରାଭି) ତୀରରେ ହୋଇଥିଲା । ଗୋଟିଏ ପକ୍ଷରେ ଥିଲେ ଭରତ ବା ପୁରୁମାନଙ୍କର ରାଜା ସୁଦାସ । ତାଙ୍କୁ ସମର୍ଥନ କରିଥିଲେ ତାଙ୍କ ପୁରୋହିତ ବଶିଷ୍ଠ । ଅନ୍ୟ ପକ୍ଷରେ ଥିଲେ ଅନ୍ୟ ସଂପ୍ରଦାୟର ଦଶ ଜଣ ରାଜା । ସେମାନଙ୍କର ପୌରୋହିତ୍ୟ କରୁଥିଲେ ବିଶ୍ୱାମିତ୍ର । ସେମାନଙ୍କ ମଧ୍ୟରେ ଆର୍ଯ୍ୟେତର ରାଜା 'ପାଖ୍‌ତ୍ୟ' ବୋଲି ଜଣେ ଥିଲେ ଆଧୁନିକ ପଶ୍ଚିମ ପାକିସ୍ତାନ ଓ ଆଫଗାନିସ୍ଥାନରେ ବାସ

କରୁଥିବା 'ପୃଷ୍ଟୁ' ଭଷ'ଭଷୀମାନେ ଏହି ପାଖ୍ତୀଙ୍କର ବଂଶଧର ହୁଏତ ହୋଇ-ପାରନ୍ତି । ଏ ଯୁଦ୍ଧରେ ସୁଦାସଙ୍କର ବିଜୟ ହୋଇଥିଲା । ଏହି 'ଦାଶରାଜ୍ଞଃ' ଯୁଦ୍ଧ ଓ ତହିଁରେ ଭରତମାନଙ୍କର ବିଜୟକୁ ଅବଲମ୍ବନ କରି ପରବର୍ତ୍ତୀ କାଳରେ ବ୍ୟାସଦେବ ହୁଏତ ମହାଭାରତ ରଚନା କରିଛନ୍ତି ବୋଲି କେହି କେହି ମତ ଦେଇଥାନ୍ତି ।

(୧୧) ଋଗ୍‌ବେଦ : ୬।୬୦।୬ ।

(୧୨) Bridget Allchin and Raymond Allchin : The Birth of Indian Civilization P. 153.

(୧୩) ଋଗ୍‌ବେଦ ୧୦।୬୫।୧୧ ।

(୧୪) ପ୍ରାଚୀନ ଆର୍ଯ୍ୟମାନଙ୍କ ମଧ୍ୟରେ ମୃତ ବ୍ୟକ୍ତିକୁ କବର ଦେବା କମ୍ବା ପୋଡ଼ି ଦେବା ଏ ଉଭୟ ପ୍ରଥା ପ୍ରଚଳିତ ଥିଲା । 'କାଳିବଙ୍ଗା'ସ୍ଥ କେତେକ କବରରୁ ମାନବାସ୍ଥି ମିଳୁନାହିଁ; ବରଂ ଭସ୍ମ ମିଳୁଛି । ଅନ୍ୟତ୍ର ଅବଶ୍ୟ କବରସ୍ଥିତ ନରକଙ୍କାଳମାନ ମିଳୁଅଛି, ଏ ସମ୍ପର୍କରେ ଦେଖନ୍ତୁ : Bridget Allchin and Raymond Allchin, : op. cit : pp. 138-139 and p. 154.

(୧୫) ବି.ବି.ଲାଲ୍ ଓ ଏସ୍.ପି. ଗୁପ୍ତଙ୍କ ଦ୍ୱାରା ସମ୍ପାଦିତ : 'Frontiers of the Indus Civilization' ସ୍ଥିତ ଲାଲ୍‌ଙ୍କ ରଚିତ ପ୍ରବନ୍ଧ 'Some Reflections on the Structural Remains at Kalibanga' ପୃଷ୍ଠା—୫୪ ଦେଖନ୍ତୁ ।

(୧୬) S. R Rao : Lothal and the Indus Civilization (1973) : Asia Publishing House, Bombay p. 139.

(୧୭) Bridget Allchin and Raymond Allchin : op. cit. p. 137.

(୧୮) S. R. Rao : op. cit : p. 124.

(୧୯) S. R. Rao : Decipherment of the Indus Script (1982), Asia Publishing House, p. 276.

(୨୦) Key-note Address by S. R. Rao on the topic "Sacrifice in India : Concept & Evolution" delivered at a Bombay University Seminar from the 3rd to the 5th March 1986.

(୨୧) S. R Rao—Key-note Address. op. cit.

(୨୨) ଋଗ୍‌ବେଦ , ୧।୯।୪୪ ।

(୨୩) ତୈତ୍ତିରୀୟ ସଂହିତା : ୧।୫।୩ ।

(୨୪) 'ଅଗ୍ନିଦେବ' ଅଶ୍ୱତ୍ଥ ବୃକ୍ଷରେ ଅବସ୍ଥାନ କରିବା କଥାଟି ବୈଦିକ 'ଅଶ୍ୱତ୍ଥ-ସମ୍ଭାର-ସଗ୍ରହ' ଗଳ୍ପ ଉପରେ ଆଧାରିତ । ଥରେ ଅଗ୍ନି ଅନ୍ୟ ସମସ୍ତ ଦେବମାନଙ୍କଠାରୁ ଦୂରେଇ ଗଲେ । ସେ ଗୋଟିଏ ଅଶ୍ୱର ରୂପ ଗ୍ରହଣ କରି ଅଶ୍ୱତ୍ଥ ବୃକ୍ଷରେ ବସିରହିଲେ । ଏହାରି ଫଳରେ ବୃକ୍ଷଟିର ନାମ ପରେ ହେଲା 'ଅଶ୍ୱତ୍ଥ' ଅର୍ଥାତ୍ ଅଶ୍ୱରୂପୀ ଅଗ୍ନି ବାସ କରୁଥିବା ବୃକ୍ଷ । ସେଥିପାଇଁ ଆର୍ଯ୍ୟ ଧାର୍ମିକ ପରମ୍ପରାରେ ଅଶ୍ୱତ୍ଥ ବୃକ୍ଷର ପ୍ରାଧାନ୍ୟ ରହି ଆସିଅଛି । ବୈଦିକ ଯୁଗର ବହୁବର୍ଷ ପରେ ଖ୍ରୀ: ପୂ: ଷଷ୍ଠ ଶତାବ୍ଦୀରେ ଗୌତମ ବୁଦ୍ଧ ସେହି ଅଶ୍ୱତ୍ଥ ବୃକ୍ଷ ତଳେ ଦିବ୍ୟଜ୍ଞାନ ଲାଭ କରି ବୁଦ୍ଧତ୍ୱ ପାଇଥିଲେ ବୋଲି କୁହାଯାଇଅଛି । ଏବେ ମଧ୍ୟ ହିନ୍ଦୁ, ବୌଦ୍ଧ, ଜୈନ ସମସ୍ତେ, ଅଶ୍ୱତ୍ଥ ବୃକ୍ଷକୁ ପୂଜା କରିଥାନ୍ତି । ଯଜ୍ଞ ଲାଗି 'ଅଶ୍ୱତ୍ଥ-ସମ୍ଭାର' ସଂଗ୍ରହର ଅର୍ଥ ହେଲା ସାଙ୍କେତିକ ଭାବରେ ତହିଁରୁ ଅଗ୍ନିକୁ ଆଣି ଯଜ୍ଞାସୀନ କରାଇବା । ଏ ସମ୍ପର୍କରେ ଦେଖନ୍ତୁ : S. R. Rao : Key-note Address. op cit.

(୨୫) Bridget and Raymond Allchin : Op. Cit. PP 153—154.

(୨୬) Balsastri Hardas : Glimpses of the Vedic Nation (English translation by S. S. Apte) p. 82.



# ଚତୁର୍ଥ ଅଧ୍ୟାୟ

## ସିନ୍ଧୁ-ସଂସ୍କୃତିରେ ଧର୍ମ

ସିନ୍ଧୁ-ସଂସ୍କୃତି (ଖ୍ରୀ: ପୂ. ୨୫୦୦ରୁ ଖ୍ରୀ: ପୂ. ୧୭୫୦) କହିଲେ ଲୋକେ ସାଧାରଣତଃ ବୁଝନ୍ତି ସିନ୍ଧୁ ଉପତ୍ୟକାରେ ମହେଞ୍ଜୋଦାରୋ ଓ ହରପ୍ପାଠାରେ ଯେଉଁ ନଗର-ସଭ୍ୟତାର ଆବିଷ୍କାର ସର୍ବପ୍ରଥମେ ୧୯୨୧ରୁ ୧୯୨୫ ପର୍ଯ୍ୟନ୍ତ ଭୂଖନନ ଫଳରେ ହୋଇଥିଲା, ତାହାର ସଂସ୍କୃତି । ଏହା କିନ୍ତୁ ଭ୍ରମାତ୍ମକ । ଅବଶ୍ୟ ଭୂଖନନ ଫଳରେ ସର୍ବପ୍ରଥମେ ସିନ୍ଧୁ-ପ୍ରଦେଶସ୍ଥ (ବର୍ତ୍ତମାନ ପାକିସ୍ଥାନରେ) ସିନ୍ଧୁ ନଦୀର ଦକ୍ଷିଣ ତୀରରେ ମହେଞ୍ଜୋଦାରୋଠାରେ ଏକ ନଗର-ସଭ୍ୟତାର ଧ୍ୱଂସାବଶେଷ ବାହାରିଥିଲା । ସେହିପରି ସିନ୍ଧୁ ନଦୀର ଉପନଦୀ ରାଭି ନଦୀର ବାମ ତୀରରେ ହରପ୍ପାଠାରେ (ବର୍ତ୍ତମାନ ପାକିସ୍ଥାନରେ) ମଧ୍ୟ ଅନୁରୂପ ନଗର ସଭ୍ୟତାର ଧ୍ୱଂସାବଶେଷ ଦେଖାଦେଇଥିଲା । କିନ୍ତୁ ପରେ ପରେ ଉଭୟ ଭାରତ ଓ ପାକିସ୍ଥାନରେ ଭୂଖନନ ଫଳରେ ଏ ପର୍ଯ୍ୟନ୍ତ ୭୪ ଗୋଟି ସ୍ଥାନରେ ଅନୁରୂପ ସଭ୍ୟତାର ଧ୍ୱଂସାବଶେଷମାନ ମିଳିଲାଣି । ରାଜସ୍ଥାନର କାଳିବଙ୍ଗା, ଗୁଜୁରାଟର ଲୋଥାଲ, ରୋଜଡ ଓ ଦଶଲପୁର, ପଞ୍ଜାବର ରୂପାର୍ ଓ ଉତ୍ତରପ୍ରଦେଶର ଆଲମ୍ଗିର୍ ଏବଂ ପାକିସ୍ଥାନର କୋଟ୍-ଦିଜି, ଅମ୍ରି ଓ ସୁତ୍କ-ଙୋ ସ୍ଥାନମାନ ସେମାନଙ୍କ ମଧ୍ୟରୁ ଅନ୍ୟତମ । ଲୋଥାଲର ବିଶେଷତ୍ୱ ହେଉଛି ସେଠାରେ ଗୋଟିଏ ପୋତାଶ୍ରୟର ଧ୍ୱଂସାବଶେଷ ମିଳୁଛି । ଆହୁ ମଧ୍ୟ ୧୯୮୧ ମସିହାଠାରୁ ଏ ପର୍ଯ୍ୟନ୍ତ ଛଅ ଥର କଚ୍ଛର ସମୁଦ୍ର ଉପକଣ୍ଠରେ ଥିବା ଦ୍ୱାରକା ଦ୍ୱୀପ ନିକଟରେ ପ୍ରତ୍ନତତ୍ତ୍ୱବିତ୍ ଏସ୍. ଆର୍. ରାଓଙ୍କ ତତ୍ତ୍ୱାବଧାନରେ ସମୁଦ୍ର ତଳେ ଯେଉଁ ଭୂଖନନ କରାଯାଇଛି, ତା’ ଫଳରେ ସେଠାରେ ହରପ୍ପୀୟ ମୃଣ୍ମୟ ମୋହରର ଅନୁରୂପ ମୋହର ସମେତ ଗୋଟିଏ ନଗର ସଭ୍ୟତାର ଧ୍ୱଂସାବଶେଷ ମିଳୁଛି । ଷଷ୍ଠ ଥର ଖନନ ଫଳରେ ତା ୧୧।୧୨।୮୭ ଦିନ ଆଉ ଏକ ବିସ୍ମୟକର ଧ୍ୱଂସାବଶେଷ ଆବିଷ୍କୃତ ହୋଇଛି । ତାହା ହେଉଛି ୨୫୦ ମିଟର ଦୀର୍ଘ ଗୋଟିଏ ପ୍ରାଚୀରର ଧ୍ୱଂସାବଶେଷ । ଏ ପର୍ଯ୍ୟନ୍ତ ସମୁଦ୍ର ଗର୍ଭରୁ ଯାହା କିଛି ଧ୍ୱଂସାବଶେଷ ବାହାରିଥିଲା, ତନ୍ମଧ୍ୟରେ ଏହି ପ୍ରାଚୀରର ଧ୍ୱଂସାବଶେଷଟି ହେଉଛି ସର୍ବପ୍ରଥମ ସ୍ଥାୟୀକୀର୍ତ୍ତି । (୧-କ) ଜଳମଗ୍ନ ହୋଇଥିବା ପ୍ରାଚୀନ ଦ୍ୱାରକା ନଗରୀର ଏହା ଏକ ଅଂଶ ବୋଲି କେହି କେହି ମତ ଦିଅନ୍ତି । ସେହିପରି କାଳିବଙ୍ଗାର ବିଶେଷତ୍ୱ ହେଉଛି ଏହି ଯେ, ସେଠାରେ ଉଭୟ ହରପ୍ପୀୟ କାଳର ଓ ପ୍ରାକ୍-ହରପ୍ପୀୟ କାଳର ସଭ୍ୟତାର ଧ୍ୱଂସାବଶେଷ ମିଳୁଛି । ଶଂସିତ ଅଧ୍ୟାୟରେ ତେଣୁ ଏ ସମସ୍ତ ସଂସ୍କୃତିକୁ ସିନ୍ଧୁ-ସଂସ୍କୃତି ବୋଲି ଗ୍ରହଣ କରି ଆଲୋଚନା କରାଯାଉଅଛି ।

ଆମେ ବର୍ତ୍ତମାନ ଧର୍ମ କହିଲେ ଯାହା ବୁଝୁ ଏବଂ ଧର୍ମ ଓ ଧର୍ମନିରପେକ୍ଷ ବସ୍ତୁ ମଧ୍ୟରେ ଯେପରି ଭାବରେ ପ୍ରଭେଦ ନିର୍ଣ୍ଣୟ କରୁ, ସିନ୍ଧୁ-ସଂସ୍କୃତି କାଳରେ (ଖ୍ରୀ: ପୂ: ୨୫୦୦ ଶତାବ୍ଦୀ) ଆମେ ଯଦି ସେପରି ପ୍ରଭେଦ ଅନ୍ୱେଷଣ କରିବା, ତେବେ ଆମକୁ ସେଥିରେ ନିରାଶ ହେବାକୁ ପଡ଼ିବ । ଏହା ହେଉଛି ପ୍ରାଗୈତିହାସିକ ଯୁଗର ଘଟଣା । ତାହା ହେଉଛି ସଭ୍ୟତା ଓ ସଂସ୍କୃତିର ଆଦି ଉନ୍ମେଷକାଳ । ସେତେବେଳେ ସମାଜକୁ ଯେଉଁ ମାନସିକତା ଆଚ୍ଛନ୍ନ କରି ରଖିଥିଲା, ସେଥିରେ ଧର୍ମ ଓ ଧର୍ମେତର ବିଷୟବସ୍ତୁ ମଧ୍ୟରେ ସୀମାରେଖା ନଥିଲା କହିଲେ ଚଳେ । ଏହି ପରିପ୍ରେକ୍ଷୀରେ ସେତେବେଳେ ସମାଜରେ ଧାର୍ମିକ ସ୍ଥିତି କ'ଣ ଥିଲା, ତାହା ନିର୍ଣ୍ଣୟ କରିବା ଏକ କ୍ଲେଶକର ବ୍ୟାପାର ବୋଲି ମନେହୁଏ । ଡ଼ଃ ଭଟ୍ସ୍ (Vats) ଏହି ଅସୁବିଧାଟି ପ୍ରତି ଲକ୍ଷ୍ୟକରି ଯଥାର୍ଥରେ କହିଛନ୍ତି

"It is difficult to form a clear idea about the true contents of the Harappan religion or religions from the materials unearthed at Indus valley sites. Further, it must be remembered that it is a great problem to draw a line between the secular and religious concepts of such an early culture." (୧)

ଉପରୋକ୍ତ ପଙ୍କ୍ତିରେ ଭଟ୍ସ୍ 'ହରପ୍ପୀୟ ଧର୍ମ ବା ଧର୍ମସମୂହ' ବୋଲି ଉଲ୍ଲେଖ କରିବାର ଯଥେଷ୍ଟ ତାତ୍ପର୍ଯ୍ୟ ଅଛି । ସେତେବେଳେ ସୈନ୍ଧବ ଉପତ୍ୟକାର ସମାଜରେ ଗୋଟିଏ ଧର୍ମ ଥିଲା ନା ବହୁ ଧର୍ମ ଥିଲା ସେ ବିଷୟରେ ବହୁ ବାଦାନୁବାଦ ରହିଅଛି । ବିଭିନ୍ନ ସ୍ଥାନରୁ ମିଳୁଥିବା ମୋହର, ମୃଣ୍ମୟ କିମ୍ବା ତାମ୍ର ମୂର୍ତ୍ତି, କବରମାନଙ୍କରୁ ମିଳୁଥିବା ବସ୍ତୁସମୂହରୁ ଯାହା ପ୍ରମାଣ ମିଳୁଛି, ସେଥିରୁ ଜଣାଯାଏ ଯେ ବହୁପ୍ରକାର ଧର୍ମ-ଧାରଣା ସେତେବେଳେ ସମାଜକୁ ଆଚ୍ଛନ୍ନ କରି ରଖିଥିଲା । ଏହାର ଚିକିନିଖି ଆଲୋଚନା ଅବଶ୍ୟ ପରେ କରାଯିବ । ବାସ୍ତବିକ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏ ଯେଉଁ ସମୟର ଘଟଣା, ସେତେବେଳେ ଖାଲି ସଂପ୍ରଦାୟ ଭେଦରେ ମଧ୍ୟ ନୂତନ ଧର୍ମ-ଧାରଣା ସୃଷ୍ଟି ହେବା ସ୍ୱାଭାବିକ । କାରଣ ସଂପ୍ରଦାୟର ଦୈନନ୍ଦିନ ଜୀବନ ସହିତ ଏହା ଥିଲା ନିବିଡ ଭାବରେ ସମ୍ପର୍କିତ; ଏଣୁ ଦୈନନ୍ଦିନ ଜୀବନ-ଯାପନର ବିଭିନ୍ନତାକୁ ନେଇ ପୃଥକ୍ ପୃଥକ୍ ଧର୍ମଗତ ମାନସିକତାର ସୃଷ୍ଟି ହେବା ଖୁବ୍ ସ୍ୱାଭାବିକ । ଏ ତ ଗଲା ଏକ ଜାତି ମଧ୍ୟରେ ବିଭିନ୍ନ ସଂପ୍ରଦାୟର କଥା । କିନ୍ତୁ ଜାତି (race) ଯଦି ପୃଥକ୍ ହେଲା, ତେବେ ଧର୍ମଗତ ମାନସିକତାର ପାର୍ଥକ୍ୟ ଅଧିକତର ସ୍ପଷ୍ଟ ଭାବରେ ପ୍ରତିଭାତ ହେବା ସ୍ୱାଭାବିକ । ସାଧାରଣ ଭାବରେ ସିନ୍ଧୁ-ସଂସ୍କୃତିର ଲୋକେ ଗୋଟିଏ ଜାତିର (race) ହୋଇଥିବେ ବୋଲି ଯେଉଁ ଧାରଣା ଥିଲା, ତାହା ଏବେ ନୃତାତ୍ତ୍ୱିକ ଗବେଷଣା ଫଳରେ ଅପସାରିତ ହୋଇଗଲାଣି ।

ଏହି ସଭ୍ୟତା ଆଚ୍ଛନ୍ନ କରି ରଖିଥିବା ବିଭିନ୍ନ ସ୍ଥାନମାନଙ୍କରୁ କବର ତଳୁ ବା ଅନ୍ୟତ୍ର ଯେଉଁ ନର-କଙ୍କାଳମାନ ମିଳିଛି, ସେଗୁଡ଼ିକର ନୃତାତ୍ତ୍ୱିକ ପରୀକ୍ଷାପରେ ଜଣାଯାଇଛି ଯେ, ନିମ୍ନଲିଖିତ ଚାରି ଜାତିର (race) ଲୋକ ସେଠାରେ ବାସ କରୁଥିଲେ ।

୧ । ଅଷ୍ଟ୍ରାଲଏଡ୍ ଜାତୀୟ

୨ । ମଙ୍ଗୋଲୀୟ

୩ । ଭୂମଧ୍ୟ-ସାଗରୀୟ

୪ । ଆଲ୍‌ପାଇନ୍ ଜାତୀୟ । (୨)

ଏ ସମ୍ପର୍କରେ ପ୍ରଶ୍ନ ଉଠିପାରେ, କ'ଣ ଖାଲି ଏହି ଚାରୋଟି ଜାତିର (race) ଲୋକ ସେଠାରେ ଥିଲେ ନା ଆଉ ଅନ୍ୟ ଜାତିର ଲୋକ ମଧ୍ୟ ଥିଲେ ? ସମସ୍ତ କବରମାନ ଖୋଳାହୋଇ ନର-କଙ୍କାଳମାନ ପରୀକ୍ଷା କଲେ ଯାଇ ଏ ସମ୍ପର୍କରେ କିଛିଟା ସତ୍ୟ ହୁଏତ ବାହାରି ପାରିବ । କିନ୍ତୁ ତାହା ମଧ୍ୟ ନିର୍ଭୁଲ ହେବନାହିଁ । କାରଣ ସେତେବେଳେ ମୃତବ୍ୟକ୍ତିକୁ କବର ଦେବା ଓ 'ଶବ'ର ସତ୍କାର ପରେ ଚିତା-ଭସ୍ମକୁ କବର ଦେବା ଏହି ଉଭୟ ପ୍ରଥା ପ୍ରଚଳିତ ଥିବାପରି ମନେହୁଏ । ବୈଦିକ ଆର୍ଯ୍ୟମାନେ ମଧ୍ୟ ଏହି ଉଭୟ ପ୍ରକାରେ ମୃତବ୍ୟକ୍ତିର ଅନ୍ତ୍ୟେଷ୍ଟି କ୍ରିୟା କରୁଥିଲେ । (୩) ଭସ୍ମୀଭୂତ ଶରୀରର କଙ୍କାଳ ମିଳିବ ବା କୁଆଡ଼ୁ ? ଏହିଭଳି ଭାବରେ ବହୁ ଜାତି (race) ଦ୍ୱାରା ଅଧ୍ୟୁଷିତ ହେବା ଫଳରେ ତତ୍‌ତ୍ୟ ଧର୍ମ-ଧାରଣା ବହୁମୁଖୀ ଥିବାର ସମ୍ଭାବନା ଅଧିକ । କିନ୍ତୁ ଏତେ ପ୍ରକାର ଧର୍ମ-ଧାରଣାର ଅବସ୍ଥିତି ସତ୍ତ୍ୱେ ସିନ୍ଧୁ-ସଂସ୍କୃତିରେ ସର୍ବଧର୍ମର ସମନ୍ୱୟ ଘଟିଥିବା ପରି ମନେହୁଏ । କୌଣସି ଗୋଟିଏ ସୂତ୍ର ଥିଲି ଯାହାକି ଏ ସମସ୍ତ ଧର୍ମ ଧାରଣାର ପୁଷ୍ପଗୁଡ଼ିକୁ ଏକତ୍ର ଗ୍ରଥିତ କରି ଗୋଟିଏ ସୁନ୍ଦର ମାଳା ରୂପରେ ପ୍ରତିଭାତ କରାଇ ପାରିଥିଲି । ଏହା ଫଳରେ ସବୁ ଜାତିର ଲୋକେ ତ ଖାଲି ଏକତ୍ର ବାସ କରୁ ନଥିଲେ; ସମସ୍ତଙ୍କର ଶ୍ମଶାନ ବା କବରଭୂମି ଥିଲି ଗୋଟିଏ, ଯାହାକି ଜନବସତିର ୨୦୦ରୁ ୩୦୦ ମିଟର ଦୂରରେ ଅବସ୍ଥିତ ଥିଲି । (୪) ସିନ୍ଧୁ-ସଂସ୍କୃତିର ଏହି ଧର୍ମଗତ ସହନଶୀଳତାକୁ ଲକ୍ଷ୍ୟକରି ଡକ୍ଟର ନବୀନ କୁମାର ସାହୁ ଓ ଶ୍ରୀ ସୁରେନ୍ଦ୍ର ମହାନ୍ତି ଯଥାର୍ଥରେ କହିଛନ୍ତି :

"ଏଥିରୁ ମନେହୁଏ, ମଧ୍ୟପ୍ରାଚ୍ୟର ଅଞ୍ଚଳମାନଙ୍କରେ ଯୁଗେ ଯୁଗେ ସେତେବେଳେ ନାନା ଅତ୍ୟାଚାର ଓ ଉତ୍ପୀଡ଼ନ ହୋଇଛି, ସେଥିରୁ ରକ୍ଷାପାଇବା ପାଇଁ ପଳାଇ ଆସି ଲୋକେ ହୁଏତ ଏହି ସିନ୍ଧୁ-ଉପତ୍ୟକାରେ ନିଜ ନିଜ ଧର୍ମ ଓ ମତବାଦ ନିର୍ବାଧରେ ଓ ନିଃଶଙ୍କରେ ପାଳନ କରିଅଛନ୍ତି । ଏଣୁ ମନେହୁଏ, ସିନ୍ଧୁ-ରାଷ୍ଟ୍ରରେ କୌଣସି ରାଷ୍ଟ୍ର-ଦେବତା ନଥିଲେ । ପ୍ରତ୍ୟେକ ବ୍ୟକ୍ତି ଓ ପରିବାର ନିଜ ନିଜର ସ୍ୱତନ୍ତ୍ର ଧର୍ମ ଓ ପୂଜା ଅନୁବର୍ତ୍ତନ କରୁଥିଲେ ।" (୫)

୧୯୪୬ ମସିହାରେ ହରପ୍ପାର ଗୋଟିଏ କବର ଖୋଳିବା ପରେ ସେଥିରୁ ନଷ୍ଟପ୍ରାୟ ଗୋଟିଏ କାଷ୍ଠନିର୍ମିତ ଶବାଧାର ମଧ୍ୟରେ ଶବକୁ ରଖାଯାଇଥିବାର ଦେଖାଯାଇଥିଲା । ଏ ପ୍ରକାର କବର ଦେବା ପ୍ରଥା ସମକାଳୀନ ସିନ୍ଧୁ ସଭ୍ୟତାର ଅନ୍ୟାନ୍ୟ କବର ଦେବା ପ୍ରଥାଠାରୁ ପୃଥକ୍ । ଏହା କିନ୍ତୁ ଖ୍ରୀ: ପୂ: ତୃତୀୟ ସହସ୍ରାବ୍ଦୀରେ ପ୍ରଚଳିତ ସୁମେରୀୟ କବର ଦେବା ପ୍ରଥାର ଅନୁରୂପ । ଏଥିରୁ ଅନୁମିତ ହୁଏ ଯେ, ବୋଧହୁଏ ଶଂସିତ ମୃତବ୍ୟକ୍ତି ଜଣକ ହୋଇଥିବେ ସୁମେରୀୟ ବିଦେଶୀ । ସେ କୌଣସି କାରଣରୁ ଆସି ହରପ୍ପାରେ ବାସ କରୁଥିଲେ ଏବଂ ସ୍ୱାଧୀନ ଭାବରେ ନିଜ ଧର୍ମର ପ୍ରଥା ଅନୁସାରେ ତାଙ୍କୁ କବର ଦିଆଯାଇଥିଲା । ଅନ୍ୟାନ୍ୟ କବରମାନ ପରୀକ୍ଷା କଲେ ଯେ ଏହିଭଳି ଅନେକ କୌତୂହଳୋଦ୍ଦୀପକ ତଥ୍ୟମାନ ବାହାରିବ, ସେଥିରେ ସନ୍ଦେହ ନାହିଁ । ଏଥିରୁ, ତେଣୁ ଆମେ ଏହି ସିଦ୍ଧାନ୍ତରେ ଉପନୀତ ହେବା ଯେ, ସିନ୍ଧୁ-ସଭ୍ୟତାରେ ବହୁଧର୍ମର ସହାବସ୍ଥାନ ସଙ୍ଘଟିତ ହୋଇଥିଲା ଏବଂ ବିଭିନ୍ନ ଧର୍ମମାର୍ଗୀମାନେ ନିଜନିଜର ଧର୍ମ-ବିଶ୍ୱାସ ଓ ତଦନୁସାରୀ ସାମାଜିକ ପ୍ରଥାମାନଙ୍କୁ ନିର୍ବାଧରେ ପାଳନ କରୁଥିଲେ । ଜଗତରେ ଧର୍ମ-ଧାରଣାର ଅଙ୍କୁରୋଦ୍‌ଗମ ସମୟରେ ଭାରତଭୂମିରେ ଏହି ଯେଉଁ ସର୍ବ-ଧର୍ମ-ସହନଶୀଳତା ଭାବର ଉଦ୍ରେକ ହୋଇଥିଲା, ତାହା ଯଥାର୍ଥରେ ପରବର୍ତ୍ତୀ କାଳରେ ଯୁଗେ ଯୁଗେ ଭାରତୀୟ ସଂସ୍କୃତିକୁ ମାର୍ଗ-ଦର୍ଶନ ଦେଇଆସିଛି । ସିନ୍ଧୁ-ସଂସ୍କୃତିର ଏହି ବୈଶିଷ୍ଟ୍ୟ ହେଉଛି ସମ୍ପୂର୍ଣ୍ଣ ଭାରତୀୟ । ଏହାର ପ୍ରାଣ ଗଢ଼ାହୋଇଥିଲା ଭାରତୀୟ ଜଳବାୟୁରେ ଏବଂ ଆତ୍ମା ଜାଗ୍ରତ ରହିଥିଲା ଭାରତୀୟ ଜନମାନସରେ । ସମକାଳୀନ ପୃଥିବୀର ଅନ୍ୟାନ୍ୟ ସଂସ୍କୃତିଠାରୁ ଏହା ଥିଲା ସ୍ୱତନ୍ତ୍ର ଏବଂ ଏହି ସ୍ୱତନ୍ତ୍ରତାରେ ହୋଇଥିଲା ଏହା ମହାନ୍ । ସିନ୍ଧୁ-ସଂସ୍କୃତିର ଏହି ମହାନ୍ ସ୍ୱାତନ୍ତ୍ର୍ୟକୁ ଉପଲକ୍ଷ୍ୟ କରି ପ୍ରାଚ୍ୟତତ୍ତ୍ୱବିତ୍ ଗର୍ଡନ୍ ଚାଇଲ୍ଡ (Gordon Childe) ଯଥାର୍ଥରେ କହିଛନ୍ତି :

"India produced a thoroughly individual and independent civilization of her own, technically the peer of the rest." (୭)

ବହୁ ଜାତିର ଫୁଲରେ ଏକ ହିଁ ସୌରଭ, ବହୁ ଦେବତାରେ ଏକ ମହାନ୍ ଦେବତାଙ୍କର ସନ୍ଧାନ ମଧ୍ୟ ଥିଲା ବୈଦିକ ସଂସ୍କୃତିର ମୂଳାଧାର । ଋଗ୍‌ବେଦର ଋଷି ତେଣୁ ଯଥାର୍ଥରେ କହିଛନ୍ତି

"ଏକଂ ସଦ୍‌ବିପ୍ରାଃ ବହୁଧା ବଦନ୍ତି; ଏକଂ ସତ୍ୟଂ ବହୁଧା କଳ୍ପୟନ୍ତି ।"

ଅର୍ଥାତ୍ "ଜ୍ଞାନୀଲୋକମାନେ ସେହି ଏକ ସତ୍ୟକୁ ବହୁପ୍ରକାର କୁହନ୍ତି; ସେ ଏକ ସତ୍ୟକୁ ବହୁପ୍ରକାର କଳ୍ପନା କରନ୍ତି ।" ଉଭୟ ବେଦରେ ଓ ବେଦୋତ୍ତର ଉପନିଷଦୀୟ

ଦର୍ଶନରେ 'ବହୁରେ ଏକତ୍ୱ' ଚନ୍ତାଧାରାର ଯେଉଁ ଭୂୟୋବିକାଶ ଘଟିଛି, ତାହାର ମୂଳବୀଜ ସିନ୍ଧୁ-ସଂସ୍କୃତିରେ ନିହିତ ଥିଲା ଭଳି ମନେହୁଏ । ବୈଦିକ ସଂସ୍କୃତି ଓ ଧର୍ମ-ଧାରଣା ସହିତ ସିନ୍ଧୁ-ସଂସ୍କୃତିର ବହୁଳ ସୌସାଦୃଶ୍ୟକୁ ଲକ୍ଷ୍ୟକରି ଅନେକ ପ୍ରାଚ୍ୟତତ୍ତ୍ୱବିତ୍ ମତ ଦିଅନ୍ତି, ହୁଏତ ସିନ୍ଧୁ-ସଂସ୍କୃତି ବୈଦିକ ଆର୍ଯ୍ୟସଂସ୍କୃତିର ଅଂଶବିଶେଷ ହୋଇପାରେ । ସିନ୍ଧୁ-ଉପତ୍ୟକାରେ ହେଉଥିବା ଅଗ୍ନିଦେବ, ତ୍ରିମୂର୍ତ୍ତି, ପଶୁପତି, ଶିବ, ପୃଥ୍ୱୀଦେବୀ ଓ ମାତୃଦେବୀଙ୍କର ଆରାଧନାର ପ୍ରମାଣ ଆର୍ଯ୍ୟ-ସଂସ୍କୃତିର ଜମବିକାଶ ହୋଇଥିବା ସ୍ଥାନମାନଙ୍କରେ ସର୍ବତ୍ର ଦେଖିବାକୁ ମିଳିଥାଏ । ଅତଏବ ଏହା ଉଭୟ ସଂସ୍କୃତିର ପରସ୍ପର ସହିତ ଥିବା ଘନିଷ୍ଠ ସମ୍ପର୍କର ସୂଚନା ଦେଉଛି । ବାଳଶାସ୍ତ୍ରୀ ହରିଦାସ ଡ଼ଃ ପ୍ରାଣନାଥଙ୍କ ସହିତ ସହମତ ହୋଇ କୁହନ୍ତି ଯେ ସିନ୍ଧୁ-ସଂସ୍କୃତି ବୈଦିକ ସଂସ୍କୃତିର ଅଂଶବିଶେଷ ଅଟେ ଏବଂ ଏହିଠାରୁ ସାମାଜିକ ସଂସ୍କୃତି ଓ ସଭ୍ୟତା ସୁମେରୁ ଅଞ୍ଚଳକୁ ଯାଇ ସେଠାରେ ସୁମେରୀୟ ସଭ୍ୟତା ଗଠନ କରିଥିଲା । (୭) ଶିବଦତ୍ତ ଜ୍ଞାନୀ ମଧ୍ୟ ସେହିପରି ଦୃଢ଼ ଭାବରେ ମତଦେଇ କହିଛନ୍ତି ଯେ ସିନ୍ଧୁ-ସଂସ୍କୃତିକୁ ଆର୍ଯ୍ୟମାନଙ୍କଠାରୁ ପୃଥକ୍ କରିବା କିଛି ସରଳ କାର୍ଯ୍ୟ ନୁହେଁ । (୮) ଶିବଦତ୍ତ ଜ୍ଞାନୀ ସିନ୍ଧୁ-ସଂସ୍କୃତିର ଧର୍ମ ସମ୍ପର୍କରେ ଦେଇଥିବା ନିମ୍ନଲିଖିତ ମତ ମଧ୍ୟ ବିଶେଷ ଭାବରେ ପ୍ରଣିଧାନଯୋଗ୍ୟ :

"ଏହି ଲୋକମାନଙ୍କର ଧର୍ମ ସମ୍ପର୍କରେ ବହୁତ କିଛି ଜଣାପଡ଼ୁଛି । ସେ ସମୟରେ ମୂର୍ତ୍ତିପୂଜାର ପ୍ରାବଲ୍ୟ ଥିଲା; କାରଣ ବହୁତଗୁଡ଼ିଏ ମୂର୍ତ୍ତି ମଧ୍ୟ ମିଳୁଛି । ପୃଥ୍ୱୀଦେବୀଙ୍କ ମୂର୍ତ୍ତି ବହୁ ସ୍ଥାନରୁ ମିଳୁଛି । ଏଥିରୁ ଜଣାପଡ଼ୁଛି ଯେ ପୃଥ୍ୱୀ ମୁଖ୍ୟ ଦେବତା ଥିଲେ । ଦୁଇଟି ଶିଙ୍ଗଥିବା ମୂର୍ତ୍ତିଟିଏ ମିଳିଛି ଯାହାକି କେତେକ ପଣ୍ଡିତଙ୍କ ମତାନୁସାରେ ପଶୁପତି ଶିବଙ୍କର ମୂର୍ତ୍ତି ଅଟେ । ବୃକ୍ଷ ତଥା ପଶୁଙ୍କୁ ମଧ୍ୟ ପୂଜା କରାଯାଉଥିଲା । ମୃତ ବ୍ୟକ୍ତିଙ୍କୁ ଉଭୟ କବର ଦିଆଯାଉଥିଲା ଓ ସତ୍କାର କରାଯାଉଥିଲା ।" (୯)

ଏହିସବୁ ପ୍ରମାଣ ତଥା ଆଉ କେତେକ ପ୍ରମାଣ ( ସର୍ବମୋଟ ୨୦ଟି) ଦର୍ଶାଇ ଲେଖକ "ସିନ୍ଧୁ-ସଂସ୍କୃତି ଆର୍ଯ୍ୟ ନା ଦ୍ରାବିଡ଼ ?" ଶୀର୍ଷକ ଗୋଟିଏ ପ୍ରବନ୍ଧରେ ମତବ୍ୟକ୍ତ କରିଛନ୍ତି ଯେ "ଏହା ଯେ ଆର୍ଯ୍ୟ ସଂସ୍କୃତି ଆଧାରିତ ଏବଂ ତଦ୍ଦ୍ୱାରା ପରିପୁଷ୍ଟ, ଏଥିରେ ସନ୍ଦେହ ନାହିଁ । ଆଉ ମଧ୍ୟ କୁହାଯାଇପାରେ ଯେ ଦକ୍ଷିଣ ଭାରତର ଦ୍ରାବିଡ଼ ସଂସ୍କୃତି ଆଦୌ ସିନ୍ଧୁ-ସଂସ୍କୃତି-ଭିତ୍ତିକ ନୁହେଁ ।" (୧୦) ଏଣୁ ସେସବୁର ପୁନରୁକ୍ତି ଏଠାରେ ନ କରି ଏତିକି କହିଲେ ଯଥେଷ୍ଟ ହେବ ଯେ, ସିନ୍ଧୁ-ସଂସ୍କୃତି ଓ ଆର୍ଯ୍ୟ-ସଂସ୍କୃତି ମଧ୍ୟରେ ସୌସାଦୃଶ୍ୟ ରହିଅଛି । ଏହା ଗୋଟିଏ ସଂସ୍କୃତିର ଅପର ସଂସ୍କୃତି ଉପରେ ପ୍ରଭାବର ଫଳ ନା ଉଭୟ ଏକ ସଂସ୍କୃତିର ଅଂଶବିଶେଷ, ତାହା ଅବଶ୍ୟ ଏ ପର୍ଯ୍ୟନ୍ତ ମଧ୍ୟ ବିବଦମାନ ହୋଇ ରହିଅଛି । ସିନ୍ଧୁ-ସଭ୍ୟତାର ଧ୍ୱଂସାବଶେଷରୁ ମିଳିଥିବା ମୃତ୍ପୂର୍ଣ୍ଣ ମୋହରମାନଙ୍କରେ ଥିବା

ଚିତ୍ରଲିପିର ଯେପର୍ଯ୍ୟନ୍ତ ନିର୍ଭୁଲ ଅଧ୍ୟୟନ ହୋଇପାରିନାହିଁ, ସେପର୍ଯ୍ୟନ୍ତ ଏ ବିବଦମାନ ବିଷୟର ଚୂଡ଼ାନ୍ତ ସମାଧାନ ହେବା କଷ୍ଟକର ବ୍ୟାପାର । ବି. ବି. ଲାଲ୍ ଓ ଏସ୍. ଆର୍ ରାଓଙ୍କ ଭଳି ପ୍ରାଚ୍ୟତତ୍ତ୍ୱବିତ୍ମାନେ ଏ ଲିପିର କେତେକାଂଶରେ ପାଠୋଦ୍ଧାର ଅବଶ୍ୟ କରିଛନ୍ତି । କିନ୍ତୁ ସେମାନଙ୍କର ପାଠୋଦ୍ଧାର ସମ୍ବଳିତ ମତ ଏପର୍ଯ୍ୟନ୍ତ ନିର୍ବିବାଦରେ ସର୍ବତ୍ର ଗୃହୀତ ହୋଇନାହିଁ । ଏହିସବୁ ଦୃଷ୍ଟିରୁ ସିନ୍ଧୁ-ସଂସ୍କୃତିରେ ଧର୍ମ ସମ୍ବନ୍ଧୀୟ ଆଲୋଚନା କେବଳ କେତେକ କଳ୍ପନାଜଳ୍ପନା ଓ ଯୁକ୍ତିସମ୍ମତ ସମ୍ଭାବନାରେ ପର୍ଯ୍ୟବସିତ ହେବାଛଡ଼ା ଗତ୍ୟନ୍ତର ନାହିଁ ।

ସିନ୍ଧୁ-ସଭ୍ୟତାର ଧ୍ୱଂସାବଶେଷ ସ୍ୱରୂପ ଯେଉଁ ମୃଣ୍ମୟ ମୋହରମାନ, ମୂର୍ତ୍ତିମାନ, ଯଜ୍ଞ-କୁଣ୍ଡମାନ ମିଳୁଛି, ସେଥିରୁ ଉକ୍ତ ସଭ୍ୟତାର ଅଧିବାସୀମାନେ କେଉଁ କେଉଁ ଦେବ-ଦେବୀଙ୍କର ଆରାଧନା କରୁଥିଲେ ଏବଂ ସେମାନଙ୍କର କି କି ପ୍ରକାର ଧର୍ମବିଶ୍ୱାସ ଥିଲା, ସେ ବିଷୟରେ ଏକ ମୋଟାମୋଟି ଧାରଣା କରାଯାଇପାରିବ, ତାହା ହେଲା—

କ—ମହାମାତୃଶକ୍ତିର ଆରାଧନା
ଖ—ବୃକ୍ଷପୂଜା
ଗ—ଅଗ୍ନିଦେବଙ୍କ ଆରାଧନା
ଘ—ପଶୁପତି ବା ଶିବ ବା ପ୍ରଜାପତିଙ୍କ ଆରାଧନା
ଙ—ପ୍ରାଣୀଙ୍କ ଠାରେ ଦେବତ୍ୱର ସନ୍ଧାନ
ଚ—'ଆତ୍ମା' ଉପରେ ବିଶ୍ୱାସ
ଛ—ସ୍ୱସ୍ତିକ ପୂଜା
ଜ—ସର୍ବଧର୍ମ ସହନଶୀଳତା (୧୧)

ଏହି ଧର୍ମଧାରଣାର ପ୍ରତ୍ୟେକ ବିଭାବ ଉପରେ ନିମ୍ନ ଅନୁଚ୍ଛେଦମାନଙ୍କରେ ପୃଥକ୍ ଭାବରେ ଆଲୋଚନା କରାଯାଉଅଛି ।

## ମହାମାତୃଶକ୍ତିର ଆରାଧନା :

ଆଦିମାନବ ଯେତେବେଳେ କୃଷିକାର୍ଯ୍ୟ କରି ଶସ୍ୟ ଉତ୍ପାଦନ କଲା, ଗୃହପାଳିତ ପଶୁପକ୍ଷୀମାନଙ୍କୁ ପୋଷିଲା ଓ ପରିବାର ଗଢ଼ି ସନ୍ତାନସନ୍ତତିମାନ ଜନ୍ମକଲା, ସେତେବେଳେ ସେ ପ୍ରଜନନ ଶକ୍ତି ପ୍ରତି ଆଗ୍ରହୀ ହୋଇଉଠିଲା । ଏହି ପ୍ରଜନନ ଶକ୍ତିକୁ କିପରି ତୃପ୍ତ କରି ନିଜର ସୌଭାଗ୍ୟୋଦୟରେ ତାଙ୍କୁ ନିୟୋଗ କରିପାରିବ, ସେଥିପାଇଁ ସେ ବ୍ୟଗ୍ର ହୋଇଉଠିଲା । ଏହି ବ୍ୟଗ୍ରତାର ଫଳଶ୍ରୁତି ସ୍ୱରୂପ ଆସି ଦେଖାଦେଲା ବିଭିନ୍ନ ପୂଜାବିଧି ମାଧ୍ୟମରେ ସେହି ପ୍ରଜନନ ଶକ୍ତି ବା ମହାମାତୃଶକ୍ତିର ଆରାଧନା । ମାଆ ଛଡ଼ା ଯେ ଆଉ କେହି ଜଣେ ସନ୍ତାନ ସୃଷ୍ଟିରେ ଦାୟୀ

ଏ ଧାରଣା ତା'ର ସେତେବେଳେ ନଥିଲା । ଏବେ ବି ଅସଭ୍ୟ ଲୋକଙ୍କର ଧାରଣା ଯେ ସନ୍ତାନ ସୃଷ୍ଟି କରିବାରେ ପୁରୁଷର କିଛି ଦାୟିତ୍ୱ ନାହିଁ; ମାଆ ହିଁ ସନ୍ତାନର ସୃଷ୍ଟି-କର୍ତ୍ତ୍ରୀ । ସନ୍ତାନ ସୃଷ୍ଟିରେ ପୁରୁଷ ଓ ନାରୀର ସହବାସ ପ୍ରକ୍ରିୟାର ଯେ କିଛି ହିଁ ସମ୍ପର୍କ ନାହିଁ, ଏହି ଧାରଣାର ବଶବର୍ତ୍ତୀ ହୋଇ ପରେ ବହୁତ ଲୋକେ ବିଶ୍ୱାସ କଲେ ଯେ ମହାପୁରୁଷ-ମାନଙ୍କ ଜନ୍ମରେ ପୁରୁଷର କିଛି ହିଁ କର୍ତ୍ତବ୍ୟ ନାହିଁ । ଗୌତମ ବୁଦ୍ଧ, ଯୀଶୁଖ୍ରୀଷ୍ଟ, ଏପରିକି ରାମକୃଷ୍ଣ ପରମହଂସଦେବଙ୍କ ଜନ୍ମ ସମ୍ପର୍କରେ ଏହିଭଳି କିମ୍ବଦନ୍ତୀମାନ ଶୁଣିବାକୁ ମିଳିଥାଏ । ଏହି ମହାମାତୃଶକ୍ତି ବା ପ୍ରଜନନ-ଶକ୍ତିକୁ ସନ୍ତୁଷ୍ଟ କରିବା ପାଇଁ ଯେଉଁ ପୂଜାବିଧିର ବିଧାନ ଥିଲା, ତନ୍ମଧ୍ୟରେ ଯୌନକ୍ରିୟା ଏକ ଅଙ୍ଗସ୍ୱରୂପ ଗୃହୀତ ହୋଇଥିଲା । ଏହି ଯୌନକ୍ରିୟାକୁ ଏକ ଧାର୍ମିକ ଅନୁଷ୍ଠାନ ରୂପେ ଗ୍ରହଣ କରାଯାଉଥିଲା । ବ୍ୟାବିଲୋନ୍‌ର 'ଇସ୍ଥର୍', ଇଜିପ୍ଟର 'ହାଥୋର୍' ଓ ଆସିରିଆର 'ଆଷ୍ଟୋରେଥ୍' ହେଉଛନ୍ତି ଏହି ମହା-ମାତୃ ଦେବତା । ପ୍ରାଚୀନ ମାତୃଦେବତାଙ୍କ ଲାଗି ହେଉଥିବା ପୂଜାରେ ଏଭଳି ଯଥେଚ୍ଛ ଯୌନାଚାର ପ୍ରଚଳିତ ଥିଲା ଯେ ତାହା ସମାଜ ଉପରେ ଅଶେଷ କୁପ୍ରଭାବ ପକାଇଥିଲା । ଏଣୁ ବାଇବେଲରେ (Old Testament) ତାହାର ଘୋର ନିନ୍ଦାବାଦ କରାଯାଇଥିବା କଥା ମ୍ୟାକେଞ୍ଜି ଦର୍ଶାଇଛନ୍ତି । ସେ ସମ୍ପର୍କରେ ତାଙ୍କର ଉକ୍ତି ହେଲା :—

"The worship of all mother goddesses in ancient times was accompanied by revolting immoral rites which are referred to in condemnatory terms in various passages of the Old Testament." (୧୨)

ସିନ୍ଧୁ-ସଭ୍ୟତାର ଧ୍ୱଂସାବଶେଷମାନ ପରୀକ୍ଷା କଲେ ସେଠାରେ ମଧ୍ୟ ସେହିଭଳି ଅନୁରୂପ 'ମହାମାତୃଶକ୍ତି' ବା 'ମହାନାରୀଶକ୍ତି' ର ଆରାଧନା କରାଯାଉଥିବାର ପ୍ରମାଣ ମିଳେ । ପ୍ରଥମ ପ୍ରମାଣ ମହେଞ୍ଜୋଦାରୋରୁ ବାହାରିଥିବା ଗୋଟିଏ ପୁଷ୍କରିଣୀର 'ଧ୍ୱଂସାବ-ଶେଷ'ରୁ । ଏହା ପୋଡ଼ା ଇଟାରେ ନିର୍ମିତ ୨୩ ଫୁଟ × ୩୯ ଫୁଟ × ୮ ଫୁଟ ଆୟତନ ବିଶିଷ୍ଟ ଏକ ବିରାଟ ପୁଷ୍କରିଣୀ । ଏହାକୁ କେହି କେହି ପ୍ରତ୍ନତାତ୍ତ୍ୱିକ ଏକ ବିରାଟ ସର୍ବ-ସାଧାରଣ ସ୍ନାନ-ପୁଷ୍କରିଣୀ ଏବଂ ଏହାର ହୁଡ଼ା ଉପରେ ଗ୍ରେଟ ଗ୍ରେଟ ଘରମାନଙ୍କୁ ସ୍ନାନାଗାର ବୋଲି କୁହନ୍ତି । ସିନ୍ଧୁ ନଦୀକୁ ଲାଗି ତା'ର ଦକ୍ଷିଣପାର୍ଶ୍ୱରେ ମହେଞ୍ଜୋଦାରୋ ନଗର ଅବସ୍ଥିତ । ସିନ୍ଧୁ ନଦୀରେ ପ୍ରଚୁର ଜଳସମ୍ପଦ ଥିବାବେଳେ ନଗରବାସୀମାନଙ୍କ ଲାଗି ଏକ ସର୍ବସାଧାରଣ ସ୍ନାନପୁଷ୍କରିଣୀ ଖନିତ ହୋଇଥିବା କଥା ସହଜରେ ବିଶ୍ୱାସ କରି ହେଉନାହିଁ । ଅତଏବ, ଏହି ପୁଷ୍କରିଣୀ ଅନ୍ୟ କେଉଁ କାର୍ଯ୍ୟ ଲାଗି ଉଦ୍ଦିଷ୍ଟ ଥିବା-ପରି ମନେହୁଏ । କୋସାମ୍ବୀଙ୍କ ମତରେ ଏହା ହେଉଛି ଏକ ପବିତ୍ର ଧର୍ମୀୟ ପୁଷ୍କରିଣୀ,

ଯାହାର ନାମ 'ପୁଷ୍କର' ଅଟେ । ଏଠାରେ ମହାନାରୀଶକ୍ତିର ପ୍ରତୀକସ୍ୱରୂପା ସୁନ୍ଦର ରମଣୀମାନେ ରହୁଥିଲେ । ସେମାନେ ଥିଲେ ଜଳସୁନ୍ଦରୀ ବା 'ଅପ୍‌ସରା' । ଏହାର ପବିତ୍ର ଜଳରେ ସ୍ନାନ କରି ଏହି ସୁନ୍ଦରୀ ନାରୀମାନଙ୍କ ସହିତ ଯୌନକ୍ରିୟାରେ ପ୍ରବୃତ୍ତ ହେବା ସେତେବେଳେ ଏକ ଧାର୍ମିକ କର୍ମ-ବିଧି ଥିବାପରି ମନେ ହୁଏ । (୧୩) ପ୍ରାଚୀନ ସୁମେରରେ (ବର୍ତ୍ତମାନର ଇରାକ୍) 'ଇଷ୍ଟର' ଦେବୀଙ୍କ ପୀଠରେ ଦେବଦାସୀମାନେ ରହୁଥିଲେ ବୋଲି 'ଇସ୍ଥାବାଣୀ' ଉପାଖ୍ୟାନରେ ଲେଖା ଅଛି । (୧୩-କ) ଏ ପ୍ରକାର ଧାର୍ମିକ ପ୍ରଜନନ-ବିଧି ବାସ୍ତବିକ ଦାକ୍ଷିଣାତ୍ୟର ଦେବାଳୟମାନଙ୍କରେ ଖ୍ରୀଷ୍ଟପର ବହୁ ଶତାବ୍ଦୀ ପର୍ଯ୍ୟନ୍ତ ଚାଲିଥିଲା ଏବଂ ଏଥିରେ ରାଜକୁଳ ଓ ଅନ୍ୟାନ୍ୟ ସମ୍ଭ୍ରାନ୍ତକୁଳର ଯୁବତୀମାନେ ଅଂଶଗ୍ରହଣ କରୁଥିଲେ । ପରବର୍ତ୍ତୀ କାଳରେ ସୃଷ୍ଟି ହୋଇଥିବା 'ଦେବଦାସୀପ୍ରଥା'ର ପୃଷ୍ଠଭୂମି ବୋଧହୁଏ ରହିଛି ଏଇଠି । ବୈଦିକ ଅଶ୍ୱମେଧ ଯଜ୍ଞରେ ଥିବା କେତେକ ବିଧିବିଧାନରୁ ଏହି ପ୍ରଜନନ ଶକ୍ତିର ପୂଜା ସମ୍ପର୍କରେ ସୂଚନା ମଧ୍ୟ ମିଳିଥାଏ । ଯଜ୍ଞାଶ୍ୱର ତଣ୍ଟି ଚିପି ତାକୁ ମାରି ଦିଆଯାଏ ଓ ଯଜ୍ଞପୀଠରେ ଗୋଟିଏ ଚାଦର ଉପରେ ତାକୁ ଶୁଆଇ ଦିଆଯାଏ । ରାଜାଙ୍କର ପାଟରାଣୀ ଆସି ତା' ପାଖରେ ସ୍ତ୍ରୀ'ଭାବ ଆଚରଣ କରି ଶୁଅନ୍ତି ଏବଂ ସାଙ୍କେତିକ ପ୍ରଜନନ କ୍ରିୟାରେ ମଗ୍ନ ରହନ୍ତି । କେହି ଏ ଦୃଶ୍ୟ ଦେଖିପାରିବେ ନାହିଁ ବୋଲି ଅଶ୍ୱ ଓ ରାଣୀଙ୍କୁ ପରଦାର ଅନ୍ତରାଳରେ ରଖାଯାଇଥାଏ । ସେତେବେଳେ ପୁରୋହିତ ସ୍ପଷ୍ଟ-ଭାବରେ ଏ ମନ୍ତ୍ରଟିକୁ ବୋଲିଥା'ନ୍ତି :

ଅଶ୍ୱସ୍ୟ ଶିଶ୍ନଂ ମହିଷୀ ଉପସ୍ଥେ ନିଧତ୍ତେ,
ବୃଷା ବାଜୀ ରେତୋଧା ରେତୋ ଦଧାତୁ ଇତି । (୧୩-ଖ)

ଅର୍ଥାତ୍ 'ରାଣୀ ଅଶ୍ୱର ଜନନେନ୍ଦ୍ରିୟକୁ ସ୍ୱୀୟ ଉପସ୍ଥରେ ଧାରଣ କରିଛନ୍ତି । ତାଙ୍କର ସ୍ୱାମୀ ସାଜି ବୀର୍ଯ୍ୟବାନ୍ ଅଶ୍ୱ ବୀର୍ଯ୍ୟ ଦାନ କରନ୍ତୁ ।' ଆଉ ଗୋଟିଏ ବୈଦିକ ଯଜ୍ଞ ଅଛି, ଯାହାର ନାମ ହେଉଛି 'ମହାବ୍ରତ' । ଏଥିରେ ଋଗ୍‌ବେଦୀୟ ହୋତା ଦୋଳିରେ ଝୁଲୁଥାନ୍ତି ଏବଂ ଏହି ଅନୁଷ୍ଠାନରେ ବହୁତ ଅଶ୍ଳୀଳ ବାକ୍ୟର ଉଚ୍ଚାରଣ କରାଯାଇଥାଏ । ଏହି ଅଶ୍ଳୀଳ ବାକ୍ୟ ମଧ୍ୟରୁ ଆଶ୍ରମର କୌଣସି ଜଣେ ଶିଷ୍ୟଙ୍କର ଜଣେ ବେଶ୍ୟା ସହିତ ଦୈହିକ ମିଳନର ଦୃଶ୍ୟ ମଧ୍ୟ ବର୍ଣ୍ଣିତ ହୋଇଥାଏ ।ଏହି ଅଶ୍ଳୀଳ ଗାନ ପରେ ବାସ୍ତବ କ୍ଷେତ୍ରରେ ମଧ୍ୟ ସମସ୍ତଙ୍କ ସମ୍ମୁଖରେ ଜଣେ ଶିଷ୍ୟଙ୍କର ଜଣେ ବେଶ୍ୟା ସହିତ ଦୈହିକ ମିଳନ ସଂଘଟିତ କରାଇ ଦିଆଯାଇଥାଏ । ଏସବୁ ସେହି ପ୍ରଜନନ-ଶକ୍ତିର ଆରାଧନାର ସଙ୍କେତ ହେଉଛି ଯାହାର ଆଦିମ-ସ୍ତରର ସନ୍ଧାନ ଆମେ ପାଇବା ସିନ୍ଧୁ-ଉପତ୍ୟକାରେ । ଏହା ସହିତ ପୁରାଣବର୍ଣ୍ଣିତ ରାସକ୍ରୀଡ଼ାର କ'ଣ ସମ୍ପର୍କ ଅଛି କି ନାହିଁ, ତାହା ଅବଶ୍ୟ ଗବେଷଣାସାପେକ୍ଷ । ଆହୁରି ଅଧିକତର ଗବେଷଣା-

ସାପେକ୍ଷ ମଧ୍ୟ ହୋଇଛି ରଥାରୂଢ଼ ଜଗନ୍ନାଥଙ୍କ ସମ୍ମୁଖରେ ଅଶ୍ଳୀଳ ସଙ୍ଗୀତ ଗାନ କରିବାର ପରମ୍ପରା ।

ଏହି ଧ୍ୱଂସାବଶେଷର ପ୍ରାୟ ପ୍ରତ୍ୟେକ ଘରୁ ମୃଣ୍ମୟ ନାରୀମୂର୍ତ୍ତିମାନ ମିଳିଛନ୍ତି । ସେମାନଙ୍କ ମଧ୍ୟରୁ କେତେକ ଗର୍ଭବତୀ ଏବଂ ଆଉ କେତେକ ସନ୍ତାନ ସନ୍ତତିମାନଙ୍କ ଦ୍ୱାରା ପରିବେଷ୍ଟିତ । ଏ ନାରୀମୂର୍ତ୍ତିମାନ ପ୍ରଜନନ-କ୍ରିୟାର ପ୍ରତୀକ ମହାମାତୃଶକ୍ତି ବୋଲି ମନେ ହୁଅନ୍ତି । କେତେକ ତତ୍ତ୍ୱବିଦଙ୍କ ମତରେ ଏଗୁଡ଼ିକ ଖେଳନା ସାମଗ୍ରୀ ମଧ୍ୟ ହୋଇ-ପାରନ୍ତି । ତାହା କିନ୍ତୁ ଠିକ୍ ନୁହେଁ । ଖେଳନା ସାମଗ୍ରୀର ବିଭିନ୍ନତା ଏଥିରେ ନାହିଁ ଏବଂ ଏଗୁଡ଼ିକ ପ୍ରଚୁର ସଂଖ୍ୟାରେ ସବୁ ଘରୁ ପ୍ରାୟ ମିଳୁଛି । ଏଣୁ ଏଗୁଡ଼ିକ ନିଶ୍ଚିତ ଭାବରେ ଆରାଧନାର ବସ୍ତୁ ହୋଇଥିବ । ଶିବଦତ୍ତ ଜ୍ଞାନୀଙ୍କ ମତରେ ଏ 'ପୃଥିବୀଦେବୀ' ହୋଇପାରନ୍ତି ; କାରଣ ଭୂମିକୁ ମାତା ହିସାବରେ ବହୁ ଆଦିମ କାଳରୁ ମଣିଷ ପୂଜା କରିଆସିଛି ଏବଂ ଏବେ ମଧ୍ୟ ଭିଭିନ୍ନ ସଭ୍ୟ ଓ ଅସଭ୍ୟ ଜାତି ମଧ୍ୟରେ ଭୂମି-ପୂଜା ପ୍ରଚଳିତ ଅଛି । (୧୪) ଭାରତୀୟ ସଂସ୍କୃତିରେ ଭୂମିକୁ ମାତା ହିସାବରେ ଗ୍ରହଣ କରିବାର ମୂଳଭିତ୍ତି ଅଛି ଏଇଠି । ନାରୀ ପରି ଭୂମି ମଧ୍ୟ ସୃଷ୍ଟିର ଜନନୀ— ଶସ୍ୟାଦିର ଜନୟିତ୍ରୀ । ସେହିହେତୁ ସେ ମାଆ । ଋଗ୍‌ବେଦରେ ମଧ୍ୟ ଭୂମିକୁ ମାଆ ବୋଲି ଆବାହନ କରିବାର ପ୍ରମାଣ ଆମେ ଅନେକ ସ୍ଥାନରେ ପାଇଥାଉ । ଠାଏ ଲେଖା ଅଛି, 'ମାତା ଭୂମିଃ ପୁତ୍ରୋଽହଂ ପୃଥିବ୍ୟାଃ' । ଅର୍ଥାତ୍ 'ମାଟି ହେଉଛି ମାଆ ଓ ମୁଁ ହେଉଛି ତା'ର ସନ୍ତାନ' । (୧୫) ସେହିପରି ଆଉ ଠାଏ ଲେଖାଅଛି, 'ଉପସର୍ପ ମାତରଂ ଭୂମିଂ' । ଅର୍ଥାତ୍ 'ମାଟି ମାଆର ତୁମେ ସେବା କର' । (୧୬) ଭାରତରେ ଥିବା ସିନ୍ଧୁ-ସଭ୍ୟତାର ସମସ୍ତ କ୍ଷେତ୍ରରେ ଉପରୋକ୍ତ ମୃଣ୍ମୟ ନାରୀମୂର୍ତ୍ତିମାନ ମିଳୁଛି । ନିକଟ ଅତୀତରେ ପାକିସ୍ଥାନର ମେହେରଗଡ଼ଠାରେ ଓ ବେଲୁଚିସ୍ଥାନର ସମସ୍ତ ଧ୍ୱଂସାବଶେଷରେ ଏ ପ୍ରକାର ମୂର୍ତ୍ତିମାନ ପ୍ରଚୁର ପରିମାଣରେ ମିଳିଛି । ପୁରୁଷ ମୂର୍ତ୍ତିମାନ ଯେ ମିଳୁନାହିଁ ସେ କଥା ନୁହେଁ ; ତାହା କିନ୍ତୁ କାଁ ଭାଁ କେଉଁଠି କେମିତି ମିଳୁଛି । କିନ୍ତୁ ନାରୀ ମୂର୍ତ୍ତିଗୁଡ଼ିକର ସଂଖ୍ୟାର ପ୍ରାଚୁର୍ଯ୍ୟ ଅତ୍ୟଧିକ । ଏହିସବୁ ଦୃଷ୍ଟିକୋଣରୁ ପ୍ରତ୍ନତତ୍ତ୍ୱବିଦ୍ ଆଲ୍‌ଚିନ୍ ଦମ୍ପତି ଯଥାର୍ଥରେ ମତ ଦିଅନ୍ତି ଯେ, ସୈନ୍ଧବ-ସଂସ୍କୃତିର ଲୋକମାନଙ୍କ ମଧ୍ୟରେ ମାତୃଦେବୀଙ୍କର ପୂଜା ପ୍ରସିଦ୍ଧି ଲାଭ କରିଥିଲା । ତାଙ୍କ ମତ ନିମ୍ନରେ ଉଦ୍ଧାର କରାଯାଉଅଛି :—

"The great majority of the figurines are females ; males are comparatively rare. It seems quite certain that they represent the presence of the cult of Mother Goddess." (୧୭)

ମାଆ ଯେ ସନ୍ତାନର ଏକମାତ୍ର ସୃଷ୍ଟିକର୍ତ୍ତ୍ରୀ, ଏହା ଆଦିମାନବର ଚିନ୍ତାଧାରା ଥିଲା ବୋଲି ପୂର୍ବରୁ କୁହାଯାଇଛି । ସିନ୍ଧୁ-ସଂସ୍କୃତିର ଲୋକମାନେ ମଧ୍ୟ ମୋଟାମୋଟି ସେହି ଚିନ୍ତାଧାରାର ଅନୁବର୍ତ୍ତୀ ଥିବାର ମନେହୁଏ । ସେମାନଙ୍କ ମତରେ ସୃଷ୍ଟି ହୋଇଥିଲା ଶୂନ୍ୟରୁ ଏବଂ ଏହି ମତବାଦ ପରେ 'ଶୂନ୍ୟବାଦ'ର ଭୂୟୋବିକାଶ ଘଟାଇଥିଲା ବୋଲି ପଣ୍ଡିତ ନୀଳକଣ୍ଠ ଦାସ ଆହୁରି ଟିକିଏ ଆଗେଇଯାଇ ମତ ଦିଅନ୍ତି । ତାଙ୍କ ମତରେ ଋଗ୍‌ବେଦର 'ନାସଦୀୟ ସୂକ୍ତ'ରେ ଯେଉଁ ଶୂନ୍ୟ-ଧର୍ମର ତତ୍ତ୍ୱ ବିବକ୍ଷିତ ହୋଇଛି ବା ଯେଉଁ-ଭଳି ଭାବରେ ଶୂନ୍ୟରୁ ସୃଷ୍ଟି ହେଲା ବୋଲି କ୍ରମ ଅନୁସାରେ ବର୍ଣ୍ଣନା କରାଯାଇଛି, ତାହାର ମୂଳତତ୍ତ୍ୱ ନିହିତ ଅଛି ସିନ୍ଧୁ-ସଂସ୍କୃତିର ଏହି ମାତୃକେନ୍ଦ୍ରିକ ଧର୍ମ-ଧାରଣାରେ । 'ନାସଦୀୟ-ସୂକ୍ତ' ର ସାତଟି ସୂକ୍ତର ଅର୍ଥାନୁଶୀଳନ କରି ସେ ଉପରୋକ୍ତ ମତର ସତ୍ୟତା ପ୍ରତିପାଦନ କରିବାର ଚେଷ୍ଟା କରିଛନ୍ତି । (୧୮)

ପ୍ରଜନନ-ଶକ୍ତିର ଆରାଧନା ସମ୍ପର୍କରେ ଆଉ ଏକ ପ୍ରମାଣ ମିଳୁଛି ପାକିସ୍ଥାନସ୍ଥ ହରପ୍ପା-ଦାରୋଠାରେ ମିଳିଥିବା ଗୋଟିଏ ମୃଣ୍ମୟ ମୋହରରୁ । ଏହି ମୋହରରେ ଗୋଟିଏ ଲୋକ (ପୁରୁଷ କି ସ୍ତ୍ରୀ ଜଣାପଡୁନାହିଁ) ନିମ୍ନମୁଖ ହୋଇ ଭୂମିରେ ଶାୟିତ ଏବଂ ତଦୁପରି ଊର୍ଦ୍ଧ୍ୱଲିଙ୍ଗ ହୋଇ ଏକ ମହିଷ ଦଣ୍ଡାୟମାନ । ଲୋକଟିର ମସ୍ତକରୁ ପୁଣି ଗୋଟି ଗଛଟିଏ ଗଜୁରି ଉଠିବାର ଚିତ୍ର ଅଛି । ଏ ଏକ ବିଚିତ୍ର ଚିତ୍ର ଭଳି ପ୍ରତୀୟମାନ ହୁଏ । ଋଗ୍‌ବେଦ ମତରେ ବୃକ୍ଷ ହେଉଛି ଆତ୍ମାର ବାସସ୍ଥାନ । (୧୯) ଅତଏବ, ଲୋକଟିର ମସ୍ତକରୁ ଅଙ୍କୁରିତ ହୋଇଉଠୁଥିବା କ୍ଷୁଦ୍ର ବୃକ୍ଷଟିକୁ ଜଗତର ସକଳ ଆତ୍ମାର ପ୍ରତୀକ ବୋଲି ଗ୍ରହଣ କରାଯାଇପାରେ । ଏଣୁ ଏହା ହେବ 'ହିରଣ୍ୟଗର୍ଭ' ବା ନାରାୟଣଙ୍କ ପ୍ରତୀକ । ସୃଷ୍ଟି ବିଷୟରେ ବର୍ଣ୍ଣନା କରାଯାଇଥିବା ପୁରୁଷସୂକ୍ତରେ (ଋଗ୍‌ବେଦ, ୧୦।୯୦।୧-୧୬ ।) ଆଦିପୁରୁଷଙ୍କର ଆଦିମାତା 'ବିରାଟ'ଙ୍କ ସହିତ ଯେଉଁ ମିଳନ ଘଟିଥିଲା, ତହିଁରୁ ଜାତ ହୋଇଥିଲେ ହିରଣ୍ୟଗର୍ଭ ବା ନାରାୟଣ । ଆଦିପୁରୁଷ ଓ ଆଦିମାତା ଅପ୍ରତ୍ୟକ୍ଷ (unmanifest) ଥିବା ସ୍ଥଳେ ହିରଣ୍ୟଗର୍ଭ ହେଉଛନ୍ତି ପ୍ରତ୍ୟକ୍ଷ (manifest) । ପରବର୍ତ୍ତୀ ହିନ୍ଦୁ ଚିନ୍ତାଧାରାରେ ସେ ଅବତାର ନାମରେ ଖ୍ୟାତ ହେଲେ । ଶଂସିତ ମୃଣ୍ମୟ ମୋହରଟିରେ ଊର୍ଦ୍ଧ୍ୱଲିଙ୍ଗ ମହିଷଟି ଆଦିପୁରୁଷ, ଶାୟିତ ଲୋକଟିକୁ ଆଦିମାତା 'ବିରାଟ' ଓ ଅଙ୍କୁରିତ ବୃକ୍ଷକୁ ହିରଣଗର୍ଭ ଭାବରେ ଗ୍ରହଣ କରା-ଯାଇପାରେ । ଉପରୋକ୍ତ ସଙ୍କେତାତ୍ମକ ଚିତ୍ରର ପ୍ରଭାବ ଶଂସିତ ଋଗ୍‌ବେଦୀୟ ପୁରୁଷ-ସୂକ୍ତରେ ପଡ଼ିଥିବା ପରି ମନେହୁଏ । (୨୦) ଅନ୍ତତଃ ଅନ୍ୟ କୌଣସି ପ୍ରକାର ଚିତ୍ରଟିର ଯୁକ୍ତିଯୁକ୍ତ ଅର୍ଥ ନ ବାହାରିବା ପର୍ଯ୍ୟନ୍ତ ଏହିପ୍ରକାର ଅର୍ଥ କଲେ କିଛି ଅଯୌକ୍ତିକର ହେବନାହିଁ; କାରଣ ପ୍ରାଗ୍‌ବୈଦିକ-ସଂସ୍କୃତିର ପ୍ରଭାବ ବୈଦିକ ସଂସ୍କୃତିରେ ତ ଅନେକ ସ୍ଥାନରେ ପଡ଼ିଛି

ଏବଂ ଅନେକ ତତ୍ତ୍ୱବିଦ ମଧ୍ୟ ଦୁଇଟି ସଂସ୍କୃତିକୁ ବହୁ ପ୍ରମାଣ ଦର୍ଶାଇ ଏକ ଓ ଅଭିନ୍ନ ବୋଲି କହିଛନ୍ତି । ଅବଶ୍ୟ ଏ ପର୍ଯ୍ୟନ୍ତ ଶେଷକଥା କୁହାଯାଇ ସାରିଛି ବୋଲି ଦାବୀ କରି ହେବନାହିଁ । ଏହା ଅଧିକତର ଗବେଷଣାସାପେକ୍ଷ ।

## ବୃକ୍ଷପୂଜା :

ତା'ପରେ ବୃକ୍ଷପୂଜା କଥା । ଏହି ବୃକ୍ଷପୂଜା ହେଉଛି ଏକ ଅତି ପ୍ରାଚୀନ ଅନୁଷ୍ଠାନ ଯାହା କି ଆଦିମାନବ ଯୁଗରୁ ଚାଲିଆସିଛି । ଏହାର ମୂଳରେ ମଧ୍ୟ ଅଛି ସେହି ପ୍ରଜନନ ଶକ୍ତିର ପୂଜା ସମ୍ପର୍କୀୟ ଚିନ୍ତାଧାରା । ବୃକ୍ଷ ପୁଷ୍ପିତ ହୁଏ, ପୁଷ୍ପରୁ ପୁଣି ଫଳ ହୁଏ ; ଫଳରୁ ମଞ୍ଜି ଓ ମଞ୍ଜିରୁ ପୁଣି ବୃକ୍ଷ ହୁଏ । ଏହା ହେଲା ବୃକ୍ଷର ସୃଷ୍ଟିଚକ୍ର । ପ୍ରତି ଚକ୍ର ମୂଳରେ ସୃଷ୍ଟିତତ୍ତ୍ୱ ନିହିତ । ଏଣୁ ଆଦିମାନବ ନିର୍ବାକ୍ ବିସ୍ମୟରେ ଏହାକୁ ପ୍ରଜନନ ଶକ୍ତିର ଅଧିଦେବତା ବୋଲି ଗ୍ରହଣ କରିଥିବା ସ୍ୱାଭାବିକ । ଡକ୍ଟର ସୁନୀତି କୁମାର ଚଟ୍ଟୋପାଧ୍ୟାୟଙ୍କ ମତରେ ପ୍ରଜନନ ଶକ୍ତିର ପ୍ରତୀକ ରୂପେ ଉଦୁମ୍ବର ଗଛର ପୂଜା ସାରା ବିଶ୍ୱରେ ସବୁ ଆଦିମାନବ ଗୋଷ୍ଠୀରେ ପ୍ରଚଳିତ ଥିଲା । ଏଣୁ ଏହା ମଧ୍ୟ ସିନ୍ଧୁ-ସଭ୍ୟତାରେ ପ୍ରଚଳିତ ଥିବା ସ୍ୱାଭାବିକ । (୨୧) ସେ ଅବଶ୍ୟ କହିଛନ୍ତି ଯେ ଏ ଚିନ୍ତା-ଧାରା ଓ ପୂଜାପଦ୍ଧତିକୁ ନିଗ୍ରୋଏଡ୍ ଜାତୀୟ ଲୋକମାନେ ଭାରତଭୂମିକୁ ପ୍ରଥମେ ଆଣିଥିଲେ । ଏହା ଏକ ବିବାଦୀୟ ବିଷୟ ଅଟେ । ଉଦୁମ୍ବର ଗଛ ଏବେ ମଧ୍ୟ ଭାରତରେ ସଭ୍ୟ ଅସଭ୍ୟ ସକଳ ସମ୍ପ୍ରଦାୟରେ ପୂଜାପାଏ । ବୈଦିକ ବିବାହ ବିଧିରେ ମଧ୍ୟ ଫଳଭରା ଉଦୁମ୍ବର ଡାଳଟିଏ ଆଣି ବିବାହ ବେଦୀରେ ସ୍ଥାପିତ କରିବାର ବ୍ୟବସ୍ଥା ରହିଛି । ଏହି ଉଦୁମ୍ବର ବୃକ୍ଷ ଭଳି ସନ୍ତାନବତୀ ହେବାପାଇଁ କନ୍ୟାକୁ ଆଶୀର୍ବାଦ କରନ୍ତୁ ବୋଲି ଅଗ୍ନି, ଇନ୍ଦ୍ର, ବରୁଣ, ସବିତା ଆଦି ଦେବତାମାନଙ୍କୁ ଏଠାରେ ଆବାହନ କରାଯାଇଥାଏ । ଏ ଆବାହନବିଧି ଏବେ ମଧ୍ୟ ବିବାହ ଅନୁଷ୍ଠାନରେ ଅନୁସୃତ ହେଉଅଛି । କନ୍ୟା ଯେତେ-ବେଳେ ଯୌବନ ପାଉଛି, ତାକୁ ପୁଷ୍ପବତୀ ହେଲା ବୋଲି କୁହାଯାଉଅଛି । ବୃକ୍ଷର ପୁଷ୍ପଧାରଣ କରିବା ମୂଳରେ ଯେଉଁ ପ୍ରଜନନ ଶକ୍ତିର ଅଧିଷ୍ଠାତ୍ରୀ ଦେବୀଙ୍କର କଳ୍ପନା କରାଯାଇଛି, ସେହିଭଳି ଅନୁରୂପା ଦେବୀଙ୍କର ଏଠାରେ କଳ୍ପନା କରାଯାଇଥିବାର ମନେହୁଏ । ଗାଈଟିଏ ଗର୍ଭଧାରଣ କଲେ ଆମେ ସେ ଫଳାଇ ବୋଲି କହିଥାଉଁ । ଏହା ମଧ୍ୟ ସେହିପରି ବୃକ୍ଷର ଫଳଧାରଣ ମୂଳରେ ଥିବା ପ୍ରଜନନ ଶକ୍ତିର ଅଧିଷ୍ଠାତ୍ରୀ ଦେବତା ସମ୍ପର୍କୀୟ ଚିନ୍ତାଧାରା ସହିତ ତୁଳନୀୟ । ଭାରତୀୟମାନଙ୍କ ମଧ୍ୟରେ ବୃକ୍ଷକୁ ପ୍ରଜନନ ଶକ୍ତିର ଦେବତା ଭାବରେ ଗ୍ରହଣ କରିବାର ପ୍ରାଚୀନ ପରମ୍ପରାଟି ଏବେ ମଧ୍ୟ ବହୁଳ ଭାବରେ ବିଭିନ୍ନ କ୍ଷେତ୍ରରେ ଆଚରିତ ହେଉଥିବାରୁ ଏ ଚିନ୍ତାଧାରାଟି ଯେ ଭାରତର ନିଜସ୍ୱ ନୁହେଁ, ସେ କଥା କହିହେବ ନାହିଁ । ଏହି ଦୃଷ୍ଟିକୋଣରୁ ଡକ୍ଟର ସୁନୀତି କୁମାର ଚଟ୍ଟୋପାଧ୍ୟାୟଙ୍କର ଉପରୋକ୍ତ ମତକୁ ଭଲଭାବରେ ପରୀକ୍ଷା ନିରୀକ୍ଷା କରିବା ଉଚିତ । ସେ ଯାହାହେଉ, ଏ କଥା ସତ୍ୟ ବୋଲି

ମାନିନେବାକୁ ହେବ ଯେ ସିନ୍ଧୁ-ସଭ୍ୟତାରେ ବୃକ୍ଷକୁ ପ୍ରଜନନ ଶକ୍ତିର ଅଧିଷ୍ଠାତ୍ରୀ ଦେବତା ରୂପେ ଆରାଧନା କରାଯାଉଥିଲା । ମହାମାତୃଦେବୀଙ୍କ ପୂଜା କରୁଥିବା ସିନ୍ଧୁ-ସଭ୍ୟତାର ଅଧିବାସୀମାନେ ପ୍ରଜନନ-ଶକ୍ତିର ସଙ୍କେତ ରୂପେ ମାତୃଦେବୀଙ୍କ ଛଡ଼ା ବୃକ୍ଷଭଳି ଆଉ ଏକ କ୍ଷେତ୍ରକୁ ପୂଜା କରିବାରେ କିଛି ଅସ୍ୱାଭାବିକତା ନାହିଁ ବୋଲି ମନେହୁଏ; ବରଂ ଏ କ୍ଷେତ୍ରକୁ ପୂଜା କରିଥିବା ଖୁବ୍ ସ୍ୱାଭାବିକ ।

ସିନ୍ଧୁ-ସଭ୍ୟତାର ଧ୍ୱଂସାବଶେଷରୁ ମିଳିଥିବା ମୃଣ୍ମୟ ମୋହରମାନଙ୍କରେ ଅନେକ ସ୍ଥଳରେ ଅଶ୍ୱତ୍ଥ ଡ଼ାଳ କିମ୍ବା ପତ୍ରର ଚିତ୍ର ଅଙ୍କିତ ହୋଇଅଛି । ତତ୍ସହିତ କବର-ଭୂମିରୁ ମିଳିଥିବା ମୃଣ୍ମୟ ପାତ୍ରମାନଙ୍କରେ ଯେଉଁସବୁ ଚିତ୍ର ଅଙ୍କିତ ହୋଇଛି, ଅଶ୍ୱତ୍ଥ ପତ୍ରର ଚିତ୍ର ମଧ୍ୟ ତହିଁରୁ ଅନ୍ୟତମ । ଗୋଟିଏ ମୃଣ୍ମୟ ମୋହର ଉପରେ ଅଙ୍କିତ ଅଶ୍ୱତ୍ଥ ବୃକ୍ଷରେ ଦୁଇଟି ପକ୍ଷୀର ଚିତ୍ର ଅଙ୍କିତ ହୋଇଅଛି । କେହି କେହି ତତ୍ତ୍ୱବିଦ ଏହାକୁ ଭୂତ ବୋଲି ଅର୍ଥ କରନ୍ତି । କିନ୍ତୁ ଏତେବଡ଼ ଉନ୍ନତ ସଭ୍ୟତାର ଅଧିବାସୀ ଯେ କି 'ନଗର ନିର୍ମାଣ' ଯୋଜନା ବିଷୟରେ ସମ୍ପୂର୍ଣ୍ଣ ଅବହିତ ଥିଲେ ଏବଂ ଲୋଥାଲ୍‌ଠାରେ ପୃଥିବୀର ଏ ଅବଧି ଆବିଷ୍କୃତ ପ୍ରାଚୀନତମ ପୋତାଶ୍ରୟର ନିର୍ମାଣ କରିପାରିଥିଲେ, ସେ କଦାପି ଭୂତପ୍ରେତରେ ବିଶ୍ୱାସ ରଖି ତାକୁ ଏଭଳି ଭାବରେ ଚିତ୍ରରୂପ ଦେଇ ନଥିବେ । ବେଦବର୍ଣ୍ଣିତ ପ୍ରସିଦ୍ଧ 'ଦ୍ୱା ସୁପର୍ଣ୍ଣା' ସୂକ୍ତରେ ଯେଉଁ ସୁନ୍ଦର ପକ୍ଷୀଦୁଇଟିକୁ 'ଜୀବାତ୍ମା' ଓ 'ପରମାତ୍ମା' ରୂପରେ କଳ୍ପନା କରାଯାଇଅଛି, ପ୍ରକୃତରେ ଏହା ହିଁ ହେଉଛି, ତାହାର ଚିତ୍ରିତ ଅଭିବ୍ୟକ୍ତି । (୨୨) ଆଉ ଗୋଟିଏ ମୃଣ୍ମୟ ମୋହରରେ ଅଶ୍ୱତ୍ଥ ଶାଖାରେ ଅଶ୍ୱର ମୁଖ ଚିତ୍ରିତ ଥିବାର ଚିତ୍ର ଅଙ୍କିତ ହୋଇଅଛି । ଏ ଅଶ୍ୱ ଆଉ କେହି ନୁହଁନ୍ତି ; ଏ ହେଉଛନ୍ତି ଅଗ୍ନି ଯେ କି ଅଶ୍ୱ ରୂପରେ ବୃକ୍ଷରେ ଲୁଚି ରହିଥିଲେ ଏବଂ ପରେ ଯାହାଙ୍କୁ ଋଷିମାନେ ବହୁ କଷ୍ଟରେ ପାଇପାରିଥିଲେ ବୋଲି ବେଦର 'ଅଶ୍ୱତ୍ଥ ସମ୍ଭାର' ଗଳ୍ପରେ ବର୍ଣ୍ଣିତ ହୋଇଅଛି । ହରପ୍ପାସ୍ଥ ଗୋଟିଏ ମୃଣ୍ମୟ ମୋହରରେ (ଫଲ୍ୟା -୩୦୯) ବୃକ୍ଷ ଉପରେ ଅଗ୍ନିକୁଣ୍ଡର ଚିତ୍ର ଅଙ୍କିତ ହୋଇଅଛି । ଏହା ବେଦବର୍ଣ୍ଣିତ ଅଗ୍ନିଙ୍କର 'ଦ୍ରୁଷଦ୍' ବା 'ଦ୍ରୁମଜାତ' ନାମକୁ ସାର୍ଥକ କରୁଛି । ଏ ବିଷୟରେ ବିସ୍ତୃତ ଆଲୋଚନା ଅବଶ୍ୟ ପରବର୍ତ୍ତୀ ଅନୁଚ୍ଛେଦମାନଙ୍କରେ ଅଗ୍ନିପୂଜା ଅନୁକ୍ରମରେ କରାଯିବ ।

ଏଠାରେ ପ୍ରଶ୍ନ ହୋଇପାରେ, ଅନ୍ୟ ବୃକ୍ଷକୁ ଛାଡ଼ି ଅଶ୍ୱତ୍ଥ ବୃକ୍ଷରେ କାହିଁକି ଏଭଳି ଯଜ୍ଞକୁଣ୍ଡ ଓ ଅଶ୍ୱରୂପୀ ଅଗ୍ନିଙ୍କର ମୂର୍ତ୍ତି ଅଙ୍କିତ କରାଯାଉଥିଲା ? ଏହା ନିଶ୍ଚିତ ଭାବରେ ଏକ କୌତୂହଳୋଦ୍ଦୀପକ ପ୍ରଶ୍ନ । ସେତେବେଳେ ଯୋଗ ସମ୍ପର୍କୀୟ ଧାରଣା ଓ ଦାର୍ଶନିକ ଚିନ୍ତାଧାରା ଭ୍ରୂଣ ଅବସ୍ଥାରେ ଥିଲା । ପରବର୍ତ୍ତୀ କାଳରେ ଅବଶ୍ୟ ଭାରତଭୂମିରେ ଏହାର ଭୂୟୋବିକାଶ ଘଟିଥିଲା । ଯୋଗଲଗ୍ନ ଥିବା ଯୋଗୀରାଜ ଶିବଙ୍କର ଯେଉଁ ମୃଣ୍ମୟ

ମୋହରରେ ମୂର୍ତ୍ତିଟି ବାହାରିଛି, ତାହା ତତ୍କାଳୀନ ଯୋଗ-ଧର୍ମର୍ଜାଙ୍କ ଏକ ଭ୍ରୂଣାତ୍ମକ ଚିନ୍ତାଧାରାର ପରିଚ୍ଛନ୍ନ । ତା'ପରେ ଅଶ୍ୱତ୍ଥ କଥା । 'ଶ୍ୱ' ଅର୍ଥ ହେଲା 'ଆସନ୍ତାକାଲି' । 'ଅଶ୍ୱତ୍ଥ' ଅର୍ଥହେଲା ଯାହା ଆସନ୍ତାକାଲିକୁ ନ ଥିବ ବା ଏହି କ୍ଷଣ-ସ୍ଥାୟୀ ଦେହ । ଏହି ଦେହରେ 'ଜୀବାତ୍ମା' ଓ 'ପରମାତ୍ମା' ଯଥାସ୍ୱଭାବ ବିଶିଷ୍ଟ ହୋଇ ଅବସ୍ଥାନ କରୁଛନ୍ତି ଏବଂ ଏହି ସ୍ୱତନ୍ତ୍ର ଶଂସିତ ମୃଣ୍ମୟ ମୋହର ଉପରେ ଅଙ୍କିତ ହୋଇଥିବା ଅଶ୍ୱତ୍ଥ ବୃକ୍ଷାସୀନ ଦୁଇଟି ସୁନ୍ଦର ପକ୍ଷଯୁକ୍ତ ପକ୍ଷୀ (ଦ୍ୱାସୁପର୍ଣ୍ଣା) ମାଧ୍ୟମରେ ଅଭିବ୍ୟକ୍ତ କରାଯାଇଅଛି । ଅଶ୍ୱତ୍ଥ ବୃକ୍ଷର ଯଜ୍ଞକୁଣ୍ଡ ଓ ଅଶ୍ୱରୂପୀ ଅଗ୍ନିଙ୍କର ମୂର୍ତ୍ତି ଅଙ୍କିତ କରିବାରେ ମଧ୍ୟ ସେହିପରି ଦାର୍ଶନିକ ଭିତ୍ତିଭୂମି ରହିଅଛି । ଅଗ୍ନି ହେଲେ ପରମାତ୍ମା ଭଗବାନ । ଯେ ସର୍ବତ୍ର 'ଅଙ୍ଗତି' ବା ବ୍ୟାପି ରହିଛନ୍ତି ସେ ହେଲେ ଅଗ୍ନି । ତାଙ୍କୁ ପାଇବା ପାଇଁ, ତାଙ୍କ ସହିତ ମିଳିତ ହେବାପାଇଁ ଥାଏ ମାନବର ଅଦମ୍ୟ ପିପାସା । ସେ ସାରା ଜଗତରେ ତାଙ୍କୁ ଖୋଜିବୁଲୁଥାଏ । ଶେଷକୁ ତା'ର ଜ୍ଞାନୋଦୟ ହେବାରେ ସେ ତା'କୁ ଆବିଷ୍କାର କରେ 'ଅଶ୍ୱତ୍ଥ'ରେ ବା ନିଜ ଦେହରେ । ଏହାର ତତ୍ତ୍ୱଗତ ଅର୍ଥ ହେଲା ଭଗବାନ ନିଜଠାରେ ଅଛନ୍ତି; ଭ୍ରମରେ ଲୋକ ତାଙ୍କୁ ଏଠିସେଠି ଖୋଜୁଛି । ଠିକ ଏହି ମର୍ମରେ ଆମେ ଗୀତାରେ ଗୋଟିଏ ଉକ୍ତି ଦେଖିବାକୁ ପାଇଥାଉଁ; ଯେଉଁଠି କୁହାଯାଇଛି :

ଈଶ୍ୱରଃ ସର୍ବଭୂତାନାମ୍ ହୃଦ୍ଦେଶେଽର୍ଜ୍ଜୁନ ତିଷ୍ଠତି,
ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା ।"

ଅର୍ଥାତ୍ "ହେ ଅର୍ଜ୍ଜୁନ ! ଈଶ୍ୱର ସବୁ ଜୀବଙ୍କର ହୃଦୟରେ ବିରାଜମାନ ଅଛନ୍ତି । ଜୀବମାନେ ଖାଲି ଯାହା ଯନ୍ତ୍ରରେ ଚଢ଼ି ମାୟାଚ୍ଛନ୍ନ ଭଳି ତାଙ୍କୁ ଏଣେତେଣେ ଖୋଜିବୁଲୁଛନ୍ତି ।" (୨୩) ଅଶ୍ୱତ୍ଥ ବୃକ୍ଷର ତାତ୍ପର୍ଯ୍ୟ ତେଣୁ ଅଛି ଏଇଠି ।

ସିନ୍ଧୁ-ସଭ୍ୟତାର ଏହି ବୃକ୍ଷପୂଜା ଯେ କେବଳ ବୈଦିକ ଧର୍ମ ସହିତ ସମ୍ବନ୍ଧିତ ତାହା ନୁହେଁ, ଏହାର ଗଭୀର ପ୍ରଭାବ ଜୈନଧର୍ମ, ବୌଦ୍ଧଧର୍ମ ଏବଂ ହିନ୍ଦୁଧର୍ମ ଉପରେ ମଧ୍ୟ ପଡ଼ିଅଛି । ଜୈନ ଧାରଣା ଅନୁଯାୟୀ ଋଷଭନାଥଙ୍କ ଠାରୁ ଆରମ୍ଭ କରି ମହାବୀରଙ୍କ ପର୍ଯ୍ୟନ୍ତ ୨୪ ଜଣଯାକ ତୀର୍ଥଙ୍କର (ଘାଟରେ ପାର କରାଇବା ଲୋକ) ପ୍ରତ୍ୟେକ ଏକ ନିର୍ଦ୍ଦିଷ୍ଟ ବୃକ୍ଷ ମୂଳରେ 'କୈବଲ୍ୟ' ବା ଦିବ୍ୟଜ୍ଞାନ ଲାଭ କରିଥିଲେ । ଏହି ବୃକ୍ଷକୁ 'କେବଳ-ବୃକ୍ଷ' ବା 'କଳ୍ପବୃକ୍ଷ' ବୋଲି କୁହାଯାଏ । ଋଷଭନାଥଙ୍କର କଳ୍ପବୃକ୍ଷ ନ୍ୟଗ୍ରୋଧ (ବରଗଛ) ହୋଇଥିବାବେଳେ ଅଜିତନାଥ ଓ ସମ୍ଭବନାଥଙ୍କର କଳ୍ପବୃକ୍ଷ ହେଲେ ଯଥାକ୍ରମେ ସପ୍ତପର୍ଣ୍ଣୀ ଓ ଶାଳ । ଏହିଭଳି ଭାବରେ ଅନ୍ୟ ତୀର୍ଥଙ୍କରମାନଙ୍କର

ପୃଥକ୍ ପୃଥକ୍ କଳ୍ପବୃକ୍ଷମାନ ରହିଅଛି । (୨୪) ଜୈନମାନେ ଏହି କଳ୍ପବୃକ୍ଷଗୁଡ଼ିକୁ ଦେବତା ଜ୍ଞାନରେ ପୂଜାକରି ଆସୁଅଛନ୍ତି । କଳିଙ୍ଗର ଜୈନ ସମ୍ରାଟ ଖାରବେଳଙ୍କ (ଖ୍ରୀ: ପୂ. ୨ୟ ଶତାବ୍ଦୀ) ଦ୍ୱାରା ଖଣ୍ଡଗିରିଠାରେ ଯେଉଁ ଗୁମ୍ଫାମାନ ଖୋଦିତ କରାଯାଇଅଛି, ତନ୍ମଧ୍ୟରୁ ବୃକ୍ଷପୂଜାର ଚିହ୍ନ ଅନ୍ୟତମ ଅଟେ । (୨୫) ସେହି ଖାରବେଳ ମଥୁରା-ରାଜ୍ୟ ଜୟକରି ତହିଁରୁ ଜୈନପୀଠରୁ କଳ୍ପବୃକ୍ଷର ଗୋଟିଏ ଗଛ ଆଣିଥିଲେ ବୋଲି ତାଙ୍କଦ୍ୱାରା ଖଣ୍ଡଗିରିସ୍ଥ ହାତୀଗୁମ୍ଫା ଶିଳାଲେଖରେ ଲିପିବଦ୍ଧ କରାଯାଇଅଛି । (୨୬) ସେହିପରି ବୌଦ୍ଧମାନଙ୍କର ଧାରଣା ଯେ ବୁଦ୍ଧଦେବ ଏକ ଅଶ୍ୱତ୍ଥ ବୃକ୍ଷ ତଳେ ପରମଜ୍ଞାନ ଲାଭ କରିଥିଲେ; ଏବଂ ସେଥିପାଇଁ ତାକୁ କୁହାଯାଉଥିବା ବୋଧିଦ୍ରୁମ । ଏହି ବୋଧିଦ୍ରୁମ ବୌଦ୍ଧମାନଙ୍କ ଦ୍ୱାରା ପୂଜିତ ହୋଇଆସୁଅଛି । ବୌଦ୍ଧମାନଙ୍କର ଆହୁରି ମଧ୍ୟ ଧାରଣା ଯେ 'ବୋଧିସତ୍ତ୍ୱ' ବିଭିନ୍ନ ଜନ୍ମରେ ବିଭିନ୍ନ ବୃକ୍ଷ ଦେବତାର ରୂପ ପରିଗ୍ରହ କରିଆସିଛନ୍ତି । ସର୍ବମୋଟ ୪୩ ଥର ସେ ବୃକ୍ଷଦେବତା ରୂପରେ ଜନ୍ମ ନେଇଥିବା କଥା ଆମେ ବୌଦ୍ଧ-ଜାତକ ଗଳ୍ପଗୁଡ଼ିକର ଅନୁଶୀଳନ କଲେ ଜାଣିବାକୁ ପାଇଥାଉଁ । (୨୭) ବୋଧିସତ୍ତ୍ୱଙ୍କ ବ୍ୟତୀତ ଅନ୍ୟାନ୍ୟ ଦେବତାମାନେ ମଧ୍ୟ ବୃକ୍ଷରେ ଥାଆନ୍ତି ଓ ସେଥିପାଇଁ ସମ୍ପୃକ୍ତ ବୃକ୍ଷ-ଗୁଡ଼ିକୁ ଦେବତା ଜ୍ଞାନରେ ପୂଜା କରାଯାଏ ବୋଲି ମଧ୍ୟ ଜାତକ-ଗଳ୍ପଗୁଡ଼ିକର ପ୍ରମାଣ ରହିଅଛି । (୨୮) ହିନ୍ଦୁମାନଙ୍କ ମଧ୍ୟରେ ମଧ୍ୟ ବୃକ୍ଷ ପୂଜା ବହୁଦିନ ଧରି ଚାଲିଆସୁଅଛି । ବରଗଛ, ଅଶ୍ୱତ୍ଥଗଛ ଆଦି ଗଛକୁ ଏବେ ମଧ୍ୟ ହିନ୍ଦୁମାନେ ପୂଜା କରୁଛନ୍ତି । ଅତଏବ ଏଥିରୁ ଏହି ସତ୍ୟ ନିଷ୍ପାଦିତ ହେବ ଯେ ସିନ୍ଧୁ-ସଭ୍ୟତାରେ ପ୍ରଚଳିତ ବୃକ୍ଷପୂଜା ପରବର୍ତ୍ତୀ କାଳରେ ଭାରତୀୟ ଆଧ୍ୟାତ୍ମିକ ଓ ଧାର୍ମିକ ଜଗତକୁ ଯଥେଷ୍ଟ ଭାବରେ ପ୍ରଭାବାନ୍ୱିତ କରି ବୃକ୍ଷପୂଜାର ପରଂପରାଟିକୁ ଏ ପର୍ଯ୍ୟନ୍ତ ମଧ୍ୟ ଲୋକମାନଙ୍କ ମଧ୍ୟରେ ଚଳାଇ ଆସିଅଛି ।

## ଅଗ୍ନିଦେବଙ୍କ ଆରାଧନା :

ସିନ୍ଧୁ-ସଭ୍ୟତାର ପ୍ରତ୍ନ ନଗରର ଏକ ନିର୍ଦ୍ଦିଷ୍ଟ ଦିଗରେ ଏକ ବୃହଦାକାର ଧ୍ୱଂସ-ସ୍ତୂପର ଆବିଷ୍କାର କରାଯାଇଅଛି । ତଦ୍‌ବିଦ୍‌ମାନଙ୍କର କଳ୍ପନା ଜଳ୍ପନା ଅନୁସାରେ ଏହା ଦୁର୍ଗ କିମ୍ବା ଦେବାଳୟ ହୋଇଥାରେ । ଏଠାରେ ପ୍ରତିରକ୍ଷା ସାମଗ୍ରୀର କିଛି ଧ୍ୱଂସାବଶେଷ ମିଳୁନଥିବାରୁ ଏହା ଦୁର୍ଗ ରୂପେ ବ୍ୟବହୃତ ହେଉଥିବାର ସାମ୍ଭାବନା ଖୁବ୍ କମ୍ । କୋସାମ୍ବୀଙ୍କ ମତରେ ସୁମେରୀୟମାନେ କଞ୍ଚା ଇଟାରେ ପ୍ରାୟ ୭୦ ଫୁଟ ଉଚ୍ଚରେ ଦେବାୟତନ ନିର୍ମାଣ କରୁଥିଲେ, ଯାହାକୁ କୁହାଯାଉଥିଲା 'ଜିଗୁରତ୍' । ଉପରୋକ୍ତ ପ୍ରଧାନ ସ୍ତୂପ (Citadel mound) ସୁମେରୀୟମାନଙ୍କ 'ଜିଗୁରତ୍'ର ଏକ ହିରପ୍ପୀୟ ସ୍ଥାନୀୟ ସଂସ୍କରଣ ଛଡ଼ା ଆଉ କିଛି ନୁହେଁ ବୋଲି ସେ କୁହନ୍ତି । ପ୍ରଭେଦ ଏତିକି ଯେ ସୁମେରରେ କଞ୍ଚା ଇଟା ବ୍ୟବହୃତ ହେଉଥିବା ବେଳେ ସିନ୍ଧୁ ସଭ୍ୟତାରେ ସିନ୍ଧୁ ଓ ତା'ର ଉପନଦୀମାନଙ୍କ

ବନ୍ୟାରୁ ମୁକ୍ତ ପାଇବା ପାଇଁ ପୋଡ଼ା ଇଟା ବ୍ୟବହାର କରାଯାଉଥିଲା । (୨୮-କ) ଏସ୍.ଆର୍. ରାଓଙ୍କ ମତରେ ଏଠାରେ ଅଗ୍ନିଦେବଙ୍କର ଆରାଧନା କରାଯାଉଥିଲା । ସାର୍ ଜନ୍ ମାର୍ଶାଲ ଗୋଟିଏ ମୃଣ୍ମୟ ମୋହରରେ ପଶୁପରିବେଷ୍ଟିତ ଯୋଗୀରାଜଙ୍କୁ ପଶୁପତି ଶିବ ବୋଲି କହିଛନ୍ତି । ଏ ପଶୁପତି ଆଉ କେହି ନୁହଁନ୍ତି । ଏ ହେଉଛନ୍ତି 'ଅଗ୍ନିଦେବ' । ଶତପଥ ବ୍ରାହ୍ମଣ ଅନୁସାରେ ଅଗ୍ନିଙ୍କର ଆଠଗୋଟି ନାମ ମଧ୍ୟରୁ 'ପଶୁପତି' ହେଉଛି ଅନ୍ୟତମ । ଏହି ପ୍ରଧାନ ସ୍ତୂପମାନଙ୍କରେ ଯଜ୍ଞକୁଣ୍ଡର ଧ୍ୱଂସାବଶେଷ ଆବିଷ୍କୃତ ହୋଇ-ଥିବାର କଥା ମଧ୍ୟ ରାଓ ମତ ଦଅନ୍ତି । (୨୯) ରାଜସ୍ଥାନର କାଲିବଙ୍ଗାଠାରେ ଓ ଗୁଜୁରାଟର ଲୋଥାଲ୍‌ଠାରେ ମଧ୍ୟ ଠିକ୍ ସେହିଭଳି ଯଜ୍ଞକୁଣ୍ଡମାନ ମିଳିଥିବା କଥା ପ୍ରତ୍ନତତ୍ତ୍ୱ-ବିତ୍ ଆଲ୍‌ଚିନ୍ ଦମ୍ପତି କହିଛନ୍ତି । (୩୦) ଅବଶ୍ୟ ମହେଞ୍ଜୋଦାରୋ ଓ ହରପ୍ପାର ଆଦି ଖନନକାରୀମାନଙ୍କ ଦୃଷ୍ଟିରେ ଏ ଯଜ୍ଞକୁଣ୍ଡମାନ ଯେ ପଡ଼ି ନ ଥିବ ତାହା ନୁହେଁ । ସେମାନଙ୍କ ଦୃଷ୍ଟିରେ ତାହା ପଡ଼ିଥିଲେ ମଧ୍ୟ ଆନୁଷଙ୍ଗିକ ପ୍ରମାଣ ଅଭାବରୁ ତାହାର ପ୍ରକୃତ ତଥ୍ୟ ଉଦ୍‌ଘାଟନ କରିବାରେ ସେମାନେ ହୁଏତ ସମର୍ଥ ହୋଇ ପାରି ନ ଥିଲେ । ଲୋଥାଲ୍‌ର କେତେକ ଘରୁ ମଧ୍ୟ ଅପେକ୍ଷାକୃତ କ୍ଷୁଦ୍ର ଆକାରର ଯଜ୍ଞକୁଣ୍ଡର ଧ୍ୱଂସାବଶେଷ ମିଳିଅଛି ।

ମହେଞ୍ଜୋଦାରୋରୁ ମିଳିଥିବା ଗୋଟିଏ ମୋହରରେ ବୃକ୍ଷ ଉପରେ ଯଜ୍ଞ-କୁଣ୍ଡଟିଏ ରହିଅଛି । ଅଗ୍ନି ଏଠାରେ ବୃକ୍ଷସ୍ଥ ହେବାରେ ବେଦବର୍ଣ୍ଣିତ ତାଙ୍କର 'ଦ୍ରୁଷଦ୍' (ଦ୍ରୁମ ବା ବୃକ୍ଷରୁ ଜାତ) ନାମକୁ ଏହା ସାର୍ଥକ କରୁଛି । ମୋହର ସଂଖ୍ୟା ୩୦୯ରେ ବୃକ୍ଷ ଉପରେ ଅଶ୍ୱରୂପୀ ଅଗ୍ନିଙ୍କର ଯେଉଁ ମୂର୍ତ୍ତି ଅଙ୍କିତ ହୋଇଅଛି ଏବଂ ଯାହା ବିଷୟରେ ପୂର୍ବରୁ ଆଲୋଚନା କରାଯାଇଅଛି ଶଂସିତ ଯଜ୍ଞ-କୁଣ୍ଡର ଚିତ୍ରଟି ସେହି ଅନୁରୂପ ଚିନ୍ତାଧାରାର ଅଭିବ୍ୟକ୍ତ ଭଳି ମନେହୁଏ । ବୈଦିକ ଋଷିମାନେ ଅଶ୍ୱତ୍ଥ କାଠ ଦୁଇଖଣ୍ଡକୁ ପରସ୍ପର ସହିତ ଘଷି ଯଜ୍ଞ ଲାଗି ଅଗ୍ନି ସୃଷ୍ଟି କରୁଥିଲେ । ଏହି କାଠକୁ କୁହାଯାଉଥିଲା 'ଅରଣି' । ଏଇଥିପାଇଁ ଅଗ୍ନି ହେଲେ 'ଦ୍ରୁଷଦ୍' ବା 'ଦ୍ରୁମରୁ ଜାତ' । କାଳକ୍ରମେ ଯେଉଁ ନଦୀର ଉଭୟ ତଟରେ ବହୁଳ ଭାବରେ ଅଗ୍ନିଦେବଙ୍କର ଆରାଧନା କରାଯିବାକୁ ଲାଗିଲା, ତା'ର ନାମ ମଧ୍ୟ ହେଲା 'ଦ୍ରୁଷଦ୍‌ବତୀ' । (୩୧)

ଲୋଥାଲ୍, କାଲିବଙ୍ଗା, ହରପ୍ପା ଆଦି ନଗରର ଧ୍ୱଂସାବଶେଷର ଯେଉଁ ଅଗ୍ନିକୁଣ୍ଡ-ମାନ ମିଳୁଛି, ସେଥିରୁ କେତେକ ଆୟତାକାର ବିଶିଷ୍ଟ ଏବଂ ଆଉ କେତେକ ଗୋଲାକାର ବିଶିଷ୍ଟ । ଯଜ୍ଞରେ ପଶୁବଳି ଦିଆଯାଉଥିବାର ପ୍ରମାଣ ସ୍ୱରୂପ ସେଠାରେ ପଶୁ ଅସ୍ଥି ବିଶେଷ କରି ଅଶ୍ୱ ଅସ୍ଥିର ସନ୍ଧାନ ମିଳୁଛି । ହରପ୍ପାର ଗୋଟିଏ କୁଣ୍ଡରୁ ଗୋରୁ ହାଡ଼ ମଧ୍ୟ ବାହାରିଛି । ବୈଦିକ ଭାଷାରେ ଏ ଯଜ୍ଞକୁ 'ଗବାମୟନ' ବୋଲି କୁହାଯାଏ । (୩୨)

ସେହିପରି ରାଜସ୍ଥାନସ୍ଥ କାଲିବଙ୍ଗାଠାରେ ଯେଉଁ ସାତଟି ଅଗ୍ନିକୁଣ୍ଡ ଏକାଠି ଥିବାର ଆବିଷ୍କୃତ ହୋଇଅଛି, ତାହା ଅଗ୍ନିଙ୍କର 'ସପ୍ତଶିଖା' ବିଷୟ ସୂଚନା ଦେଉଥିବା ଭଳି ମନେହୁଏ । ଏହାଙ୍କର ପୂଜା ପୁରୋହିତମାନେ 'ସପ୍ତଧା' ବା 'ସାତ ପ୍ରକାର' କରୁଥିଲେ । ପୂର୍ବୋକ୍ତ ମୃଣ୍ମୟ-ମୋହର ସଂଖ୍ୟା ୩୦୯ରେ ବୃକ୍ଷ ଉପରେ ଅଶ୍ୱରୂପୀ ଅଗ୍ନିଙ୍କର ମୂର୍ତ୍ତି ଅଙ୍କିତ ହେବା ସଙ୍ଗେ ସଙ୍ଗେ ସାତ ଜଣ ଲୋକ ଠିଆ ହୋଇଥିବା ଓ ଜଣେ ଲୋକ ନତଜାନୁ ହୋଇ ଯଜ୍ଞ ପଶୁଟିକୁ (ଜଙ୍ଗଲି ଛେଳି) ଅର୍ପଣ କରୁଥିବା ମୂର୍ତ୍ତି ମଧ୍ୟ ଦେଖିବାକୁ ମିଳିଥାଏ । କେତେକ ବିଦ୍ୱାନ୍‌ମାନଙ୍କ ମତ ହେଲା, ଏହି ସାତଜଣ ହେଉଛନ୍ତି, 'ସପ୍ତହୋତାରଃ' ବା ସାତଜଣ ପୁରୋହିତ ଏବଂ ନତଜାନୁ ଲୋକଟି ହେଲା ଯଜ୍ଞ-ପଶୁ ଅର୍ପଣ କରୁଥିବା ଯଜମାନ । ଉପରୋକ୍ତ ଦୁଇଗୋଟି ମୃଣ୍ମୟ ମୋହରସ୍ଥ ମୂର୍ତ୍ତିମାନଙ୍କ ଅନୁଧ୍ୟାନ କଲେ ଆମେ ଜାଣିପାରିବା ଯେ, ତାହା ଉପରେ ନିମ୍ନଲିଖିତ ଋଗ୍‌ବେଦୀୟ ସୂକ୍ତର ପ୍ରଭାବ ପଡ଼ିଛି :—

ସପ୍ତହୋତାରଃ ସପ୍ତଧା ତ୍ୱାଂ ଯଜନ୍ତି । (୩୮)

ଅର୍ଥାତ୍ "ହେ ଅଗ୍ନି ! ସାତଜଣ ପୁରୋହିତ ସାତପ୍ରକାର ତୁମକୁ ପୂଜା କରନ୍ତି ବା ତୁମର ସାତପ୍ରକାର ରୂପକୁ ପୂଜା କରନ୍ତି ।"

ସିନ୍ଧୁ-ସଭ୍ୟତାର ଧ୍ୱଂସାବଶେଷରୁ ମିଳୁଥିବା ମୃଣ୍ମୟ ମୋହରଗୁଡ଼ିକରେ ଚିତ୍ରଲିପି ମାଧ୍ୟମରେ କିଛି ଲେଖାଯାଇଛି ବୋଲି ଗବେଷକମାନେ ମତ ଦିଅନ୍ତି । ପ୍ରାଚୀନ ବ୍ୟାବିଲୋନ୍, କ୍ୟାଲଡ଼ିଆ, ଆସିରିଆ ଆଦି ଭୂଖଣ୍ଡମାନଙ୍କର ଏ ପ୍ରକାର ଚିତ୍ରଲିପି ପ୍ରଚଳିତ ଥିବାର ପ୍ରମାଣ ରହିଅଛି । ଏଣୁ ଉକ୍ତ ଦେଶମାନଙ୍କ ସହିତ ବାଣିଜ୍ୟିକ ଓ ସାଂସ୍କୃତିକ ଯୋଗସୂତ୍ର ରକ୍ଷା କରୁଥିବା ସିନ୍ଧୁ-ସଭ୍ୟତାର ଲୋକମାନେ ଚିତ୍ରଲିପି ମାଧ୍ୟମରେ ଲିଖନ ପ୍ରକ୍ରିୟା ସାଧିତ କରୁଥିବା କିଛି ଅସ୍ୱାଭାବିକ କିମ୍ବା ଅସମ୍ଭବ ନୁହେଁ । ବାସ୍ତବିକ ଭାରତରେ ପରବର୍ତ୍ତୀ କାଳରେ ଯେଉଁ ବ୍ରାହ୍ମୀଲିପିର ଆବିର୍ଭାବ ହୋଇଥିଲା, ସିନ୍ଧୁ-ସଭ୍ୟତାର ଚିତ୍ରଲିପିର ତାହା ଉତ୍ତର-ଦାୟାଦ ବୋଲି ଅନେକ ଗବେଷକ ମତ ଦେଇଥାନ୍ତି । ଏ ପର୍ଯ୍ୟନ୍ତ ପ୍ରାୟ ୪୦୦୦ ସଂଖ୍ୟାର ମୃଣ୍ମୟ ମୋହର ସିନ୍ଧୁ-ସଭ୍ୟତାର ଭିନ୍ନ ଅଞ୍ଚଳମାନଙ୍କରୁ ମିଳିଅଛି । ସେଗୁଡ଼ିକର ସମ୍ପୂର୍ଣ୍ଣ ପାଠୋଦ୍ଧାର ଏ ପର୍ଯ୍ୟନ୍ତ ହୋଇପାରିନାହିଁ । ଯେଉଁ କେତେ-ଜଣ ବିଦ୍ୱାନ୍ ସେଗୁଡ଼ିକର ପାଠୋଦ୍ଧାର ପାଇଁ ଚେଷ୍ଟା କରିଛନ୍ତି, ତନ୍ମଧ୍ୟରୁ ବି ବି. ଲାଲ ଓ ଏସ୍. ଆର୍. ରାଓ ଅନ୍ୟତମ । କେତେକ ଚିତ୍ରଲିପିର ପାଠୋଦ୍ଧାର କରି ରାଓ ଅଗ୍ନିଙ୍କର ବିଭିନ୍ନ ନାମ ବା ବିଭୂତି ସହିତ ସମ୍ପର୍କ ଥିବାର ଶବ୍ଦମାନ ବାହାର କରିଛନ୍ତି । ଉଦାହରଣ ସ୍ୱରୂପ ଠାଏ 'ସହସ' ବୋଲି ଲେଖାଅଛି । ଋଗ୍‌ବେଦରେ ଅଗ୍ନିଙ୍କୁ କୁହାଯାଇଛି 'ସହସସ୍ପୁତ୍ରଃ' ବା 'ସାହସିକତାର ସନ୍ତାନ' । ଏହିପରି ଆହୁରି ଅନେକଗୁଡ଼ିଏ ଅଗ୍ନିଙ୍କ

ନାମ ସହିତ ସମ୍ପର୍କିତ ଶବ୍ଦର ଆବିଷ୍କାର ସ୍ପଷ୍ଟ କରିଛନ୍ତି । (୭୪) ଲେଖକ ମଧ୍ୟ ଏ ବିଷୟରେ ଅନ୍ୟତ୍ର ଏକ ନିବନ୍ଧରେ ଆଲୋଚନା କରିଅଛନ୍ତି । (୭୫) ଏଥିରୁ ଅନୁମାନ କରାଯାଇପାରେ ଯେ ଅଗ୍ନିଦେବ କେବଳ ଯେ ସିନ୍ଧୁ-ସଭ୍ୟତାର ଅଧିବାସୀମାନଙ୍କ ଦ୍ୱାରା ଦେବାଳୟମାନଙ୍କରେ ପୂଜିତ ହେଉଥିଲେ ତାହା ନୁହେଁ ; ସେ ଏକ ଲୋକପ୍ରିୟ ଦେବତା ହିସାବରେ ଘରେ ଘରେ ମଧ୍ୟ ପୂଜା ପାଉଥିଲେ । ଅତଏବ ଭାରତରେ ଅଗ୍ନିଦେବଙ୍କର ଆରାଧନାକୁ ସିନ୍ଧୁ-ସଭ୍ୟତାର ଏକ ଦାନ ବୋଲି କୁହାଯାଇପାରିବ ।

## ପଶୁପତି ବା ଶିବ ବା ପ୍ରଜାପତିଙ୍କ ଆରାଧନା :

ମହେଞ୍ଜୋଦାରୋର ମିଳିଥିବା ମୃଣ୍ମୟ ମୋହରମାନଙ୍କରୁ ଗୋଟିଏ ମୋହରରେ ମୂର୍ତ୍ତିଟିଏ ଅଙ୍କିତ ହୋଇଛି ଯାହାକୁ କି ସାର୍ ଜନ୍ ମାର୍ଶାଲ୍ ସର୍ବପ୍ରଥମେ ପଶୁପତି ଶିବ ଅର୍ଥରେ ଗ୍ରହଣ କରିଛନ୍ତି ଏବଂ ପରବର୍ତ୍ତୀ ବିଦ୍ୱାନ୍‌ମାନେ ତାହା ହିଁ ଗ୍ରହଣ କରିଛନ୍ତି । (୭୬) ମୂର୍ତ୍ତିଟିର ସବିଶେଷ ବର୍ଣ୍ଣନା ହେଲା ଏହାର ତିନି ମୁଣ୍ଡ । ଗୋଟିଏ ମୁଣ୍ଡ ଅବଶ୍ୟ ପ୍ରକାଶ୍ୟ ଭାବରେ ଦେଖାଯାଉଛି । ମୁଣ୍ଡର ଦୁଇପଟେ ସାମାନ୍ୟ ଫୁଲିଯାଇଥିବା ଅଂଶକୁ ଦେଖି ମନେହୁଏ ଆଉ ଦୁଇଟି ମୁଣ୍ଡ ମଧ୍ୟ ସେଠାରେ ଲୁଚି ରହିଅଛି । ତ୍ରିଶୂଳ ଆକାରରେ ଶିଙ୍ଗରେ ତିଆରି ମୁକୁଟଟିଏ ଏ ମୂର୍ତ୍ତିର ମସ୍ତକରେ ବିଦ୍ୟମାନ । ଏ ଶିଙ୍ଗ ଦୁଇଟି ପୁଣି ଗୋଲାକାର ହୋଇ ଅଗ୍ରଭାଗରେ ପ୍ରାପ୍ତ ପରସ୍ପର ସହିତ ମିଶିଯାଇଛନ୍ତି । ଏ ମୂର୍ତ୍ତି ନାନାପ୍ରକାର ଅଳଙ୍କାରରେ ମଣ୍ଡିତ ଏବଂ ଊର୍ଦ୍ଧ୍ୱଲିଙ୍ଗ ଅବସ୍ଥାରେ ଯୋଗାସୀନ । ଏହାର ବାମ ପଟେ ଅଛନ୍ତି ଗୋଟିଏ ମଇଁଷି ଓ ଗୋଟିଏ ଗଣ୍ଡା ଏବଂ ଦକ୍ଷିଣ ପଟେ ଅଛନ୍ତି ଗୋଟିଏ ହାତୀ ଓ ଗୋଟିଏ ବାଘ । ପାଦପୀଠର ତଳେ ଶିଙ୍ଗ ଥିବା ଦୁଇଟି ହରିଣ ଆସନ ଆଡ଼କୁ ଶିଙ୍ଗ ଦେଖାଇ ଭକ୍ତି ପ୍ରଦର୍ଶନ ଭଙ୍ଗୀରେ ରହିଛନ୍ତି । ବିଭିନ୍ନ ପଶୁମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଯୋଗଲୀନ ଥିବା ହେତୁ ମାର୍ଶାଲ ଏହାଙ୍କୁ ଶିବଙ୍କର ପଶୁପତି ଭାବର ପ୍ରକାଶମାନ ମୂର୍ତ୍ତି ବୋଲି କହିଛନ୍ତି । ପରବର୍ତ୍ତୀ ଅନୁଚ୍ଛେଦମାନଙ୍କରେ ହୋଇଥିବା ଆଲୋଚନାରୁ ଜଣାପଡ଼ିବ ଯେ ଏ ମୂର୍ତ୍ତି ଖାଲି ପଶୁପତିଭାବର ସଙ୍କେତ ଦେଉନାହିଁ ; ଆଉ ଅନେକ କିଛି ଭାବର ସଙ୍କେତ ଦେଉଛି ମଧ୍ୟ ।

ପ୍ରାଚୀନ ସୁମେରରେ (ଆଧୁନିକ ଇରାକ) ପ୍ରଚଳିତ ଥିବା 'ଇସ୍ତା-ବାଣୀ' ଉପାଖ୍ୟାନ (ଏଙ୍କିଡ଼ୋ ଉପାଖ୍ୟାନ) ଓ ହିନ୍ଦୁମାନଙ୍କ ମଧ୍ୟରେ ପ୍ରଚଳିତ 'ଋଷ୍ୟଶୃଙ୍ଗ' ଉପାଖ୍ୟାନ ସହିତ ଏହି ମୂର୍ତ୍ତିର ସମ୍ପର୍କ ଥିବା ପରି ମନେହୁଏ । ସୁମେରୀୟ ଉପାଖ୍ୟାନଟି ହେଲା—ଏହି ଦେଶର ଶାସକ ଥିଲେ 'ଗିଲ୍‌ଗାମେସ୍' । ସେ ନିଜ ଦେଶର ବହୁତ୍

ବଢ଼ାଇବା ପାଇଁ ଏବଂ ଦେଶକୁ ମହାମାରି ହାତରୁ ରକ୍ଷା କରିବା ପାଇଁ ଜଙ୍ଗଲରେ ବାସ କରୁଥିବା ସେତେବେଳର ଶ୍ରେଷ୍ଠ ଦେବତା 'ଇସ୍ତାର-ରାଣୀ' ବା ଏଙ୍କିଡୋଙ୍କୁ ନିଜ ରାଜଧାନୀକୁ ଆଣିବାକୁ ଇଚ୍ଛା କଲେ । ଏଙ୍କିଡୋଙ୍କ କ୍ଷମତା ଥିଲା ଅଦ୍ଭୁତ । ବହୁକାଳ ଧରି ଜଙ୍ଗଲରେ ରହିବା ଫଳରେ ତାଙ୍କ ଜଟାଜୁଟ ଶିଙ୍ଗଭଳି ଦେଖାଯାଉଥିଲା । ସେ ପଶୁ-ପରିବେଷ୍ଟିତ ହୋଇ ରହୁଥିଲେ । ତେଣୁ ତାଙ୍କୁ ଆଣିବା ପାଇଁ ରାଜା ଜଣେ ବ୍ୟାଧକୁ ବରାଦ ଦେଲେ । ବ୍ୟାଧ 'ଇସ୍ତର' ଦେବୀଙ୍କ ଅସ୍ଥାନରୁ ଜଣେ ବାରନାରୀକୁ ସଙ୍ଗରେ ନେଇ ତା'ର ସାହାଯ୍ୟରେ ଏଙ୍କିଡୋଙ୍କୁ ଭୁଲାଇ ଗିଲ୍‌ଗାମେଶ୍‌ଙ୍କ ରାଜଧାନୀକୁ ଆଣିଲେ । ସେ ଆସିବା ଫଳରେ ସୁମେର ରାଜ୍ୟରୁ ମହାମାରି ଦୂର ହେଲା ଏବଂ ଗିଲ୍‌ଗାମେଶ୍ ତାଙ୍କର ଶତ୍ରୁମାନଙ୍କୁ ଅଧିକରୁ ଅଧିକ ପରାଭୂତ କରି ବହୁ ବିଭବର ଅଧିକାରୀ ହୋଇପାରିଥିଲେ । ଭାରତୀୟ ପୁରାଣବର୍ଣ୍ଣିତ ଋଷ୍ୟଶୃଙ୍ଗଙ୍କ ଉପାଖ୍ୟାନ ମଧ୍ୟ ଠିକ୍ ଅନୁରୂପ । ବିଭାଣ୍ଡକ ମୁନିଙ୍କ ଆଶ୍ରମରେ ରହୁଥିବା ଋଷ୍ୟଶୃଙ୍ଗଙ୍କୁ ଜଣେ ବେଶ୍ୟାର ସହାୟତାରେ ଅଙ୍ଗରାଜ୍ୟକୁ ଅଣାଯିବା ଫଳରେ ସେଠାରୁ ମହାମାରୀ ଦୂର ହେଲା ଏବଂ ପ୍ରଚୁର ଶସ୍ୟ ଉତ୍ପନ୍ନ ହେଲା । ମହେଞ୍ଜୋଦାରୋସ୍ଥ ମୂର୍ତ୍ତିଟିର ବସିବା ଭଙ୍ଗୀରୁ ଆମେ ଦେଖିବା ଯେ ଉପରଲିଖିତ ଦୁଇ ଉପାଖ୍ୟାନବର୍ଣ୍ଣିତ ଅମିତ କ୍ଷମତାଶାଳୀ ଦେବ-ପୁରୁଷଙ୍କ ଭଳି ଏ ମଧ୍ୟ ଅରଣ୍ୟବାସୀ ଓ ପଶୁପରିବେଷ୍ଟିତ । ହା'ଙ୍କର ଶୃଙ୍ଗାଙ୍କିତ ମୁକୁଟରୁ ଜଣାଯାଏ ଏ ମଧ୍ୟ ଶୃଙ୍ଗଧାରୀ । ପୁଣି ଊର୍ଦ୍ଧ୍ୱଲିଙ୍ଗ ଅବସ୍ଥାରୁ ଜଣାଯାଏ ଯେ ଏ ମଧ୍ୟ କୌଣସି ନାରୀପ୍ରତି ଆକୃଷ୍ଟ ଏବଂ ପ୍ରଜନନ-କ୍ରିୟା ଲାଗି କ୍ଷୁବ୍ଧ । ଏ ଯେଉଁ ଦେବତା ହୁଅନ୍ତୁ ନା କାହିଁକି, ଏ ପ୍ରକାର ଊର୍ଦ୍ଧ୍ୱଲିଙ୍ଗ ଭଙ୍ଗୀ ହା'ଙ୍କର ସୃଷ୍ଟିକାରଣୀ ଶକ୍ତିର ଇଙ୍ଗିତ ସଙ୍କେତ ଦେଉଅଛି । ଅତଏବ ଏହି ମୂର୍ତ୍ତିଟିର ଉପରୋକ୍ତ ଉପାଖ୍ୟାନଦ୍ୱୟ ସହିତ ସମ୍ପର୍କ ରହିଛି ଓ ଏହାର ନିର୍ମାଣ ତନ୍ନିହିତ ସୃଜନାତ୍ମକ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ବୋଲି ମନେହୁଏ । ସମ୍ଭବତଃ ଏ ମୂର୍ତ୍ତି ହେଉଛନ୍ତି 'ପ୍ରଜାପତି' (ଜୀବମାନଙ୍କର ସ୍ରଷ୍ଟା) ଯାହାଙ୍କର ଭୂୟୋବର୍ଣ୍ଣନା ଆମେ ବେଦରେ ଦେଖିବାକୁ ପାଇଥାଉଁ । ହୁଏତ ସିନ୍ଧୁ-ସଭ୍ୟତା କାଳରେ ଯେଉଁ ଚିନ୍ତାଧାରା ବା ତତ୍ତ୍ୱ ଭ୍ରୂଣ ଅବସ୍ଥାରେ ଥିଲା ପରବର୍ତ୍ତୀ କାଳରେ ଭାରତଭୂମିରେ ତା'ର ଭୂୟୋବିକାଶ ଘଟିଅଛି ।

ଏଥିରୁ ଆଉ ଏକ ତତ୍ତ୍ୱର ସନ୍ଧାନ ମିଳୁଛି, ଯାହାର ଭୂୟୋବିକାଶ ମଧ୍ୟ ପରେ ହୋଇଥିଲା । ତାହା ହେଉଛି ପ୍ରଜାପତି ବା ସୃଷ୍ଟିକର୍ତ୍ତାଙ୍କ ତ୍ରିଧା-ତତ୍ତ୍ୱ (Triple principle) । ବୈଦିକ 'ପ୍ରଜାପତି' ଓ 'ପଶୁପତି' ଏକାର୍ଥବୋଧକ ଏବଂ ଉଭୟ ସୃଷ୍ଟିକର୍ତ୍ତାଙ୍କର ଅର୍ଥରେ ପ୍ରଯୁକ୍ତ । ଉପରୋକ୍ତ ମୃଣ୍ମୟ ମୋହରରେ ଅଙ୍କିତ ମୂର୍ତ୍ତିର ତିନିଗୋଟି ମୁଖରେ ଓ ମୁକୁଟରେ ତ୍ରିଶୂଳ ଚିହ୍ନରେ ଏହି ତ୍ରିଧା-ଶକ୍ତିର ମୂଳ ବୀଜ ନିହିତ ଥିବା ଭଳି ମନେହୁଏ । କାଳକ୍ରମେ ଅବଶ୍ୟ ବିଭିନ୍ନ ଶାସ୍ତ୍ରମାନଙ୍କରେ ଏହି 'ତ୍ରିଧାଶକ୍ତି'ର ବିସ୍ତୃତ

ବହୁବିଧ ଦାର୍ଶନିକ ଓ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ କରାଯାଇଅଛି । ବାସ୍ତବିକ ସୃଷ୍ଟି-ସମ୍ପର୍କୀୟ ବୈଦିକ 'ତ୍ରିଧା-ତତ୍ତ୍ୱ'ର ବିସ୍ତାର ଏହାରି ଉପରେ ଆଧାରିତ । (୩୭) ଡ. ଏସ୍. ଅଗ୍ରୱାଲ ପ୍ରଜାପତିଙ୍କ ଏହି 'ତ୍ରିଧା-ତତ୍ତ୍ୱ'ର ଅଭିବ୍ୟକ୍ତି ନିମ୍ନମତେ ହୋଇଥିବାର ଦର୍ଶାଇଛନ୍ତି ।

୧-ଶବ୍ଦରୂପ (ସ୍ୱନବତୀ ତନୂଃ), ଯଥା ଅ-ଉ-ମ୍ ।

୨-ଇନ୍ଦ୍ରିୟରୂପ (ଲିଙ୍ଗବତୀ ତନୂଃ), ଯଥା : ସ୍ତ୍ରୀ, ପୁରୁଷ ଓ କ୍ଲୀବ ।

୩ ଆଲୋକରୂପ (ଭାସ୍ୱତୀ ତନୂଃ), ଯଥା :ତିନି ଆଲୋକ, ଅଗ୍ନି, ବାୟୁ ଓ ଆଦିତ୍ୟ ।

୪-ତ୍ରିଦେବରୂପ (ଅଧିପତିବତୀ ତନୂଃ), ଯଥା ବ୍ରହ୍ମା, ରୁଦ୍ର ଓ ବିଷ୍ଣୁ ।

୫-ତ୍ରିମୁଖରୂପ (ମୁଖବତୀ ତନୂଃ), ଯଥା ଯଜ୍ଞର ତିନି ଅଗ୍ନି ବୋଲାଉଥିବା ଗାର୍ହପତ୍ୟାଗ୍ନି, ଦକ୍ଷିଣାଗ୍ନି ଓ ଆହବନୀୟାଗ୍ନି ।

୬-ଜ୍ଞାନରୂପ (ବିଜ୍ଞାନବତୀ ତନୂଃ), ଯଥା : ଋକ୍, ଯଜୂଃ ଓ ସାମ ।

୭-ଲୋକରୂପ (ଲୋକବତୀ ତନୂଃ), ଭୂଃ, ଭୁବଃ ଓ ସ୍ୱଃ ବା ପୃଥିବୀ, ଆକାଶ ଓ ସ୍ୱର୍ଗ ।

୮-କାଳରୂପ (କାଳବତୀ ତନୂଃ) ଯଥା : ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ।

୯-ଶକ୍ତିରୂପ (ପ୍ରତାପବତୀ ତନୂଃ) ଯଥା : ମନ (ସୂର୍ଯ୍ୟ), ପ୍ରାଣ ଓ ବସ୍ତୁ (ଅଗ୍ନି)

୧୦-ପୁଷ୍ଟିରୂପ (ଆପ୍ୟାୟନବତୀ ତନୂଃ), ଯଥା : ଅନ୍ନ (ଖାଦ୍ୟ), ଆପଃ (ଜଳ) ଓ ଚନ୍ଦ୍ରମା (ସୋମ) ।

୧୧-ଚେତନରୂପ (ଚେତନବତୀ ତନୂଃ) ଯଥା : ବୁଦ୍ଧି,ମନ ଓ ଅହଙ୍କାର ।

୧୨-ପ୍ରାଣରୂପ (ପ୍ରାଣବତୀ ତନୂଃ), ଯଥା : ପ୍ରାଣ, ଅପାନ ଓ ବ୍ୟାନ (୩୮)

ପ୍ରଜାପତିଙ୍କର 'ଇନ୍ଦ୍ରିୟ ରୂପ' ବା 'ଲିଙ୍ଗବତୀ ତନୂଃ' ବିଷୟରେ ଯାହା ପୂର୍ବରୁ ଲୁହାଯାଇଅଛି,.ସେ ସମ୍ପର୍କରେ ସଙ୍କେତ ଆମେ ପାଇପାରିବା ସିନ୍ଧୁ-ସଭ୍ୟତାର ଧ୍ୱଂସାବଶେଷରୁ ମିଳିଥିବା ଲିଙ୍ଗ ଆକୃତିର ପଥରରୁ ପୂର୍ବବର୍ତ୍ତିତ ଅସଂଖ୍ୟ 'ମାତୃଦେବୀ'ଙ୍କ ମୃଣ୍ମୟ ମୂର୍ତ୍ତିରୁ । ପ୍ରାୟ ସବୁ ନଗରର ଧ୍ୱଂସାବଶେଷରୁ ଲିଙ୍ଗ ଆକୃତିର ପଥରମାନ ବାହାରିଥିବା କଥା ପ୍ରତ୍ନତାତ୍ତ୍ୱିକ ଆଲ୍‌ଚିନ୍ ଦର୍ଶାଇ ଲୁହନ୍ତି । (୩୯) ଏଥିରୁ ଉକ୍ତ ସଭ୍ୟତାରେ ଥିବା ଲିଙ୍ଗ-ପୂଜାର ପ୍ରାବଲ୍ୟ ଅନୁଭୂତ ହୁଏ । ଉପଯୁକ୍ତ ଆଲୋଚନାରୁ ତେଣୁ ନିମ୍ନଲିଖିତ ସତ୍ୟମାନ ନିସ୍ପାଦିତ ହେବ ।

କ—ସିନ୍ଧୁ-ସଭ୍ୟତାରେ ଯୋଗୀରାଜ ପଶୁପତି ଶିବ ବା ପ୍ରଜାପତିଙ୍କର ଆରାଧନା କରାଯାଉଥିଲା ।

ଖ—ସେଠାରେ ଲିଙ୍ଗ-ପୂଜା ମଧ୍ୟ ଥିଲା ।

ଗ—ବୈଦିକ ସାହିତ୍ୟରେ ଭୂୟୋଭୂୟଃ ବର୍ଣ୍ଣିତ ହୋଇଥିବା ପ୍ରଜାପତିଙ୍କ ସୃଜନୀ-ଶକ୍ତିର କ୍ରିୟା-ତତ୍ତ୍ୱ ସେତେବେଳେ ଭ୍ରୂଣାତ୍ମକ ଅବସ୍ଥାରେ ଥିଲା ।

ଘ—ସୃଷ୍ଟିର ଏ ରହସ୍ୟ ବୁଝିବା ପାଇଁ ଅନ୍ତରଙ୍ଗ ଏବଂ ଆତ୍ମ ପ୍ରଚେଷ୍ଟା ଚାଲିଥିଲା ।

## ପ୍ରାଣୀଙ୍କଠାରେ ଦେବତ୍ୱର ସନ୍ଧାନ :

ଭିନ୍ନଙ୍କ ମତାନୁସାରେ ବୃକ୍ଷପୂଜା ସହିତ ବିଭିନ୍ନ ପ୍ରାଣୀଙ୍କର ଆରାଧନା ମଧ୍ୟ ସିନ୍ଧୁ-ସଭ୍ୟତାର ଧ୍ୱଂସାବଶେଷରୁ ମିଳିଥିବା ଅଧିବାସୀଙ୍କ ଧର୍ମ-ଜୀବନକୁ ଆଚ୍ଛନ୍ନ କରି ରଖିଥିଲା । (୪୦) ଏହି ସଭ୍ୟତାର ପଶୁମୂର୍ତ୍ତି ସମ୍ବଳିତ ବିଭିନ୍ନ ମୃଣ୍ମୟ ମୋହରମାନ ଏହାର ଭୂରି ଭୂରି ପ୍ରମାଣ ଦେଇଥାଏ । ଗୋଟିଏ ଅତି କୌତୂହଳୋଦ୍ଦୀପକ ବିଷୟ ହେଉଛି ହରପ୍ପାଠାରେ ମିଳିଥିବା ଧୂପଦାନର ଚିତ୍ର । ଏହାର ଆକାର ବିଚିତ୍ର । ଏହାକୁ ସ୍ଥାପିତ କରାଯାଇଛି ଗୋଟିଏ ଏକଶୃଙ୍ଗୀ (ଗୋଟିଏ ଶୃଙ୍ଗ ଉପରେ ଆଉ ଗୋଟିଏ ଶୃଙ୍ଗ ଥିବାରୁ ଚିତ୍ରରେ ଏହା ଏକଶୃଙ୍ଗୀ ଭଳି ଦିଶୁଛି ) ପଶୁର ଗ୍ରୀବାଦେଶର ଠିକ୍ ତଳକୁ । ଏ ମଧ୍ୟ ଏକ ବିଚିତ୍ର ପଶୁ ଯାହାକୁ ଆଦୌ ଚିହ୍ନି ହେଉନାହିଁ । ଏହାର ଶରୀର ଅର୍ଦ୍ଧାଧିକ ଘୋଡ଼ା ପରି ଏବଂ ବେକରୁ ମୁଣ୍ଡ ପର୍ଯ୍ୟନ୍ତ ବଣୁଆ ଗଧ ପରି । କିନ୍ତୁ ଶିଙ୍ଗଟି ପ୍ରମାଣ କରାଇ ଦେଉଛି ଯେ, ଏହା ଗଧ ନୁହେଁ କି ଘୋଡ଼ା ନୁହେଁ । ଆଉ କେତେକ ମୋହରରେ ମଣିଷ ଏହି ଧୂପଦାନକୁ ବୋହିନେଇ ଯିବାର ଦୃଶ୍ୟ ମଧ୍ୟ ଅଙ୍କିତ ହୋଇଅଛି । ଆଉ କେତେକ ମୋହରରେ ବଣ-ମଇଁଷି, ଗଣ୍ଡା ଓ ବାଘଙ୍କୁ ଖାଦ୍ୟ-ପାତ୍ରରେ ଖାଇବାକୁ ଦିଆ-ଯାଉଥିବାର ମୂର୍ତ୍ତି ଅଙ୍କିତ ଅଛି । ଏ ପାତ୍ର କିନ୍ତୁ ଗାଈ-ମଇଁଷିଙ୍କୁ ଖାଇବାକୁ ଦିଆଗଲା ଭଳି ତଳେ ରଖାଯାଇନାହିଁ । ଅନ୍ୟ ପକ୍ଷରେ ଏହା ଉଚ୍ଚ ସ୍ଥାନରେ ରଖା-ଯାଇଅଛି । ଅତଏବ, ଏଥିରେ ପୂଜାର ସାମଗ୍ରୀ ଅର୍ପିତ ହେଉଥିବ ବୋଲି ମନେହୁଏ । ଆଉ କେତେକ ମିଶ୍ରିତ ପଶୁଙ୍କର ବିଚିତ୍ର ଚିତ୍ର ମୁଦ୍ରିତ ହୋଇଥିବା ମୋହରମାନ ମଧ୍ୟ ମିଳିଛି; କିନ୍ତୁ ସମସ୍ତଙ୍କର ବୃଷଭର ଶିଙ୍ଗ ଭଳି ଶିଙ୍ଗ ରହିଛି । ସ୍ୱତନ୍ତ୍ର ବୃଷଭର ମୂର୍ତ୍ତି ଥିବା ମୋହରମାନ ମଧ୍ୟ ମିଳିଛି । ଗୋଟିଏ ମୂର୍ତ୍ତିରେ ଶିଙ୍ଗ ଥିବା ମଣିଷଟିଏ ଅଛି । ତା'ର

ଶରୀର ଅର୍ଦ୍ଧେକ ମନୁଷ୍ୟ ଭଳି ଓ ଅର୍ଦ୍ଧେକ ଗବାଦି ପଶୁ ଭଳି । ସେ ଶିଙ୍ଗ ଥିବା ଗୋଟିଏ ବାଘକୁ ଆକ୍ରମଣାତ୍ମକ ଭଙ୍ଗୀରେ ଧରିଛି । ସୁମେରୀୟ ଏଙ୍କିଡୋ ଶିଙ୍ଗ ଥିବା ଗୋଟିଏ ବାଘକୁ ଆକ୍ରମଣ କରୁଥିବା ମୂର୍ତ୍ତିର ପ୍ରଭାବ ଉପରୋକ୍ତ ମୂର୍ତ୍ତି ଉପରେ ପଡ଼ିଥିବ ବୋଲି ଅନେକ ତତ୍ତ୍ୱବିଦ ମତ ଦିଅନ୍ତି । ହିନ୍ଦୁ ଦେବତାମାନଙ୍କ ମଧ୍ୟରେ ଥିବା ନୃସିଂହଙ୍କର କଳ୍ପନା (ଅର୍ଦ୍ଧେକ ମନୁଷ୍ୟ ଓ ଅର୍ଦ୍ଧେକ ସିଂହ) ଏଥି ସହିତ ପ୍ରାୟ ମେଳ ଖାଇଯାଉଥିବା ଭଳି ମନେ ହେଉଛି । ଏହି ଚିନ୍ତାଧାରାର ବୀଜ ଯେ ହିନ୍ଦୁ-ସଂସ୍କୃତିରେ ନିହିତ ନ ଥିବ, ସେକଥା କହିହେବନାହିଁ । ତିନୋଟି ମୁଣ୍ଡଥିବା ଗୋଟିଏ ଶିଙ୍ଗ ଥିବା ବଣ୍ଡୁଆ ଗଧର ମୋହର ବାହାରିଛି, ଯେଉଁମାନଙ୍କର ଦୃଷ୍ଟି ତିନି ଦିଗକୁ ଅଛି । ତଳ, ମଝି ଓ ଉପର ଏହିପରି ଭାବରେ ଏ ଗ୍ରୀବାଣି ରହିଅଛି । ଏହା ପ୍ରଜାପତିଙ୍କର "ଲୋକବତ୍ତା ତନୁ"ର (ଭୂର୍ଭୁବ ସ୍ୱଃ ବା ପୃଥିବୀ, ଆକାଶ ଓ ସ୍ୱର୍ଗକୁ ବ୍ୟାପିଥିବା ତ୍ରିଧାତତ୍ତ୍ୱ) ସଙ୍କେତ ଦେଉଛି କି ନାହିଁ, ତାହା ଅବଶ୍ୟ ଗବେଷଣାସାପେକ୍ଷ । ସିନ୍ଧୁ-ସଂସ୍କୃତିରେ 'ଶୃଙ୍ଗ'କୁ ସୃଷ୍ଟିର ସଙ୍କେତ ରୂପରେ ଗ୍ରହଣ କରାଯାଇଥିବାର ବହୁଳ ପ୍ରମାଣ ମିଳୁଥିବାରୁ ଶିଂହିତ ଚିତ୍ରଟି ପ୍ରଜାପତିଙ୍କର ଉପରୋକ୍ତ 'ତ୍ରିଧାତତ୍ତ୍ୱ'ର ସଙ୍କେତ ବୋଲି ମାନିନେବାର ଯଥେଷ୍ଟ କାରଣ ରହିଅଛି । ଆଉ ଗୋଟିଏ ଠିଆହୋଇଥିବା ମଣିଷର ଚିତ୍ରାଙ୍କିତ ମୋହର ବାହାରିଛି, ଯାହାର କି ଅର୍ଦ୍ଧେକ ଶରୀର ହେଉଛି ବାଘର; କେବଳ ମୁଣ୍ଡଟି ଯାହା ମଣିଷର । ସବୁ ମୋହରଗୁଡ଼ିକରେ କିଛି ନା କିଛି ଅବୋଧ ଭାଷାରେ ଲେଖାଯାଇଅଛି, ଯାହାକି ଏ ପର୍ଯ୍ୟନ୍ତ ପଢାଯାଇପାରିନାହିଁ । କେତେକ ତତ୍ତ୍ୱବିଦ୍ ଏହାକୁ ଚିତ୍ରଲିପି ମନେକରି ଏହାର ପାଠୋଦ୍ଧାର କରିବାକୁ ଚେଷ୍ଟା କରିଛନ୍ତି । କିନ୍ତୁ ସେମାନଙ୍କର ଚେଷ୍ଟା ଆଂଶିକ ସଫଳ ହୋଇଛି ମାତ୍ର । ସର୍ବମୋଟ ପ୍ରାୟ ୪୦୦୦ ମୃଣ୍ମୟ ମୋହର ଆବିଷ୍କୃତ ହୋଇଥିବା ସ୍ଥଳେ କାଁ ଭାଁ ଯେଉଁ କେତେକ ମୋହରସ୍ଥ ଚିତ୍ରଲିପିର ଆଂଶିକ ପାଠୋଦ୍ଧାର ମାତ୍ର କରାଯାଇଅଛି, ତାହା ସମସ୍ତ ଚିତ୍ରଲିପିର ଦ୍ୱାରକୁ ଉଦ୍‌ଘାଟନ କରିବାରେ ଆଦୌ ସଫଳ ହୋଇ ପାରିନାହିଁ । ଏଣୁ ସେ ସମ୍ପର୍କରେ ବର୍ତ୍ତମାନ ଯାହା କିଛି କୁହାଯାଉଛି, ତାହା କେବଳ ଅନୁମାନ ଓ କଳ୍ପନାକୁ ଭିତ୍ତିକରି କୁହାଯାଇଛି ମାତ୍ର । ଅତଏବ, ଉପରୋକ୍ତ ଆଲୋଚନାରୁ ଜଣାଯିବ ଯେ ସିନ୍ଧୁ-ସଂସ୍କୃତିର ଅଧିବାସୀମାନେ ଭଗବାନଙ୍କ ଅସ୍ତିତ୍ୱ ବିଷୟରେ ସମ୍ୟକ୍ ଅବହିତ ଥିଲେ ଏବଂ ତାଙ୍କର ସ୍ୱରୂପ ବିଷୟରେ ବର୍ତ୍ତମାନ ଭଳି ମଧ୍ୟ ସେତେବେଳେ ବାଦାନୁବାଦ ଚାଲିଥିଲା । ସେ ଥିଲେ ସାଧାରଣ ମଣିଷଠାରୁ ମଧ୍ୟ ଭିନ୍ନ ଏବଂ ସାଧାରଣ ପଶୁଠାରୁ ମଧ୍ୟ ଭିନ୍ନ । ତେଣୁ କଳ୍ପନାର ପୁଟ ଦେଇ ତାଙ୍କୁ ବହୁ ଲୋକ ବହୁପ୍ରକାର ଆରାଧନା କରୁଥିଲେ । ଏହି ବହୁ ଦେବତାର ଆରାଧନା ମଧ୍ୟରେ କିନ୍ତୁ ଥିଲା ଏକ ଦେବତାର ତତ୍ତ୍ୱ ନିହିତ, ଯାହାର କି ଭୂୟୋବିକାଶ ଏହି ଭାରତଭୂମିରେ କ୍ରମେ ଘଟିଥିଲା । ଏହି ଚିନ୍ତାଧାରା ଉପରେ ଦୃଢ଼ ଆସ୍ଥା ସ୍ଥାପନ କରି ସେଦିନ ଋଗ୍‌ବେଦର ଋଷି କହିଥିଲେ :

"ଏକଂ ସଦ୍ ବିପ୍ରାଃ ବହୁଧା ବଦନ୍ତି" (୪୦-କ)

ଅର୍ଥାତ୍ ସେହି ଏକ ସତ୍ତାକୁ ପଣ୍ଡିତମାନେ ବହୁପ୍ରକାର କହିଥାଆନ୍ତି । ଅତଏବ ବହୁତ୍ୱରେ ଏକତ୍ୱର ସନ୍ଧାନ ନେବାର ଧାରଣା ଯାହାକି ଭାରତୀୟ ଆଧ୍ୟାତ୍ମିକ ଜୀବନ-ଧାରାର ମୂଳାଧାର ସ୍ୱରୂପ ଅଟେ, ତାହାର ନିଷ୍ପତ୍ତି ଆକରକ୍ଷେତ୍ର ହେଉଛି ଏହି ସିନ୍ଧୁ-ସଂସ୍କୃତି ।

## ଆତ୍ମା ଉପରେ ବିଶ୍ୱାସ :

ଦେହକୁ ଛାଡ଼ି ଏକ ଦେହାତୀତରେ ଜୀବନ ଅଛି (ଏହା କିନ୍ତୁ ବସ୍ତୁ ନୁହେଁ) ଯେ କି ହେଉଛି ମଣିଷର ସକଳ ଶକ୍ତିର ନିୟନ୍ତା, ଏ ଧାରଣା ସିନ୍ଧୁ-ସଭ୍ୟତାର ଅଧିବାସୀମାନଙ୍କ ମଧ୍ୟରେ ଥିଲା । ଏହି ଶକ୍ତିଟି ଥିବା ପର୍ଯ୍ୟନ୍ତ ଜୀବ ବଞ୍ଚିଥାଏ ଏବଂ ଏହାର ଅନ୍ତର୍ଦ୍ଧାନରେ ତା'ର ହୁଏ ମୃତ୍ୟୁ । ଏଣୁ ଏହାକୁ କୁହାଯାଏ ଜୀବନ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ ଏଇ 'ଜୀ' ଶବ୍ଦଟି ପ୍ରାଚୀନ ବ୍ୟାବିଲନ୍ ଦେଶୀୟ । ଖୁବ୍ ସମ୍ଭବ ତା' ପୂର୍ବରୁ ସୁମେର ଦେଶୀୟ । ଏଇ 'ଜୀ' ଅର୍ଥରେ ସେମାନେ ବୁଝୁଥିଲେ ଜୀବ ଭିତରେ ଥିବା ଆତ୍ମିକ ଶକ୍ତିକୁ । ସେଇଥିରୁ ପରେ ବାହାରିଲା 'ଜୀଇବା' କଥାଟି । ଏଇ 'ଜୀ'ରୁ ସଂସ୍କୃତ 'ଜୀବ' ବାହାରିଥିବାର ଖୁବ୍ ଅନୁମାନ ହେଉଛି । (୪୧) ପୁଣି ତାଙ୍କ ମତରେ ଇଜିପ୍ଟରେ ଖ୍ରୀ: ପୂ. ୧୪ ଶତାବ୍ଦୀ ବେଳକୁ ଏହା 'ଆଟେନ୍' (ଆତ୍ମନ୍) ଧର୍ମ ନାମରେ ଖ୍ୟାତି ଲାଭ କରିଥିଲା । ଗ୍ରୀସ୍‌ର ପାଇଥାଗୋରସ୍ (ଖ୍ରୀଷ୍ଟୀୟ ୯ମ ଶତାବ୍ଦୀ) ଏହି ଆତ୍ମ-ଧର୍ମର ଚେତନା ଦ୍ୱାରା ପ୍ରଭାବିତ ହୋଇଥିଲେ । ଜୈନଧର୍ମର ମୂଳ-ତତ୍ତ୍ୱ ହେଉଛି ଏହି ଆତ୍ମାଧର୍ମ ଏବଂ ତାହା ଲାଭ କରିବା ଦ୍ୱାରା ଉପାସକ ଅମିତ ଶକ୍ତିଶାଳୀ ପରମଜେତା (ଜିନ) ହୋଇପାରେ । ସିନ୍ଧୁ-ସଭ୍ୟତାର ଉତ୍ତର-କାଳରେ 'ଆତ୍ମା' ସମ୍ପର୍କରେ ଗଭୀର ଅନୁଶୀଳନ ଓ ପରିଚର୍ଚ୍ଚା ହୋଇ ଯେଉଁ ରାଶି ରାଶି ଗ୍ରନ୍ଥର ଉଦ୍ଭବ ହୋଇଛି ଏବଂ ଯେଉଁଭଳି ଭାବରେ ଏହାର ସନ୍ଧାନରେ ଯୁଗଯୁଗ ଧରି ଉପନିଷଦୀୟ ଋଷିମାନେ ଜିଜ୍ଞାସା ଉପରେ ଜିଜ୍ଞାସା କରି ଚାଲିଛନ୍ତି, ସେଭଳି ଭାବରେ ଆତ୍ମାକୁ ବୁଝିବାର ଅବସ୍ଥା ସେତେବେଳେ ହୁଏତ ନ ଥିବ । କିନ୍ତୁ ଏ ସଂପର୍କରେ ଯେ ଏକ ମୋଟାମୋଟି ଧାରଣା ଲୋକମାନଙ୍କର ମଧ୍ୟରେ ଥିଲା ଏବଂ ଏ ଧାରଣା ଯେ କେବଳ ଜ୍ଞାନୀ ପୁରୋହିତ ଗୋଷ୍ଠୀର ନୁହେଁ, ବରଂ ଏହା ଯେ ସାଧାରଣ ମଣିଷର ଧର୍ମ-ବିଶ୍ୱାସକୁ ମଧ୍ୟ ଅଚ୍ଛନ୍ନ କରି ରଖିଥିଲା, ତାହାର ପ୍ରମାଣ ଆମେ ମିଳୁଥିବା ମୃଣ୍ମୟ ମୋହର ଓ କବର-ଖାନାର ବସ୍ତୁ-ସମୂହକୁ ପରୀକ୍ଷା ନିରୀକ୍ଷା କରି ଜାଣିପାରିଥାଉଁ । ସିନ୍ଧୁ-ଉପତ୍ୟକାର ମନ୍ଦିର ରୂପେ ଗଣ୍ୟ ହେଉଥିବା ବିରାଟ ସ୍ତୂପକୁ (Citadel mound) ଛାଡ଼ି ଜନସାଧାରଣଙ୍କ ବସତିରୁ ଗୋଟିଏ ମୃଣ୍ମୟ ମୋହର ବାହାରିଛି । ତା' ଉପରେ ବସିଥିବା ଦୁଇଟି ପକ୍ଷୀର ଚିତ୍ର ଅଛି । ଚିତ୍ରଟିକୁ ଗଭୀର ଭାବରେ ଅନୁଧ୍ୟାନ କଲେ ଜଣାଯିବ ଯେ ବେଦବର୍ଣ୍ଣିତ 'ପରମାତ୍ମା' ଓ 'ଜୀବାତ୍ମା' ସମ୍ପର୍କୀୟ ନିଗୂଢ଼ ତଥ୍ୟଟି ପକ୍ଷୀର

ଉଦାହରଣ ଦେଇ ସରଳ ଭାବରେ ବୁଝାଇ ଦିଆଯାଇଛି । ଗୋଟିଏ ପକ୍ଷୀ (ଜୀବାତ୍ମା) ସୁଖଦୁଃଖର ଫଳକୁ ଭୋଗୁଛି, କିନ୍ତୁ ଅପର ପକ୍ଷୀଟି ନିର୍ଲିପ୍ତ ହୋଇ ଚାହିଁ ରହିଛି । ବୈଦିକ ମନ୍ତ୍ରଟି ହେଲା—

ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟାଃ
ସମାନଂ ବୃକ୍ଷଂ ପରିଷସ୍ୱଜାତେ ।
ତୟୋରନ୍ୟଃ ପିପ୍‌ପଲଂ ସ୍ୱାଦୁ ଅତ୍ତି
ଅନଶ୍ନନନ୍ୟୋ ଅଭି ଚାକଶୀତି ।। (୪୧-କ)

ଅର୍ଥାତ୍ ଗୋଟିଏ ଅଶ୍ୱତ୍ଥ ବୃକ୍ଷରେ ସଖାସ୍ୱଭାବ ଧରି ଦୁଇଟି ସୁନ୍ଦର ପକ୍ଷୀ ବସିଛନ୍ତି । ସେଥିରୁ ଗୋଟିଏ ପକ୍ଷୀ (ଜୀବାତ୍ମା) ଫଳର ସ୍ୱାଦ ଭୋଗୁଛି । ଅପର ପକ୍ଷୀଟି (ପରମାତ୍ମା) ସେହିପରି ନିର୍ଲିପ୍ତ ଭାବରେ ଚାହିଁ ରହିଛି । ଇଜିପ୍‌ଟ, ବ୍ୟାବିଲୋନ ଓ ସୁମେରରେ ଯେଉଁ 'କା' ବା 'ଆଟନ୍‌'ର ଆରାଧନା କରାଯାଉଥିଲା, ତା'ଠାରୁ ଅଧିକ ଉନ୍ନତତର ଥିଲା ଏହି 'ଜୀବାତ୍ମା' ଓ 'ପରମାତ୍ମା' ସମ୍ପର୍କିତ ଆଧ୍ୟାତ୍ମିକ ଚିନ୍ତାଧାରା । ସିନ୍ଧୁ-ସଂସ୍କୃତିରେ ହୋଇଥିବା ଏହି ଲୋକପ୍ରିୟ ଆଧ୍ୟାତ୍ମିକ ଜିଜ୍ଞାସାର ପ୍ରଭାବ ଯେ ପରବର୍ତ୍ତୀ କାଳରେ ଭାରତୀୟ ଆଧ୍ୟାତ୍ମିକ ଓ ଦାର୍ଶନିକ ଚିନ୍ତାଧାରାକୁ ପ୍ରଭାବିତ ଓ ପୁଷ୍ପଳୀଭୂତ କରିଛି, ଏହା ନିଃସନ୍ଦେହ ରୂପରେ କୁହାଯାଇପାରେ ।

ସିନ୍ଧୁ-ଉପତ୍ୟକାର କେତେକ କବର ଖୋଳିବା ଫଳରେ ସେଥିମଧ୍ୟରୁ ଅନେକ ଚିତ୍ରିତ ମୃଣ୍ମୟପାତ୍ର, ମୃତ ବ୍ୟକ୍ତିର ଆତ୍ମାକୁ ତୁଷ୍ଟ କରିବାପାଇଁ ଖାଦ୍ୟ, ପାନୀୟ, ଅଳଙ୍କାର ଏବଂ ଅନ୍ୟାନ୍ୟ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷମାନ ରଖାଯାଇଥିବାର ପ୍ରମାଣ ମିଳୁଛି । ଏପରି କାହିଁକି କରାଯାଉଥିଲା ? ଏଥିରୁ ଅନୁମାନ କରିହେବ ଯେ, ଏ ବାହ୍ୟ ଶରୀର ବାହାରକୁ ଜଡ଼ ନିର୍ଜୀବ ଭଳି ଜଣାଯାଉଥିଲେ ମଧ୍ୟ ଏହାର ଯେ ଏକ ସୂକ୍ଷ୍ମ ଶରୀର ଅଛି ଏବଂ ତା'ର ମଧ୍ୟ ସାଧାରଣ ବାହ୍ୟ ସ୍ଥୂଳ-ଶରୀର ଭଳି ଅନେକ ଆବଶ୍ୟକତା ଯେ ରହିଅଛି, ଏହି ଧାରଣାର ବଶବର୍ତ୍ତୀ ହୋଇ ସେମାନେ ମୃତବ୍ୟକ୍ତିର ଆତ୍ମାର ବ୍ୟବହାର ଲାଗି କବର ଭିତରେ ଏତେଗୁଡ଼ିଏ ଜିନିଷ ରଖିଥିଲେ । ହରପ୍‌ପାସ୍ଥ କେତେକ କବରରେ ଛାଗ ଓ ମେଷ ବଳି ଦିଆଯାଇଥିବାର ପ୍ରମାଣ ମଧ୍ୟ ମିଳୁଛି । (୪୨) ଆଦ୍ୟ-ବୈଦିକ କାଳରେ ବା ଋଗ୍‌ବେଦୀୟ କାଳରେ ଯେତେବେଳେ ଉଭୟ ଶବ ସତ୍କାର ଓ ଶବକୁ କବର ଦେବା ପ୍ରଥା ପ୍ରଚଳିତ ଥିଲା, ସେତେବେଳେ ମୃତବ୍ୟକ୍ତିର ଆତ୍ମାଲାଗି ତା'ର ନିତ୍ୟ ବ୍ୟବହାର୍ଯ୍ୟ ଜିନିଷମାନ ତା' ପାଖରେ ରଖିବା କଥା ଋଗ୍‌ବେଦରେ ମଧ୍ୟ ବର୍ଣ୍ଣିତ ହୋଇଅଛି । (୪୩) ଆଜି ମଧ୍ୟ ରାଜସ୍ଥାନର କାଲିବଙ୍ଗାର କବର ତଳୁ ଯେଉଁ ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁମାନ ବାହାରିଛି, ସେ

ବିଷୟରେ ପ୍ରଭୁପୋତ୍ତମ ସିଂହଙ୍କର କମ୍ପ୍ଲିଟିତ ଉକ୍ତି ବିଶେଷ ଭାବରେ ପ୍ରଣିଧାନ-ଯୋଗ୍ୟ ;

"The funerary offerings including earthenware pots were placed near the head region in the pot. The personal belongings of the dead included a copper-bronze mirror placed near the head in one case while a large ring of shell was found near the left ear of another skeleton. The objects of ornament included beads of gold, carnelian, agate, jasper and steatite." (୪୪)

କବର ମଧ୍ୟରୁ ମିଳୁଥିବା ଗୋଟିଏ ମୃଣ୍ମୟପାତ୍ରରେ ତିନିଗୋଟି ମୟୂର ଚିତ୍ର ଅଙ୍କିତ ହୋଇଛି । ଏହି ମୟୂରମାନଙ୍କ ମଝିରେ ଅନେକ ଗୁଡ଼ିଏ ତାରା ଅଙ୍କିତ ହୋଇଛନ୍ତି । ମୟୂରମାନଙ୍କ ଉପରେ କ୍ଷୁଦ୍ର ମନୁଷ୍ୟମାନଙ୍କର ଚିତ୍ର ଅଙ୍କିତ ହୋଇଅଛି । ଅନେକ ତତ୍ତ୍ୱବିଦ୍‌ମାନଙ୍କର ମତ ଯେ, ଏହି ଚିତ୍ରରେ କବର ସୂକ୍ଷ୍ମ ଶରୀରକୁ ମୟୂର ଆକାଶମାର୍ଗ ଦେଇ ସ୍ୱର୍ଗ ଆଡ଼କୁ ନେଇଯାଉଛି । ପକ୍ଷୀ ସାହାଯ୍ୟରେ ମୃତ୍ୟୁର ସମ୍ବାଦ ମୃତ୍ୟୁରାଜ ଯମଙ୍କ ପୁରରେ ନେଇ ପହଞ୍ଚାଇବା ବିଷୟଟି ସାଙ୍କେତିକ ଭାବରେ ଏବେ ମଧ୍ୟ ହିନ୍ଦୁମାନଙ୍କ ମଧ୍ୟରେ ଚଳି ଆସୁଅଛି । ସେଠାରେ ଅବଶ୍ୟ ମୟୂରର ସ୍ଥାନ କୁଆ ଅଧିକାର କରିଛି । ନଦୀ କୂଳରେ ମୃତକ-କର୍ମ କଲାବେଳେ ମୃତକ-କର୍ମ କରୁଥିବା ବ୍ୟକ୍ତି ସ୍ୱହସ୍ତରେ ଅନ୍ନପାକ କରି କୁଆକୁ ଖାଇବାକୁ ଦେଇଥାଆନ୍ତି ଏବଂ ସେତେବେଳେ ଯେଉଁ ମନ୍ତ୍ରଟି ପାଠ କରିଥା'ନ୍ତି ତା'ର ଅର୍ଥ ହେଲା, "ଅମୁକଙ୍କ ପୁତ୍ର ତାଙ୍କ ମୃତ ପିତାଙ୍କ ଲାଗି ମୃତକ କର୍ମାଦି କରିଛନ୍ତି, ତୁମେ ଏ ମୃତକାନ୍ନ ଖାଇ ଏ ଖବରଟି ଯମ-ପୁରରେ ଯାଇ ଦିଅ ।" ଏହାର ତାତ୍ପର୍ଯ୍ୟ ହେଲା, ଏ ଖବରଟି ଯମ-ପୁରରେ ପହଞ୍ଚିଲେ ଯମରାଜ ମୃତବ୍ୟକ୍ତିଙ୍କର ମୃତକ କ୍ରିୟାଦି ଯଥାବିଧି ସମ୍ପନ୍ନ ହୋଇଥିବାର ଜାଣିପାରି ତାଙ୍କ ଆତ୍ମାର ରହିବା ଲାଗି ସ୍ୱର୍ଗରେ ଉପଯୁକ୍ତ ବ୍ୟବସ୍ଥା କରିଦେବେ ଏବଂ ତାଙ୍କର ନରକ ଗତି ଆଉ ହେବନାହିଁ । ସିନ୍ଧୁ-ସଂସ୍କୃତିର ଅଧିବାସୀମାନଙ୍କର ଆତ୍ମା ବିଷୟକ ଧାରଣାର ଏହା ଏକ ବଳିଷ୍ଠ ନିଦର୍ଶନ ଭଳି ମନେହୁଏ ।

ଆଉ ଗୋଟିଏ ପାତ୍ରରେ ଉଡ଼୍ଡୀୟମାନ ମୟୂର ସହିତ ଗୋଟିଏ ଗାଈକୁ ଦଉଡ଼ିରେ ବାନ୍ଧି ଏବଂ ବାଁ ହାତରେ ଧନୁଶର ଧରି ଚାଲୁଥିବା ଏକ ମଣିଷର ଚିତ୍ର ଅଙ୍କିତ ହୋଇଛି । ଗାଈର ଲାଙ୍ଗୁଳକୁ ଗୋଟିଏ କୁକୁର ଆକ୍ରମଣ କରୁଥିବା ଚିତ୍ର ମଧ୍ୟ ତହିଁରେ ଅଙ୍କିତ

ହୋଇଅଛି । ଏ କୁକୁର ବୋଧହୁଏ ଯମର କୁକୁର । ଏହାର ଆକ୍ରମଣ ବୋଧହୁଏ ମୃତ୍ୟୁଭୟର ସଙ୍କେତ ଦେଉଛି । ମଣିଷ ଗାଈକୁ ସଙ୍ଗରେ ଧରି ଗୁଳିବାର ତାତ୍ପର୍ଯ୍ୟ ବୋଧହୁଏ ହେଉଛି ତପ୍ତ ବୈତରଣୀ ନଦୀକୁ ଗାଈ ସାହାଯ୍ୟରେ ପାରହେବା, ଯେଉଁ ଚିନ୍ତାଧାରାର କ ଭୂୟୋବିକାଶ ପରବର୍ତ୍ତୀ କାଳରେ ଏ ଭାରତଭୂମିରେ ଘଟିଅଛି । ଏବେ ମଧ୍ୟ ହିନ୍ଦୁମାନଙ୍କ ମଧ୍ୟରେ ଗାଈ ସାହାଯ୍ୟରେ ତପ୍ତ ବୈତରଣୀ ପାର ହେବାର ଦୃଢ଼ମୂଳ ବିଶ୍ୱାସଟି ରହିଅଛି ଏବଂ ସେଥିପାଇଁ ବ୍ରାହ୍ମଣଙ୍କୁ ଗୋଦାନ ଦିଆଯାଉଅଛି । ମୃକ୍ତ ଓ ନଦୀଧରେ ମୟୂରମାନେ ଉଡ଼ିଯିବାର ଅର୍ଥ ହେଲା—ଏହିପରି କର୍ମ କଲେ ଗାଈ ସାହାଯ୍ୟରେ ସ୍ୱଚ୍ଛନ୍ଦରେ ତପ୍ତବୈତରଣୀ ପାରହୋଇ ମୃତବ୍ୟକ୍ତିର ଆତ୍ମାକୁ ମୟୂର ଦ୍ୱାରା ସ୍ୱର୍ଗକୁ ନିଆଯାଇ ପାରିବ ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ଜେଣୁ ଜଣାଯିବ ଯେ, ସିନ୍ଧୁ-ସଂସ୍କୃତିର ଅଧିବାସୀମାନଙ୍କ ମଧ୍ୟରେ 'ଆତ୍ମା' ବିଷୟରେ ଏକ ଭ୍ରୁଣାତ୍ମକ ଧାରଣା ଥିଲା ଏବଂ ସେମାନେ 'ଜୀବାତ୍ମା' ଓ 'ପରମାତ୍ମା' ଏ ଉଭୟଙ୍କ ମଧ୍ୟରେ ପାର୍ଥକ୍ୟ ଉପଲବ୍ଧି କରିପାରିଥିଲେ । ଏ ପ୍ରକାର 'ଜୀବାତ୍ମା' ଓ 'ପରମାତ୍ମା' ସମ୍ପର୍କୀୟ ଏହି ଧାରଣାଟି ସମସାମୟିକ ବ୍ୟାବିଲୋନ୍ ଓ ସୁମେରର 'ଆତ୍ମା' ବିଷୟକ ଧାରଣାଠାରୁ ନିଶ୍ଚିତ ଭାବରେ ପୃଥକ୍ ଓ ଉନ୍ନତତର ଅଟେ । ଏହି ଆତ୍ମାର ଜିଜ୍ଞାସା ହଜାର ହଜାର ବର୍ଷ ଧରି ଭାରତୀୟ ଆଧ୍ୟାତ୍ମିକ କ୍ଷେତ୍ରକୁ ଆଚ୍ଛନ୍ନ କରି ରଖିଥିଲା ଏବଂ ଅଦ୍ୟାବଧି ରଖିଛି ମଧ୍ୟ । ଯଥାର୍ଥରେ କହିବାକୁ ଗଲେ ଉପନିଷଦ୍ ଯୁଗରେ ଯେଉଁ 'ଆତ୍ମବିଦ୍ୟା'ର ପୂର୍ଣ୍ଣାଙ୍ଗ ଭୂୟୋବିକାଶ ଘଟିଥିଲା, ତାହାର ଅରୁଣୋଦୟ ଘଟିଥିଲା ସିନ୍ଧୁ-ଉପତ୍ୟକାରେ ।

## ସ୍ୱସ୍ତିକ ପୂଜା :

ତା'ପରେ ସ୍ୱସ୍ତିକ ପୂଜା କଥା । 'ସ୍ୱସ୍ତିକ'ର ବ୍ୟୁତ୍ପତ୍ତିଗତ ଅର୍ଥ ହେଲା 'ଶୁଭଙ୍କର ପ୍ରତୀକ' । ସକଳ ମଙ୍ଗଳ କର୍ମରେ ଏହାକୁ ପ୍ରତୀକ ରୂପରେ ଗ୍ରହଣ କରାଯାଏ । ଏବେ ମଧ୍ୟ ଭାରତରେ ବିଶେଷ କରି ହିନ୍ଦୁ, ବୌଦ୍ଧ ଓ ଜୈନମାନଙ୍କ ମଧ୍ୟରେ ଏହା ଶୁଭଙ୍କର ସଙ୍କେତ ରୂପେ ପୂଜିତ ହୁଏ । ବୈଦିକ ଆର୍ଯ୍ୟମାନଙ୍କର ମଧ୍ୟ ଏହା ଥିଲା ଶୁଭ ସଙ୍କେତ । ଏହି ଚିହ୍ନକୁ ଅବଶ୍ୟ ଅପବ୍ୟବହାର କରିବାକୁ ଯାଇ ଚଳିତ ଶତାବ୍ଦୀରେ ନାଜି-ନେତା ହିଟଲର୍‌ର ଜର୍ମାନ୍ ଜାତିକୁ ସାରା ବିଶ୍ୱରେ ଶ୍ରେଷ୍ଠ ବୋଲି ଦାବୀ କରି ନାଜିବାଦର ସଙ୍କେତ ରଖିଥିଲେ 'ସ୍ୱସ୍ତିକ' । ଏହି ଅହଂଭାବର ଫଳଶ୍ରୁତି ସ୍ୱରୂପ ହୋଇଥିଲା ଦ୍ୱିତୀୟ ମହାଯୁଦ୍ଧ ଓ ତଜ୍ଜନିତ ଅଗଣିତ ଲୋକଙ୍କର ଦୁଃଖ ଦୁର୍ଦ୍ଦଶା । ଭଲରେ ହେଉ

ବା ମନ୍ଦିରରେ ହେଉ, ଏହି ସ୍ୱସ୍ତିକ ଚିହ୍ନକୁ ସର୍ବଦା ଏକ ଶ୍ରେଷ୍ଠତାର ଚିହ୍ନ ରୂପେ ଗ୍ରହଣ କରାଯାଇଛି । ପ୍ରାକ୍-ଐତିହାସିକ ଯୁଗରେ ମାନବ-ସମାଜ ମଧ୍ୟରେ ଯେତେବେଳେ ଧର୍ମ ଓ ଧର୍ମନିରପେକ୍ଷ ବିଷୟରେ ସୀମାରେଖା ଥିଲା ଅସ୍ପଷ୍ଟ, ସେତେବେଳେ ଏହି ଚିହ୍ନ ଦେବତା ଭାବରେ ଗଣ୍ୟହୋଇ ପୂଜିତ ହେବା କିଛି ଅସ୍ୱାଭାବିକ ନୁହେଁ । ସିନ୍ଧୁ ଉପତ୍ୟକାର ସର୍ବତ୍ର ବହୁ ସଂଖ୍ୟାରେ ଏହି ସ୍ୱସ୍ତିକ ଚିହ୍ନଥିବା ମୃଣ୍ମୟ ମୋହରମାନ ମିଳିଅଛି । ସେଗୁଡ଼ିକ ମଧ୍ୟରୁ କେତେକ ଚିହ୍ନ ବାମରୁ ଦକ୍ଷିଣକୁ ଓ ଆଉ କେତେକ ଚିହ୍ନ ଦକ୍ଷିଣରୁ ବାମକୁ ଅଙ୍କିତ ହୋଇଥିବାର ଦେଖାଯାଏ । କିନ୍ତୁ ଏ ପ୍ରକାର ଅଙ୍କନ ପ୍ରକ୍ରିୟାର କିଛି ଅର୍ଥଗତ ପାର୍ଥକ୍ୟ ନାହିଁ ବୋଲି ସାର ଜନ୍ ମାର୍ଶାଲ୍ ମତ ଦିଅନ୍ତି । ସ୍ୱସ୍ତିକର ଚିହ୍ନଗୁଡ଼ିକ ଅବଶ୍ୟ କ୍ରିଟ୍, କାପୋଡ଼ୋସିଆ, ଟ୍ରୟ ଓ ପାରସ୍ୟର ସୁସା ପ୍ରଭୃତି ସ୍ଥାନମାନଙ୍କରୁ ମିଳିଛି । (୪୫) ଇଜିପଟ୍ କିମ୍ବା ବାବିଲୋନ୍‌ରେ ଏହି ସଙ୍କେତର ସନ୍ଧାନ ମିଳୁନାହିଁ; ସୁମେରରେ (ଆଧୁନିକ ଇରାକ୍) କିନ୍ତୁ ଏହାର ସନ୍ଧାନ ମିଳୁଛି । (୪୬) ଏହିସବୁ ଦେଶମାନଙ୍କରୁ ସ୍ୱସ୍ତିକ ଚିହ୍ନ ସିନ୍ଧୁ-ଉପତ୍ୟକାକୁ ଆସିଥିଲା ନା ସିନ୍ଧୁ-ଉପତ୍ୟକାରୁ ତାହା ଏହିସବୁ ଦେଶମାନଙ୍କୁ ଯାଇଥିଲା, ସେ କଥା ସଠିକ କହି ହେବନାହିଁ । ଅନେକ ତତ୍ତ୍ୱବିଦ୍ କିନ୍ତୁ ମତ ଦିଅନ୍ତି ଯେ ସିନ୍ଧୁ-ଉପତ୍ୟକାରୁ ଏହା ଚାରିଆଡ଼େ ବ୍ୟାପ୍ତ ହୋଇଥିଲା । ସେ ଯାହା ହେଉ, ସିନ୍ଧୁ-ଉପତ୍ୟକାରେ ଯେ, ସ୍ୱସ୍ତିକ ପୂଜା ଚଳୁଥିଲା ଏ କଥା ନିଶ୍ଚିତ ଭାବରେ କୁହାଯାଇପାରେ । ଏବେ ମଧ୍ୟ ଆମ ଦେଶରେ ବିବାହ, ବ୍ରତ ଆଦି ଶୁଭକର୍ମମାନଙ୍କରେ ଅଗ୍ନିଦେବଙ୍କୁ ପୂଜା ଦେବାଲାଗି ଯେଉଁ ପୀଠ ତିଆରି ହେଉଛି, ତହିଁରେ ସ୍ୱସ୍ତିକ ଚିହ୍ନ ସମେତ ଆହୁରି ଅନେକ ପ୍ରକାର ଚିହ୍ନ ଅଙ୍କିତ ହେଉଛି । ଆମ ଓଡ଼ିଶାର ଘରେ ଘରେ ଶୁଭଦିନମାନଙ୍କରେ ପିଠଉର ଝୋଟି ଚିତା ପକାଯାଉଅଛି । ଏ ସବୁର ମୂଳ ଉତ୍ସ ଯେ ସିନ୍ଧୁ-ସଂସ୍କୃତିର ଆଦିମ ସ୍ୱସ୍ତିକ ଚିହ୍ନ, ଏଥିରେ ସନ୍ଦେହ ନାହିଁ । ଏହି ସ୍ୱସ୍ତିକ ଚିହ୍ନ ଏବେ ମଧ୍ୟ ଆମମାନଙ୍କର ଧର୍ମଧାରଣା ଓ ଆଧ୍ୟାତ୍ମିକ ଜୀବନଧାରାକୁ ଆଚ୍ଛନ୍ନ କରି ରଖିଅଛି ।

ଡକ୍ଟର ନବୀନ କୁମାର ସାହୁ ଓ ସୁରେନ୍ଦ୍ର ମହାନ୍ତି ସିନ୍ଧୁ-ସଭ୍ୟତାର ଏହି ସ୍ୱସ୍ତିକକୁ ଜୈନମାନଙ୍କର ଜୀବବିଭାଗର ସଙ୍କେତ ବୋଲି ଅର୍ଥ କରିଛନ୍ତି । ସେମାନେ କୁହନ୍ତି :

"ଜୈନ ମତରେ ଜୀବ ଚାରି ଶ୍ରେଣୀରେ ବିଭକ୍ତ, ଯଥା—ନାରକୀ, ତିରିଅଙ୍କ, ମନୁଷ୍ୟ ଓ ଦେବତା । ଯେଉଁମାନେ ମନୁଷ୍ୟଠାରୁ ହୀନ, କୀଟ, ପତଙ୍ଗ ବା ପକ୍ଷୀ ରୂପରେ ଜନ୍ମ-ପରିଗ୍ରହ କରିଛନ୍ତି, ସେମାନେ ନାରକୀ । ଯେଉଁମାନେ ପଶୁ ବା ଉଦ୍ଭିଦ ରୂପରେ ଜନ୍ମଗ୍ରହଣ କରିଛନ୍ତି, ସେମାନେ ତିରିଅଙ୍କ । ନରଦେହୀ ଜୀବ ମନୁଷ୍ୟ ଓ ଯେଉଁମାନେ ଅଶରୀରୀ ସେମାନେ ଦେବତା । ଅର୍ଥାତ୍ ଜୈନ କଳ୍ପନାରେ, ଜୈନ ଦୃଷ୍ଟିରେ ଜୀବ ସ୍ୱର୍ଗ,

ମର୍ତ୍ତ୍ୟ, ପାତାଳ ସର୍ବବ୍ୟାପ୍ତ । ଜୈନମାନଙ୍କର ସର୍ବଭୂତେ ଦୟାର ତାହା ହିଁ ତାତ୍ପର୍ଯ୍ୟ । ଏହି ସ୍ୱସ୍ତିକ ଚିହ୍ନ ଜୈନ ଧର୍ମଗ୍ରନ୍ଥ ଓ ଦେବାଳୟମାନଙ୍କରେ ପ୍ରଭୂତ ପରିମାଣରେ ଦେଖିବାକୁ ମିଳେ ।'' (୪୭)

ପଣ୍ଡିତ ନୀଳକଣ୍ଠ ଦାସ ମଧ୍ୟ ''ଶ୍ରୀମଦ୍‌ଭଗବଦ୍ ଗୀତା'ର ଗ୍ରନ୍ଥପ୍ରବେଶସ୍ଥ ଆଲୋଚନାରେ ସିନ୍ଧୁ-ସଂସ୍କୃତିରେ ଜୈନ-ଧର୍ମର ଆଦି-ବୀଜ ନିହିତ ଥିଲା ବୋଲି କହି ଏଥିପାଇଁ ବହୁ ପ୍ରମାଣ ଦର୍ଶାଇଛନ୍ତି । ସାର୍ ଜନ୍ ମାର୍ଶାଲ ଆବିଷ୍କାର କରିଥିବା ମହେଞ୍ଜୋ-ଦାରୋର ଦୁଇଟି ମୋହରକୁ ( ସଂଖ୍ୟା ୧୩ ଓ ୧୪ ) ପରୀକ୍ଷା କରି ତଦ୍‌ବିଦ୍‌ମାନେ ମତ ଦିଅନ୍ତି ଯେ ଏ ଦୁଇଟି ହେଉଛନ୍ତି କାୟୋତ୍ସର୍ଗ ଭଙ୍ଗୀରେ ଯୋଗଲଗ୍ନ ଥିବା ଦୁଇଟି ଦିଗମ୍ବର ଜୈନମୂର୍ତ୍ତି । ( ୪୮ ) ମହେଞ୍ଜୋଦାରୋରୁ ମଧ୍ୟ ଆଉ ଦୁଇଟି ମୋହର ବାହାରିଛି ( ପ୍ଲେଟ୍ ସଂଖ୍ୟା ୧୧୭ ଓ ୧୧୮ ) । ସେଥିରୁ (ଗୋଟିଏ ପ୍ଲେଟ୍ ସଂଖ୍ୟା ୧୧୭ ) ପଥରରେ ଓ ଆରଟି ( ପ୍ଲେଟ୍ ସଂଖ୍ୟାସ୍ଥ ୧୧୯ ) ତମ୍ବାରେ ତିଆରି । ଏହି ମୋହର ଦୁଇଟିରେ ଜଣେ ଯୋଗଲଗ୍ନ ଶୀର୍ଣ୍ଣକାୟ ଓ ଦିଗମ୍ବର ମୂର୍ତ୍ତି ସମାସୀନ । ତାଙ୍କ ଆସନର ପାଦଦେଶରେ ଉଭୟପଟେ ମୁଣ୍ଡିତମସ୍ତକ ଦୁଇଜଣ ଭକ୍ତ ପୂଜାର ଅର୍ଘ୍ୟ ଅର୍ପଣ କରୁଛନ୍ତି । ଦୁଇଜଣଙ୍କ ମୁଣ୍ଡ ଉପରେ ଗୋଟିଏ ଲେଖାଏଁ ସାପ ଫଣା ଟେକି ବୋଧହୁଏ ଧ୍ୟାନମଗ୍ନ ଯୋଗୀଙ୍କ ଆରାଧନାରେ ଉପରୋକ୍ତ ଭକ୍ତ ଦ୍ୱୟଙ୍କ ସହିତ ଯୋଗ ଦେଇଛନ୍ତି । (୪୮-କ) ଜୈନ-ତୀର୍ଥଙ୍କର ପାର୍ଶ୍ୱନାଥଙ୍କର ଲାଞ୍ଛନ ଥିଲା ସର୍ପ । ଜୈନ ପରମ୍ପରା କହେ ଯେ କୌଣସି ପୂର୍ବଜନ୍ମରେ ସେ 'କମଠ' ନାମକ ସର୍ପକୁ ରକ୍ଷା କରିଥିଲେ ଏବଂ ସେଥିପାଇଁ ସେ ତାଙ୍କର ସଦାନୁଗତ ରହିଥିଲା । ପାର୍ଶ୍ୱନାଥ ତା' ପ୍ରତି ଶ୍ରଦ୍ଧାନ୍ୱିତ ହୋଇ ତାକୁ ଲାଞ୍ଛନ ସ୍ୱରୂପ ଗ୍ରହଣ କରିଛନ୍ତି । ଏହି ଦୃଷ୍ଟିରୁ ବିଚାର କଲେ ଏହା ଯେ ଜୈନତୀର୍ଥଙ୍କର ମୂର୍ତ୍ତିର ଏକ ଆଦିମ ରୂପ, ଏ କଥା ବୋଧହୁଏ ଅସ୍ୱୀକାର କରିହେବନାହିଁ । ଜୈନ ମାନଙ୍କର ୨୪ ତୀର୍ଥଙ୍କର ମଧ୍ୟରୁ ପ୍ରାଚୀନତମ ଐତିହାସିକ ପୁରୁଷ ହେଉଛନ୍ତି ପାର୍ଶ୍ୱନାଥ ( ଖ୍ରୀ: ପୂ: ୮୦୦ ଶତାବ୍ଦୀ) । ତାଙ୍କ ପୂର୍ବରୁ ଆଉ ୨୨ ଜଣ ତୀର୍ଥଙ୍କରମାନେ ଶହଶହ, ଏପରିକି ସହସ୍ର ସହସ୍ର ବର୍ଷ ପର୍ଯ୍ୟନ୍ତ ବଞ୍ଚିଥିଲେ । ବାସ୍ତବରେ ତ ଏତେ ବର୍ଷ ଧରି ସେମାନେ ବଞ୍ଚି ନ ଥିବେ; କିନ୍ତୁ ଏହି ଜୈନ ଚିନ୍ତାଧାରାଟି ଯେ ଅତି ପ୍ରାଚୀନ ଏହି ସଙ୍କେତ ଏଥିରୁ ମିଳୁଛି । କେତେକ ତଦ୍-ବିଦ୍ ଯଥା ଆର୍. ପି. ଚନ୍ଦ (Modern Review, 1932) ମହେଞ୍ଜୋଦାରୋର ଛଅଗୋଟି ମୋହରକୁ ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ବିଶ୍ଳେଷଣ କରି ଆଦି ତୀର୍ଥଙ୍କର ଋଷଭନାଥଙ୍କର ମୂର୍ତ୍ତି ବୋଲି ମତ ଦେଇଥିବା କଥା ସୁରେନ୍ଦ୍ର ମହାନ୍ତି ଓ ଡ଼କ୍ଟର ନବୀନ କୁମାର ସାହୁ ସେମାନଙ୍କର ଉପର ଲିଖିତ ପ୍ରବନ୍ଧରେ କହିଛନ୍ତି । ଏହିସବୁ କାରଣରୁ ଜୈନଧର୍ମର ଆଦି ବୀଜ ଯେ ସିନ୍ଧୁ-ସଂସ୍କୃତିରେ ନିହିତ ଥିଲା, ଆମକୁ ଏ କଥା ବିଶ୍ୱାସ କରିବାକୁ ପଡ଼ିବ । ଅତଏବ ଏ ଆଲୋଚନାରୁ ସ୍ପଷ୍ଟ ଭାବରେ ଜଣାପଡ଼ିବ ଯେ ଯୁଗେ ଯୁଗେ ଭାରତୀୟ ଧର୍ମଗତ

ଓ ଆଧ୍ୟାତ୍ମିକ ଜୀବନଧାରାକୁ ଆଚ୍ଛନ୍ନ କରିଥିବା ସ୍ୱସ୍ତିକ ଚିହ୍ନର ଜନନୀ ହେଉଛି ସିନ୍ଧୁ-ସଂସ୍କୃତି ।

## ସର୍ବଧର୍ମ ସହନଶୀଳତା :

ଯୁଗେ ଯୁଗେ ଏହି ଭାରତଭୂମିରେ ସର୍ବଧର୍ମ ପ୍ରତି ସମାନଦୃଷ୍ଟି ରହିଆସିଛି । ଏହାର ବହୁ କାରଣମାନଙ୍କ ମଧ୍ୟରୁ ଏକ ବଳିଷ୍ଠ କାରଣ ହେଲା ବହୁରେ ଏକତ୍ୱ ଦେଖିବା ଭାରତୀୟ ସଂସ୍କୃତିର ଏକ ବିଶିଷ୍ଟ ସ୍ୱଭାବ । ବେଦ, ଉପନିଷଦ, ଧର୍ମଶାସ୍ତ୍ର ଓ ପୁରାଣ ଆଦିର ଛନ୍ଦେ ଛନ୍ଦେ ଏହି ଏକତ୍ୱ ଭାବର ସ୍ଫୁରଣ ପରିଦୃଶ୍ୟମାନ । ପ୍ରାଚୀନତମ ଗ୍ରନ୍ଥ ବେଦମନ୍ତ୍ରର ଦ୍ରଷ୍ଟା କେହି ଜଣେ ନୁହନ୍ତି; ଏମାନେ ହେଲେ ବଶିଷ୍ଠ, ବିଶ୍ୱାମିତ୍ର ଆଦି ବହୁ ଋଷି । ଏହାରି କାରଣ ହେଉଛି ଏଠାରେ ଯୁଗ ଯୁଗ ଧରି ବ୍ୟକ୍ତିଗତ ଦୃଷ୍ଟିକୋଣ ଓ ବ୍ୟକ୍ତିଗତ ଚିନ୍ତାଧାରା ପ୍ରତି ସମ୍ମାନ ଦିଆହୋଇ ଆସୁଅଛି । ସେଥିପାଇଁ ଥଟ୍ଟା କରି ଯେଉଁ କଥା କୁହାଯାଇଥାଏ 'ଏକ ଭାରତୀୟ—ଜଣେ ଦାର୍ଶନିକ', ତାହା ବାସ୍ତବ ଦୃଷ୍ଟିକୋଣରୁ ସତ୍ୟ । ଆମେ ଇତିହାସର ପୃଷ୍ଠା ଆଲୋଡ଼ନ କଲେ ଦେଖିବା ଯେ ଏଠାରେ ରାଜା ଏକ ନିର୍ଦ୍ଦିଷ୍ଟ ଧର୍ମାବଲମ୍ବୀ ଥାଇ ମଧ୍ୟ ସବୁ ଧର୍ମପ୍ରତି ସମାନ ଦୃଷ୍ଟି ଦେଉଥିଲେ । କଳିଙ୍ଗସମ୍ରାଟ୍ ଖାରବେଳ (ଖ୍ରୀ: ପୂ: ୨ୟ ଶତାବ୍ଦୀ) ନିଜକୁ 'ସବପାସଣ୍ଡ-ପୂଜକ' ବା 'ସବୁ ଧର୍ମ ସମ୍ପ୍ରଦାୟର ପୂଜକ' ବୋଲି ପରିଚିତ କରାଇବାର ତାତ୍ପର୍ଯ୍ୟ ଅଛି ଏଇଠି ।※

ମଗଧସମ୍ରାଟ ଅଶୋକଙ୍କ (ଖ୍ରୀ. ପୂ: ୩ୟ ଶତାବ୍ଦୀ) ବ୍ରାହ୍ମଣ, ଶ୍ରମଣ, ନିର୍ଗ୍ରନ୍ଥ ଓ ଆଜୀବକମାନଙ୍କ ପ୍ରତି ସମଭାବ ପ୍ରଦର୍ଶନର ପରାକାଷ୍ଠା ଅଛି ଏଇଠି । ଖ୍ରୀଷ୍ଟୀୟ ୭ମ ଶତାବ୍ଦୀରେ ଅଗ୍ନି-ପୂଜକ ପାର୍ସିମାନଙ୍କ ପ୍ରତି ପାରସ୍ୟ ଦେଶରେ ଯେତେବେଳେ ଅତ୍ୟାଚାର କରାଯାଇଥିଲା, ସେମାନେ ସ୍ୱଧର୍ମକୁ ରକ୍ଷା କରିବାଲାଗି ଆଉ କେଉଁଠିକୁ ନଯାଇ ଭାରତ-ଭୂମିକୁ ଧାଇଁ ଆସିଥିଲେ ଏବଂ ଏଠାରେ ସେମାନେ ସ୍ୱଧର୍ମ ପାଳନର ନିର୍ଭୟ-ଆଶ୍ରୟ ପାଇପାରିଥିଲେ । ସର୍ବ ଧର୍ମ ଓ ସଂସ୍କୃତି ପ୍ରତି ସହନଶୀଳ ହୋଇ ତା'ର ସାରତତ୍ତ୍ୱକୁ ନିଜ କୁକ୍ଷିଗତ କରିନେବା ଯୁଗେ ଯୁଗେ ରହି ଆସିଛି ଭାରତୀୟ ଧର୍ମ ଓ ସଂସ୍କୃତିର ଏକ ବିଶିଷ୍ଟ ସ୍ୱଭାବ ହୋଇ । ପଣ୍ଡିତମାନେ ବାରଣ କରି କହିଛନ୍ତି :

---

※ ପାଲି ଓ ପ୍ରାକୃତରେ କେବଳ ଦନ୍ତ୍ୟ 'ସ'ର ବ୍ୟବହାର ଅଛି । ଏଣୁ ଏଠାରେ 'ପାସଣ୍ଡ' ବୋଲି ଲେଖାଅଛି । ସଂସ୍କୃତରେ ଏହା ହେବ 'ପାଷଣ୍ଡ' ।

'ନ ପଠେତ୍ ଯାବନୀଂ ଭାଷାଂ ନ ଗଚ୍ଛେତ୍ ଜୈନମନ୍ଦିରମ୍' । ଅର୍ଥାତ୍ ଯବନ ଭାଷା ପଢ଼ିବା ଉଚିତ ନୁହେଁ କି ଜୈନମନ୍ଦିର ଯିବା ଉଚିତ ନୁହେଁ । କିନ୍ତୁ ଭାରତୀୟ ସଂସ୍କୃତି କ'ଣ ତାହା ମାନିଛି ? ଯବନ-ସଂସ୍କୃତିରୁ ଅଣାଯାଇଛି 'ଯବନିକା' ଶବ୍ଦଟି । ଜୈନଧର୍ମ ଓ ସଂସ୍କୃତି ମଧ୍ୟ ଭାରତୀୟ ସଂସ୍କୃତିକୁ ବହୁ ଭାବରେ ପ୍ରଭାବିତ କରିଛି । ଏହା ହିଁ ଭାରତୀୟ ସଂସ୍କୃତିର ଏକ ବୈଶିଷ୍ଟ୍ୟ ଓ ଅଦ୍ଭୁତ ବିଭବ ।

ଏବେ ମଧ୍ୟ ଭାରତ ଭୂମିରେ ଏହି ସର୍ବଧର୍ମ ସହନଶୀଳତାର ଭାବ ରହିଅଛି ଏବଂ ଏହି ଭାବ ଓ ମତକୁ ରାଷ୍ଟ୍ର ତଥା ସାଧାରଣ ଜନଜୀବନ ସମ୍ମାନ ଦେଉଛି । ସାଂପ୍ରଦାୟିକତା ସର୍ବଥା ଏଠି ନିନ୍ଦିତ ହେଉଛି । ଏହାର କାରଣ କ'ଣ ଥାଇପାରେ ? ଏବେ ବିଶ୍ୱର ବହୁ ଅଞ୍ଚଳରେ ଧର୍ମ ନାମରେ ନାନା ସଂକୀର୍ଣ୍ଣତା ଦେଖା ଦେଉଥିବା ବେଳେ, ସ୍ୱଧର୍ମର ପରାକାଷ୍ଠାକୁ ପ୍ରତିଷ୍ଠିତ କରାଇ ଏହାର ପ୍ରଚାର ପାଇଁ ନିର୍ଦ୍ଦିଷ୍ଟ ଧାର୍ମିକଗୋଷ୍ଠୀମାନ ନିରତ କାର୍ଯ୍ୟରତ ଥିବାବେଳେ ଭାରତୀୟ ସନାତନ ଧର୍ମକ୍ଷେତ୍ରରେ ତାହା କରାଯାଉନାହିଁ କାହିଁକି ? କାହିଁକି ସ୍ୱାଂକୁ ପ୍ରଚାର ନକଲେ ମଧ୍ୟ ଯୁଗ ଯୁଗ ଧରି ଏହା ସ୍ୱକୀୟ ପରାକାଷ୍ଠାକୁ ବଜାୟ ରଖିପାରିଛି ? ଏହାର ଉତ୍ତର ଆମେ ଖୋଜିବାକୁ ଗଲେ ସିନ୍ଧୁ-ସଭ୍ୟତାର ଯୁଗକୁ ଆମକୁ ଫେରିଯିବାକୁ ହେବ । ଉକ୍ତ ସଂସ୍କୃତିରେ ମଧ୍ୟ ଏହି ସର୍ବଧର୍ମ ପ୍ରତି ସହନଶୀଳ ମନୋଭାବ ଜନଜୀବନକୁ ଆଚ୍ଛନ୍ନ କରିଥିଲା । ଠିକ୍ କେଉଁ ସମୟରୁ ଏପ୍ରକାର ସର୍ବଧର୍ମ ସହନଶୀଳ ଭାବ ଭାରତ-ଭୂମିରେ ଆବିର୍ଭୂତ ହୋଇଥିଲା, ସେକଥା ସଠିକ୍ କହିହେବନାହିଁ । ତେବେ ପ୍ରତ୍ନତାତ୍ତ୍ୱିକ ପ୍ରମାଣମାନଙ୍କୁ ଭିତ୍ତି କରି ନିଶ୍ଚିତ ଭାବରେ କୁହାଯାଇ ପାରିବ ଯେ ଅନ୍ତତଃ ସିନ୍ଧୁ-ସଂସ୍କୃତି କାଳରେ ( ଖ୍ରୀ: ପୂ: ତୃତୀୟ ସହସ୍ରାବ୍ଦୀ ) ଏହା ଭାରତ-ଭୂମିରେ ଥିଲା ଏବଂ ଏହି ଭାବଧାରା ଗତ ପ୍ରାୟ ପାଞ୍ଚହଜାର ବର୍ଷ ଧରି ଭାରତୀୟ ଧର୍ମ-ଚେତନା ଓ ଜନଜୀବନକୁ ଆଚ୍ଛନ୍ନ କରିଆସିଅଛି ।

ପୂର୍ବୋକ୍ତ ଆଲୋଚନାରୁ ପ୍ରତୀତ ହେବ କିପରି ସିନ୍ଧୁ-ସଭ୍ୟତାରେ ମାତୃଦେବୀ, ଅଗ୍ନି, ପଶୁପତି, ପ୍ରଜାପତି, ବୃକ୍ଷଦେବତା, ଆଦି ବିଭିନ୍ନ ଦେବଦେବୀମାନଙ୍କର ଆରାଧନା କରାଯାଉ-ଥିଲା । ଆହୁରି ମଧ୍ୟ ସେଥିରୁ ପ୍ରତୀତ ହେବ କିପରି ବିଭିନ୍ନ ଜାତିର ନର-କଙ୍କାଳମାନ ସିନ୍ଧୁ-ଉପତ୍ୟକାର ଧ୍ୱଂସାବଶେଷରୁ ମିଳୁଛି, ଯହିଁରୁ ପ୍ରମାଣ ମିଳୁଛି, ଯେ ସେଠାରେ ଅଷ୍ଟ୍ରାଲଏଡ୍, ମଙ୍ଗୋଲୀୟ, ଭୂମଧ୍ୟସାଗରୀୟ ଓ ଆଲପାଇନ ଜାତୀୟ ଲୋକମାନେ ଏକତ୍ର ବସବାସ କରି ରହୁଥିଲେ । ସେଠାକାର ଅନେକ କବର ତ ଏ ପର୍ଯ୍ୟନ୍ତ ଖୋଲାଯାଇ ପାରିନାହିଁ । ଏଗୁଡ଼ିକର ଖନନ ଫଳରେ ହୁଏତ ଆଉ ଅନ୍ୟ ଜାତୀୟ କଙ୍କାଳ ଯେ ବାହାରିବ ନାହିଁ, ସେକଥା କହିହେବ ନାହିଁ । ଅତଏବ, ବହୁ ଜାତିର ଲୋକ ଏଠାରେ ଏକତ୍ର ବସବାସ କରି ରହିଥିବା ସେତେବେଳେ ଏକ ସ୍ୱାଭାବିକ ଘଟଣା ଥିଲା । କବର ଦେବାର ପ୍ରଣାଳୀ ଭିନ୍ନ

ଭିନ୍ନ ଥିଲେ ମଧ୍ୟ ସମସ୍ତଙ୍କର କବର-ସ୍ଥାନ ହେଉଛି ଗୋଟିଏ । ଏତେ ଜାତିର, ଏତେ ସଂପ୍ରଦାୟର ଲୋକ ଏକାଠି ରହି ଏତେ ପ୍ରକାର ଦେବଦେବୀଙ୍କର ପୂଜା ସ୍ୱଚ୍ଛନ୍ଦରେ କରିପାରୁଥିବାର ଏହି ଯେଉଁ ପ୍ରମାଣ ମିଳୁଛି, ତାହା ନିଶ୍ଚିତ ଭାବରେ ସୂଚାଇ ଦେଉଛି ଯେ ସେମାନଙ୍କ ମଧ୍ୟରେ ସର୍ବଧର୍ମସହନଶୀଳତା ଭାବ ପ୍ରଚଳିତ ଥିଲା । ପ୍ରଧାନ-ସ୍ତୂପକୁ (Citadel mound) ଆମେ ପ୍ରଧାନ ଦେବାୟତନ ବୋଲି ଧରିଲେ, ଆମକୁ ଏକଥା ମାନିନେବାକୁ ହେବ ଯେ ତାକୁ ପରିଚାଳିତ କରୁଥିବା ପୁରୋହିତ ଗୋଷ୍ଠୀଙ୍କର ଦୃଷ୍ଟିଭଙ୍ଗୀ ଅତି ଉଦାର ଥିଲା ଏବଂ ସେମାନେ ସବୁ ଧର୍ମ ପ୍ରତି ସମାନ ଭାବ ପ୍ରଦର୍ଶନ କରିବା ପାଇଁ ଲୋକମାନଙ୍କୁ ଉପଦେଶ ଦେଉଥିଲେ । ଏହା ସାଧାରଣ ପୁରୋହିତ ଗୋଷ୍ଠୀର ସଂକୀର୍ଣ୍ଣ ଦୃଷ୍ଟିକୋଣରୁ ନିଶ୍ଚିତ ଭାବରେ ଉନ୍ନତତର । ଏଠାରେ ପ୍ରଚଳିତ ଥିବା ସର୍ବଧର୍ମ ସହନଶୀଳତାର ନୀତି ସିନ୍ଧୁ-ଉପତ୍ୟକାର ପରିସୀମାକୁ ଅତିକ୍ରମ କରି ସେତେବେଳେ ବିଦେଶ ଭୂମିମାନଙ୍କରେ ମଧ୍ୟ ବ୍ୟାପ୍ତ ହୋଇଥିବ । ତା' ଫଳରେ ଧର୍ମଗତ କମ୍ବା ଅନ୍ୟାନ୍ୟ ଅତ୍ୟାଚାରରେ ପ୍ରପୀଡ଼ିତ ହୋଇ ବିଭିନ୍ନ ଜାତିର ଓ ବିଭିନ୍ନ ସଂପ୍ରଦାୟର ଲୋକମାନେ ଏଠାକୁ ଆସିଥିବେ ଏବଂ ଏଠାରେ ନିର୍ବାଧରେ ସ୍ୱଧର୍ମର ପନ୍ଥା ଅନୁସରଣ କରି ସ୍ୱଚ୍ଛନ୍ଦ ଜୀବନଯାପନ କରିଥିବେ ।

ସିନ୍ଧୁ-ଉପତ୍ୟକାରେ ଏଭଳି ଶାନ୍ତିମୟ ଜୀବନ-ଯାପନ ଚାଲିଥିଲା ବେଳେ ସମକାଳୀନ (ଖ୍ରୀ: ପୂ. ତୃତୀୟ ସହସ୍ରାବ୍ଦୀ) ଆସିରିଆ ବା ଅସୁର ରାଜ୍ୟରେ (ଉତ୍ତର ଇରାକ୍) କିଭଳି ଲୋମହର୍ଷଣକାରୀ ଅତ୍ୟାଚାର ସେ ଦେଶର ରାଜା କରୁଥିଲେ, ସେ ବିଷୟ ନିଶ୍ଚିତ ଭାବରେ କୌତୂହଳୋଦ୍ଦୀପକ । ସେହି କାଳରୁ ପ୍ରାୟ ଚାରିଶହ ବର୍ଷ ପର୍ଯ୍ୟନ୍ତ ସେଠାକାର ରାଜାମାନେ ସେ ସମୟରେ ଇଟା ଫଳକରେ ନିଜର କୀର୍ତ୍ତିକଳାପମାନ ଲେଖି ଯାଇଅଛନ୍ତି । ସେହି ଲେଖାଗୁଡ଼ିକର ପାଠୋଦ୍ଧାର କରାଯିବା ପରେ ଏବେ ଜଣାଯାଉଛି କିପରି ଏହି ରାଜାମାନେ ପ୍ରଜାମାନଙ୍କ ଉପରେ ବହୁ ଜଘନ୍ୟ ଅତ୍ୟାଚାରମାନ କରୁଥିଲେ ଓ କିପରି ବିଜିତ ରାଜ୍ୟକୁ ନଷ୍ଟ କରି ବିଜିତ ଆବାଳବୃଦ୍ଧବନିତା ସମସ୍ତଙ୍କୁ ନିଷ୍ଠୁର ଭାବରେ ହତ୍ୟା କରୁଥିଲେ । ସେତେବେଳେ ସାମାନ୍ୟ ପ୍ରତିବାଦରେ ପ୍ରଜାମାନଙ୍କର ଚର୍ମ ଉତାରି ଦିଆଯାଉଥିଲା । ଅନ୍ୟ ଧର୍ମାବଲମ୍ବୀ ବା ଅନ୍ୟ ସଂପ୍ରଦାୟର ଲୋକମାନଙ୍କ ଉପରେ ତ ଅତ୍ୟାଚାର ଥିଲା ଆହୁରି ଲୋମହର୍ଷଣକାରୀ । (୪୯) ଅନ୍ୟ ରାଜ୍ୟମାନଙ୍କରେ ଅଳ୍ପ ବହୁତ ପ୍ରାୟ ଏହିଭଳି ପ୍ରଜାପୀଡ଼ନ ଓ ବିଜିତ ଉପରେ ଅତ୍ୟାଚାର କରାଯାଉଥିଲା । ଏଭଳି ପ୍ରଜାପୀଡ଼ନ ଓ ଧର୍ମଗତ ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ସିନ୍ଧୁ-ଉପତ୍ୟକାକୁ ବହୁ ଦୂର ଦୂରାନ୍ତର ଦେଶମାନଙ୍କରୁ ଲୋକମାନେ ଆଶ୍ରୟ ଲାଗି ଧାଇଁ ଆସିଥିବା କିଛି ଆଶ୍ଚର୍ଯ୍ୟ କଥା ନୁହେଁ । ସିନ୍ଧୁ-ଉପତ୍ୟକାର ଲୋକମାନେ ବହୁ ଦେଶ ଦେଶାନ୍ତର ସହିତ ବାଣିଜ୍ୟିକ ଓ ସାମାଜିକ ସମ୍ପର୍କ ରଖିଥିଲେ । ଏ ପ୍ରକାର ସମ୍ପର୍କ ଅତ୍ୟାଚାରିତ

ବିଦେଶୀୟମାନଙ୍କୁ ଏଠାକୁ ଆସିବାରେ ଖୁବ୍ ସହାୟକ ହୋଇଥିବ । ଅତଏବ, ଉପର୍ଯ୍ୟୁକ୍ତ ଆଲୋଚନାରୁ ସିନ୍ଧୁ-ସଂସ୍କୃତିରେ ସର୍ବଧର୍ମ ସହନଶୀଳତା ଆଚରିତ ହେଉଥିବାର ଯଥେଷ୍ଟ ବିଶ୍ୱାସଯୋଗ୍ୟ ପ୍ରମାଣମାନ ମିଳୁଛି ବୋଲି ଆମକୁ ମାନିବାକୁ ପଡ଼ିବ ।

ଉପସଂହାର ସ୍ୱରୂପ ଏତିକି କୁହାଯାଇପାରେ ଯେ ମାତୃପୂଜା, ପଶୁପତି ବା ପ୍ରଜାପତି ପୂଜା, ବୃକ୍ଷପୂଜା, ସ୍ୱସ୍ତିକ ପୂଜା ଆଦି ବିଭିନ୍ନ ଦେବଦେବୀଙ୍କର ପୂଜା ଏବଂ ଦେହ ଓ ଦେହାନ୍ତର ମଧ୍ୟରେ ଥିବା ଏକ ସ୍ଥୂଳ ଧାରଣା ସମେତ ସର୍ବଧର୍ମ ସହନଶୀଳତା ସିନ୍ଧୁ-ସଂସ୍କୃତିର ଧର୍ମ-ଧାରଣାକୁ ସଦା ଆଚ୍ଛନ୍ନ କରି ରଖିଥିଲା ଏବଂ ତାହାର ଗଭୀର ପ୍ରଭାବ ପରବର୍ତ୍ତୀ ଭାରତୀୟ ଆଧ୍ୟାତ୍ମିକ ଚିନ୍ତାଧାରା ଉପରେ ପଡ଼ି ତାହାର ଭୂୟୋବିକାଶ ଘଟାଇ ପାରିଥିଲା । ଏହି ଦୃଷ୍ଟିରୁ ସିନ୍ଧୁ-ସଂସ୍କୃତି ଯେ ଅନେକାଂଶରେ ଭାରତୀୟ ଆଧ୍ୟାତ୍ମିକ ଚିନ୍ତାଧାରାର ଜନୟିତ୍ରୀ, ଏ କଥା କହିଲେ ଅତ୍ୟୁକ୍ତି ହେବନାହିଁ । ଅତଏବ, ଭାରତୀୟ ଆଧ୍ୟାତ୍ମିକତାକୁ ଭଲ ଭାବରେ ଜାଣିବାକୁ ହେଲେ ଏହି ସିନ୍ଧୁ-ସଂସ୍କୃତିର ଗଭୀର ଅଧ୍ୟୟନ ଓ ଅନୁଶୀଳନ ଏକାନ୍ତ ଆବଶ୍ୟକ ।

## ଗ୍ରନ୍ଥସୂଚୀ


୧-କ । ଦୈନିକ ସମାଜ, ତା ୨୫ । ୧୨ । ୮୭ ।

୧ । The Cultural Heritage of India, Vol I : "The Indus Valley Civilization". Article by M.S. Vats : p. 121.

୨ । ତତ୍ରୈବ : ପୃ: ୧୨୭ ।

୩ । ତତ୍ରୈବ ' ପୃ ; ୧୨୫ । ସିନ୍ଧୁ-ଉପତ୍ୟକାରୁ ମିଳୁଥିବା ଭସ୍ମ-କବରର ପାତ୍ରରେ ଯେଉଁଭଳି ଚିତ୍ରମାନ ଅଙ୍କିତ ହୋଇଅଛି, ଆମେ ଋଗ୍‌ବେଦରେ ୧୦ମ ମଣ୍ଡଳସ୍ଥ ୧୪ଶ, ୧୬ଶ ଓ ୧୮ଶ ସୂକ୍ତରେ ସେହିଭଳି ବର୍ଣ୍ଣନା ଦେଖିବାକୁ ପାଇଥାଉଁ । ବୈଦିକ ଅନ୍ତ୍ୟେଷ୍ଟିକ୍ରିୟା ସହିତ ଏହାର ସାମଞ୍ଜସ୍ୟ ବାସ୍ତବିକ କୌତୂହଳୋ-ଦ୍ଦୀପକ ।

୪ Purusottam Singh : Burial Practices in Ancient India : Prithivi Prakashan, Varanasi (1970) : p. 47.

ଅବଶ୍ୟ ବିଭିନ୍ନ ସ୍ଥାନମାନଙ୍କରେ ଏହି କବରଖାନା ପ୍ରଧାନ ସ୍ତୂପର (Citadel mound) ବିଭିନ୍ନ ଦିଗରେ ଅବସ୍ଥିତ ଥିଲା ।

ଯଥା:—

(କ) ରୁପାର—ପ୍ରଧାନ ସ୍ତୂପର ପଶ୍ଚିମରେ

(ଖ) ଲୋଠାଲ୍—ପ୍ରଧାନ ସ୍ତୂପର ଉତ୍ତର ପଶ୍ଚିମରେ

(ଗ) ହରପ୍ପା ଓ କାଲିବଙ୍ଗା—ପ୍ରଧାନ ସ୍ତୂପର ଦକ୍ଷିଣ-ପଶ୍ଚିମରେ ଏପରି ଭାବରେ କବରଖାନାର ବିଭିନ୍ନ ଦିଗରେ ଅବସ୍ଥିତିରୁ ଏହି ସୂଚନା ମିଳେ ଯେ, ହୁଏତ ଏହା ନଗର ନିର୍ମାଣ ଯୋଜନାକୁ ଦୃଷ୍ଟିରେ ରଖି କରାଯାଇଥିବ କିମ୍ବା ବିଭିନ୍ନ ଅଞ୍ଚଳରେ ବସବାସ କରୁଥିବା ଲୋକମାନଙ୍କ ମୃତବ୍ୟକ୍ତିର ଆତ୍ମାର ଅବସ୍ଥିତି ବିଷୟରେ ଥିବା ଭିନ୍ନ ଭିନ୍ନ ଧାରଣାକୁ ଅବଲମ୍ବନ କରି କରାଯାଇଥିବ ।

୫ । ନବୀନ କୁମାର ସାହୁ ଓ ସୁରେନ୍ଦ୍ର ମହାନ୍ତି : "ସିନ୍ଧୁ-ସଭ୍ୟତା ଓ ଜୈନଧର୍ମ" ନବଭାରତ, ୨ୟ ବର୍ଷ ୯ମ ସଂଖ୍ୟା : ପୃ : ୨୯୯ ।

୬ । M. S Vats . op. cit · Gordon Childe quoted p. 323.

୭ । Balsɔstri Hardas : Glimpses of the Vedic Nation : p. 74.

୮ । ଶିବଦତ୍ତ ଜ୍ଞାନୀ : ଭାରତୀୟ ସଂସ୍କୃତି (ହିନ୍ଦୀ) ଭାରତୀୟ ବିଦ୍ୟାଭବନ, ବମ୍ବେ :ପୃ-୩୮ ।

୯ । ତଦୈବ (ଓଡ଼ିଆ ଅନୁବାଦ ଲେଖକଙ୍କ ଦ୍ୱାରା) ପୃ-୩୫ ।

୧୦ । ସୁରେନ୍ଦ୍ରନାଥ ଶତପଥୀ : "ସିନ୍ଧୁ-ସିଭ୍ୟୁତି ଆର୍ଯ୍ୟ ନା ଦ୍ରାବିଡ଼ ?" ଝଙ୍କାର : ୩୮ଶ ବର୍ଷ ୩ୟ ସଂଖ୍ୟା : ପୃ ୨୭୮-୨୮୭ ।

୧୧ । ଏ ସଂପର୍କରେ ମାଧବ ସ୍ୱରୂପ ଭଟ୍ସଙ୍କର ନିମ୍ନଲିଖିତ ଉକ୍ତି ପ୍ରଣିଧାନଯୋଗ୍ୟ ।

"Briefly the religion of the Indus people consisted in worshipping the Mother Goddess, deification of trees and their sprits, certain animal chimeras and their anthropomorphic figures, the prototype of Siva, the phallic symbols, the Swastik etc. Of these, the cult of Mother Goddess and Swastika were common throughout the ancient world."

M.S. Vats : op. cit. p. 124.

୧୨ । D. A. Maekenzie : Myth of Babylonia and Assyria : p. 100.

୧୩ । D. D. Kosambi : The Culture and Civilization of Ancient India Historical Line (1977) : p 68.
(କ) ନୀଳକଣ୍ଠ ଦାସ: ଶ୍ରୀମଦ୍‌ଭଗବଦ୍‌ଗୀତା, ପୀଠିକା : ପୃ-୧୦୨ ।
(ଖ) ଶତପଥ ବ୍ରାହ୍ମଣ : ୧୩।୫।୨।୨ ।

୧୪ । ଶିବଦତ୍ତ ଜ୍ଞାନୀ : ଭାରତୀୟ ସଂସ୍କୃତି (ହିନ୍ଦୀ) : ଭାରତୀୟ ବିଦ୍ୟାଭବନ : ପୃ-୩୮ ।
କେନ୍ଦୁଝର ଜିଲ୍ଲାର ଭୂୟାଁ ପୀଢ଼ରେ ଥିବା ଭୂୟାଁମାନେ ଏବେ ମଧ୍ୟ ଡେକାକୁ ସାକ୍ଷୀ ରଖି ଗାଁ ଗାଁ ମଧ୍ୟରେ ଥିବା ଗୁରୁତର ବିବାଦମାନ ସମାଧାନ କରିଥାଆନ୍ତି । ଏହି 'ଡେକା' ଭୂମିଦେବତା ଅଟନ୍ତି । ଲେଖକ ଉକ୍ତ ଜିଲ୍ଲାରେ ଜଣେ ପ୍ରଶାସନିକ ଅଧିକାରୀ ଭାବରେ ଅବସ୍ଥାପିତ ଥିବା ସମୟରେ ଏହି ପ୍ରକ୍ରିୟାରେ ଏକ ଗୁରୁତର ଗ୍ରାମ୍ୟ ସୀମାବିବାଦର ସମାଧାନ କରାଯାଇପାରିଥିଲେ ଏବଂ ଏଥିରେ ଉଭୟ ପକ୍ଷ ସନ୍ତୁଷ୍ଟ ରହିଥିଲେ ।

୧୫ । ଋଗ୍‌ବେଦ : ୧୦-୧-୧୨ ।

୧୬ । ଋଗ୍‌ବେଦ . ୧୦-୧୯-୧୦ ।

୧୭ । Bridget and Raymond Allchin : The Rise of Civilization in India and Pakistan ;
Select Book Service Syndicate (1983) : p. 150.

୧୮ । ଋଗ୍‌ବେଦ : ୧୦/୧୨୯ ଏବଂ
ନୀଳକଣ୍ଠ ଦାସ : ଶ୍ରୀମଦ୍‌ଭଗବଦ୍‌ ଗୀତା, ମୁଖବନ୍ଧ : ପୃ ୧୯-୨୧ ।

୧୯ । ଋଗ୍‌ବେଦ : ୧୦/୧୬ ।

୨୦ । ଋଗ୍‌ବେଦସ୍ଥ ପୁରୁଷସୂକ୍ତର ନିମ୍ନଲିଖିତ ପଙ୍‌କ୍ତିଟି ଏ ସମ୍ପର୍କରେ ଦ୍ରଷ୍ଟବ୍ୟ :
"ତସ୍ମାଦ୍‌ ବିରାଡ଼ଜାୟତ ବିରାଜୋଽଧିପୁରୁଷଃ"
ଦେଖନ୍ତୁ ପୁରୁଷସୂକ୍ତ । ୫ ।

୨୧ । The Cultural Heritage of India, Vol. I Article by Suniti Kumar Chatterji "Contribution from Different Cultural Groups" p-72.

୨୨ । ସୁରେନ୍ଦ୍ରନାଥ ଶତପଥୀ . ସିନ୍ଧୁ-ସଂସ୍କୃତି ଆର୍ଯ୍ୟ ନା' ଦ୍ରାବିଡ଼ ? ଝଙ୍କାର, ୩୮ଶ ବର୍ଷ ୩ୟ ସଂଖ୍ୟା : ପୃ ୨୮୨ ।

୨୩ । ଗୀତା ୧୮/୬୧ ।

୨୪ । A. K. Chatterjee. : A Comprehensive History of Jainism, Vol. I (1978) p p. 1-33.

୨୫ । ଖଣ୍ଡଗିରିର ଜୟାବିଜୟା ଓ ଅନ୍ୟ ଗୁମ୍ଫାମାନଙ୍କରେ ଏହି ବୃକ୍ଷପୂଜାର ଚିହ୍ନମାନ ଖୋଦିତ ହୋଇଥିବାର ଦେଖିବାକୁ ମିଳେ । ଏଠାରେ ଥିବା ୯ ଗୋଟି ଋଷଭନାଥଙ୍କ ମୂର୍ତ୍ତି ମଧ୍ୟରୁ ବାରଭୂଜା ଗୁମ୍ଫାରେ ଥିବା ଗୋଟିଏ ମୂର୍ତ୍ତି ପାଖରେ ତାଙ୍କର କେବଳ ବୃକ୍ଷ 'ନ୍ୟଗ୍ରୋଧ' (ବରଗଛ)କୁ ଆମେ ଦେଖିବାକୁ ପାଇଥାଉଁ । ଦେଖନ୍ତୁ ସୁରେନ୍ଦ୍ରନାଥ ଶତପଥୀ : ବୌଦ୍ଧଜାତକ ଗଳ୍ପ, ୨ୟ ଭାଗ : ଗ୍ରନ୍ଥପ୍ରବେଶ ପୃ. ୧୧ ।

୨୬ । N. K. Sahu : History of Orissa, Vol I : p 353

୨୭ । ସୁରେନ୍ଦ୍ରନାଥ ଶତପଥୀ : ବୌଦ୍ଧଜାତକ ଗଳ୍ପ ୧ମ ଭାଗ : ଭୂମିକା : ପୃ. ୯୫ ।

୨୮ । ଶୃଗାଳ-ଜାତକ (ସଂଖ୍ୟା-୧୧୩) ଓ
ଦୁର୍ମେଧା-ଜାତକ (ସଂଖ୍ୟା ୧୨୨) ଇତ୍ୟାଦି ।

୨୮ କ । D. D. Kosambi : op. cit. p.65

୨୯ । S. R. Rao . Key-note Address at the Seminar on "Sacrifice in India—Concept and Evolution' organised by Bombay University held on the 3rd, 4th and 5th March, 1986.

୩୦ । Bridget and Raymond Allchin : op. cit p-216.

୩୧ । ଆର୍ଯ୍ୟମାନେ 'ସପ୍ତସିନ୍ଧୁ' ଦେଶରୁ କ୍ରମେ କ୍ରମେ ପୂର୍ବାଭିମୁଖୀ ହୋଇ ଅଗ୍ରସର ହୋଇ ଯେତେବେଳେ ଗଙ୍ଗା ଯମୁନା ଦୋଆବ ଅଞ୍ଚଳରେ ପହଞ୍ଚିଲେ, ପ୍ରାୟ ସେହି ସମୟରେ ରଚିତ ଶତପଥ ବ୍ରାହ୍ମଣରେ ( ଖ୍ରୀ: ପୂ: ୧୦୦୦-୮୦୦ ) ଯଥାର୍ଥରେ ଲୁହାଯାଇଅଛି 'ବ୍ରହ୍ମଦ୍ୱାଦଶ' ନଦୀତୀରରୁ ଅଗ୍ନିଙ୍କୁ ପୂର୍ବଦେଶକୁ ଅଣାଯାଇଥିଲା । ଅଗ୍ନିଙ୍କର ପୂର୍ବଦେଶକୁ ଆଗମନ, ତେଣୁ ଆର୍ଯ୍ୟମାନଙ୍କର ପୂର୍ବାଭିମୁଖୀ ଗତି ସହିତ ସମ୍ବନ୍ଧିତ ବୋଲି ମନେହୁଏ ।

୩୨ । S. R. Rao : Lothal and the Indus Civilization (1973), Asia Publishing House, Bombay p. 124.

ଏଥିରୁ ପ୍ରମାଣ ମିଳୁଛି ଯେ ସିନ୍ଧୁ-ସଭ୍ୟତାର ଲୋକମାନେ ଅଶ୍ୱର ବ୍ୟବହାର ଜାଣିଥିଲେ । ସେମାନେ ଅଶ୍ୱର ବ୍ୟବହାର ଜାଣି ନ ଥିଲେ ବୋଲି ସାଧାରଣତଃ ବହୁ ଐତିହାସିକ ଯେଉଁ ମତ ଦିଅନ୍ତି, ତାହା ଠିକ୍ ନୁହେଁ ।

୩୩ । ଋଗ୍‌ବେଦ : ୧ । ୯ । ୪୪ ।

୩୪ । S. R. Rao : Key-note Address op. cit.

୩୫ । ସୁରେନ୍ଦ୍ରନାଥ ଶତପଥୀ : "ସିନ୍ଧୁ-ସଂସ୍କୃତି ଆର୍ଯ୍ୟ ନା ଦ୍ରାବିଡ଼ ?" ଝଙ୍କାର, ୩୮ଶ ବର୍ଷ ୩ୟ ସଂଖ୍ୟା : ପୃ ୨୮୨-୨୮୩ ।

୩୬ । Sir John Marshall : Mohenjodaro and the Indus Civilization , vol. I, p-52.

୩୭ । ଏ ସମ୍ପର୍କରେ ଭି. ଏସ୍. ଅଗ୍ରୱାଲ୍ କୁହନ୍ତି :

"The main point about manifest Prajapati is that of his triple nature, from which the threefold cosmic manifestation has taken place. This theory of the triad being at the root of the cosmos, is the fundamental creed of Vedic metaphysics, religion and ritual as very often expressed through a series of triadic formulas."

V. S. Agrawalla : Vedic Lectures : Prithivi Prakashan, Varanasi. (1981), p-91.

୩୮ । ଭି. ଏସ୍. ଅଗ୍ରୱାଲ୍ : ତତ୍ରୈବ ।

୩୯ । Bridget and Raymond Allchin : op. cit. p-124.
ସେ ପୁଣି କହନ୍ତି :

"Moreover stones identical in form to Lingam were found in the cities."

୪୦ । M. S. Vats : op. cit p-122.

୪୦-କ । ଋଗ୍‌ବେଦ : ପୃ. ୧୬୪-୪୬ ।

୪୧ । ନୀଳକଣ୍ଠ ଦାସ : ଶ୍ରୀମଦ୍‌ଭଗବଦ୍ ଗୀତା : ପଠିକା : ପୃ-୭ ।

୪୧-କ । ଋଗ୍‌ବେଦ : ୧। ୧୬୪ ।

୪୨ । M.S. Vats : Excavations at Harappa Vol. I : Delhi (1940) : p-220.

୪୩ । ଋଗ୍‌ବେଦ : ପୃ ୧୮-୯ ।

୪୪ । Purusottam Singh : op. cit. p-38.

୪୫ । ନୀଳକଣ୍ଠ କୁମାର ସାହୁ ଓ ସୁରେନ୍ଦ୍ର ମହାନ୍ତି : "ସିନ୍ଧୁ-ସଭ୍ୟତା ଓ ଜୈନଧର୍ମ" : ନବଭାରତ ୨ୟ ବର୍ଷ, ୯ମ ସଂଖ୍ୟା : ପୃ-୩୦୨ ।

୪୬ । The Cultural Heritage of India, vol. I. "Cultural Inter-relation between India and the outside World before Asoka." Article by A. D. Pusalkar : p-148.

୪୭ । ନୀଳକଣ୍ଠ କୁମାର ସାହୁ ଓ ସୁରେନ୍ଦ୍ର ମହାନ୍ତି . "ସିନ୍ଧୁ-ସଭ୍ୟତା ଓ ଜୈନଧର୍ମ" । ନବଭାରତ; ୨ୟ ବର୍ଷ, ୯ମ ସଂଖ୍ୟା, ପୃ ୩୦୨ ।

୪୮ । Sir John Marshall : op. cit. pp.-52-53.

୪୮-କ । Sir John Marshall : Mahenjodaro and the Indus Civilization, vol. I.

୪୯ । D. A. Mackenzie, : op. cit. pp. 397-398.



## ପଞ୍ଚମ ପରିଚ୍ଛେଦ

# ସିନ୍ଧୁସଂସ୍କୃତିରେ ଅଗ୍ନିପୂଜା

ଅଗ୍ନିପୂଜା ବା ଯଜ୍ଞାନୁଷ୍ଠାନକୁ ଆମେ ସାଧାରଣତଃ ବେଦଭିତ୍ତିକ ବୋଲି ଗ୍ରହଣ କରିଥାଉଁ; କାରଣ ବେଦରେ ଏହି ଯଜ୍ଞାନୁଷ୍ଠାନର ବହୁଳ ଉଲ୍ଲେଖ ରହିଅଛି । ଯେଉଁ ଦେବତାମାନଙ୍କ ଉଦ୍ଦେଶ୍ୟରେ ଅର୍ଘ୍ୟ ସ୍ୱରୂପ ବୈଦିକ ମନ୍ତ୍ରମାନ ରଚିତ ହୋଇଛି, ତନ୍ମଧ୍ୟରେ ଅଗ୍ନି ହେଉଛନ୍ତି ଏକ ପ୍ରଧାନ ଦେବତା । ଋଗ୍‌ବେଦର ପ୍ରଥମମନ୍ତ୍ର ଅଗ୍ନିଦେବତାଙ୍କ ନାମରେ ହିଁ ସମର୍ପିତ । ବୈଦିକ ସାହିତ୍ୟ ଆମ ପାଖରେ ବର୍ତ୍ତମାନ ଲିଖିତ ଆକାରରେ ଉପଲବ୍ଧ । ସେହିହେତୁ ଆମର ଏ ପ୍ରକାର ଧାରଣା ଆସିବା ସ୍ୱାଭାବିକ । କିନ୍ତୁ ଅଧୁନାତନ ଗବେଷଣା ଫଳରେ ଜଣାପଡ଼ିଲାଣି ଯେ ଭାରତ-ଭୂମିରେ ଯଜ୍ଞାନୁଷ୍ଠାନର ଚଳିତଧାରା ଅତ୍ୟନ୍ତ ପ୍ରାଚୀନତର । ଏହା ମଧ୍ୟ ହରପ୍ପୀୟ ସଂସ୍କୃତିକୁ ସମାଚ୍ଛନ୍ନ କରି ରଖିଥିଲା । ଏଭଳି ଧାରଣା ପୋଷଣ କରୁଥିବା ଗବେଷକମାନଙ୍କ ମଧ୍ୟରେ ଏସ୍. ଆର୍. ରାଓ ଅଗ୍ରଣୀ । ସେ ତେଣୁ ଯଥାର୍ଥରେ କହିଛନ୍ତି :

"It is obvious that the Indus people or the Harappans as they are known, were the first to offer sacrifices in the Indian subcontinent. (୧) ବସ୍ତୁତଃ ଋଗ୍‌ବେଦ ରଚନାର ବହୁ ପୂର୍ବରୁ ଯେ ଅଗ୍ନି-ପୂଜା ଆର୍ଯ୍ୟମାନଙ୍କର ପୂର୍ବପୁରୁଷମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା ଏକଥା ସ୍ପଷ୍ଟ ଭାବରେ ଋଗ୍‌ବେଦରେ ଉଲ୍ଲେଖ ଅଛି । ତହିଁରେ ଲେଖାଅଛି :

ଅଗ୍ନିଃ ପୂର୍ବେଭିଃ ଋଷିଭିରୀଡ୍ୟଃ ନୂତନୈରୁତ । (୧-କ) ଅର୍ଥାତ୍ ଅଗ୍ନିଙ୍କୁ ପୂର୍ବରୁ ଋଷିମାନେ ପୂଜା କରୁଥିଲେ ଏବଂ ଏବକାର ଋଷିମାନେ ମଧ୍ୟ ପୂଜା କରୁଛନ୍ତି । ପରଂପରାକ୍ରମେ ବହୁବର୍ଷ ଧରି ଆର୍ଯ୍ୟମାନଙ୍କ ମଧ୍ୟରେ ଅଗ୍ନିଦେବଙ୍କ ପୂଜା ନିରବଚ୍ଛିନ୍ନ ଭାବରେ ଗଢ଼ି ଆସିଥିବାର ଏହା ଏକ ବଳିଷ୍ଠ ନିଦର୍ଶନ । ସିନ୍ଧୁ-ସଂସ୍କୃତିରେ ଅଗ୍ନିପୂଜା ସମ୍ପର୍କୀୟ ଧାରଣା ମୁଖ୍ୟତଃ ତିନି ପ୍ରକାର ପ୍ରମାଣର ଭିତ୍ତିଭୂମି ଉପରେ ପର୍ଯ୍ୟବସିତ । ଅତଏବ ସେଗୁଡ଼ିକୁ ପୃଥକ୍ ପୃଥକ୍ ଭାବରେ ବିଶ୍ଳେଷଣ ଓ ଆଲୋଚନା କରାଯିବା ଉଚିତ । ସେହି ପ୍ରମାଣ ଗୁଡ଼ିକ ହେଲେ :

କ-ହୈନ୍ଧବ ସଂସ୍କୃତିରୁ ମିଳୁଥିବା ଯଜ୍ଞକୁଣ୍ଡ ଭିତ୍ତିକ ପ୍ରମାଣ ;

ଖ-ସୈନ୍ଧବ ମୋହର ମାନଙ୍କରୁ ମିଳୁଥିବା ଅଗ୍ନିଦେବଙ୍କ ଚିତ୍ରଭିତ୍ତିକ ପ୍ରମାଣ; ଏବଂ

ଗ-ଉକ୍ତ ମୋହର ଗୁଡ଼ିକରେ ଥିବା ଚିତ୍ରଲିପିଭିତ୍ତିକ ପ୍ରମାଣ ।

## ଯଜ୍ଞକୁଣ୍ଡଭିତ୍ତିକ ପ୍ରମାଣ :

ସିନ୍ଧୁ-ସଭ୍ୟତାର ଅଧିବାସୀମାନେ ଅଗ୍ନିଙ୍କୁ ଦେବତା ଜ୍ଞାନ କରି ତାଙ୍କର ଆରାଧନା କରୁଥିବାର ପ୍ରମାଣ ଏହି ସଭ୍ୟତା ସହିତ ସଂପର୍କିତ ସ୍ଥାନମାନଙ୍କରୁ ମିଳୁଥିବା ଧ୍ୱଂସାବଶେଷରେ ବହୁଳ ଭାବରେ ଦୃଶ୍ୟମାନ । ଏ ସମ୍ପର୍କରେ ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱବିତ୍ ଏସ. ଆର. ରାଓଙ୍କ ମତ ହେଲା :

"We have actual remains of fire-altars and sacrificial altars in Indus cities and representation of the fire god and offerings at sacrifices in seals." ( ୨ )

ସିନ୍ଧୁ ସଭ୍ୟତାର ସ୍ଥାନମାନଙ୍କ ମଧ୍ୟରେ ଲୋଥାଲ୍ (ଗୁଜୁରାଟ) ଓ କାଲିବଙ୍ଗା (ରାଜସ୍ଥାନ) ପ୍ରମୁଖ ଅଟନ୍ତି । ସେଠାକାର ଧ୍ୱଂସାବଶେଷରୁ ଯଜ୍ଞକୁଣ୍ଡର ପ୍ରମାଣ ସଙ୍ଗେ ସଙ୍ଗେ ଯଜ୍ଞପୀଠର ପଶୁବଳି ଦେଉଥିବାର ପ୍ରମାଣ ମଧ୍ୟ ମିଳିଛି । ନିକଟ ଅତୀତରେ ଗୁଜୁରାଟର ଦ୍ୱାରକାରେ ହୋଇଥିବା ଖନନ ଫଳରେ ସେଠାରେ ମଧ୍ୟ ସିନ୍ଧୁ-ସଭ୍ୟତାର ଧ୍ୱଂସାବଶେଷରେ ଏକ ଗୋଲକାର ଯଜ୍ଞକୁଣ୍ଡର ସନ୍ଧାନ ମିଳିଛି । ତହିଁରେ ଏକ ପ୍ରସ୍ତର ସ୍ତମ୍ଭର ସନ୍ଧାନ ମିଳିଛି, ଯେଉଁଥିରୁ ଅନୁମିତ ହୁଏ ଯେ, ଏହା ବୋଧହୁଏ ବଳିସ୍ତମ୍ଭ ରୂପେ ବ୍ୟବହୃତ ହେଉଥିବ । ( ୩ ) ମହେଞ୍ଜୋଦାରୋ ଓ ହରପ୍ପାଠାରେ ଯେଉଁ ଗବେଷକମାନେ ଖନନ-କାର୍ଯ୍ୟ କରିଥିଲେ ସେମାନେ ନିଶ୍ଚିତ ଭାବରେ ଏ ପ୍ରକାର ଯଜ୍ଞକୁଣ୍ଡମାନ ଦେଖିଥିବେ । କିନ୍ତୁ ବୋଧହୁଏ ସେଗୁଡ଼ିକ ଯଜ୍ଞକୁଣ୍ଡ ବୋଲି ଧାରଣା ସେତେବେଳେ କରି ନଥିବେ । ଆଚନ୍ ବିଶ୍ୱବିଦ୍ୟାଳୟ ପତ୍ନତାତ୍ତ୍ୱିକ ପଦ୍ଧନାଧିଭାନ ଦର୍ଶାଇଛନ୍ତି ଯେ ହୁଇଲର ମହେଞ୍ଜୋ-ଦାରୋଠାରେ ବାସ୍ତବିକ ଇଷ୍ଟକ ନିର୍ମିତ ଗୋଟିଏ ଯଜ୍ଞ-କୁଣ୍ଡ ଦେଖିବାକୁ ପାଇଥିଲେ; କିନ୍ତୁ ସେ ତାହାର ସନ୍ଦୋଚନ ପ୍ରକାଶ କରି ନଥିଲେ । କେବଳ ତ ସର୍ବସାଧାରଣ ସ୍ଥାନ-ମାନଙ୍କରେ ନୁହେଁ; ବ୍ୟକ୍ତିଗତ ଗୃହାଭ୍ୟନ୍ତରରୁ ମଧ୍ୟ ଏ ପ୍ରକାର ଯଜ୍ଞକୁଣ୍ଡର ସଂଧାନ ଲୋଥାଲ ଓ କାଲିବଙ୍ଗା ଠାରେ ମିଳୁଛି । ଏହା ତତ୍ରତ୍ୟ ଅଧିବାସୀମାନଙ୍କ ମଧ୍ୟରେ ପ୍ରଚଳିତ ଥିବା ଅଗ୍ନି-ପୂଜାର ପୁଷ୍ଟକ ପ୍ରମାଣର ନିଦର୍ଶନ । ଗଙ୍ଗାନଗର ଜିଲ୍ଲାସ୍ଥ କାଲିବଙ୍ଗାଠାରେ ଉଭୟ ହରପ୍ପୀୟ ଓ ପ୍ରାକ୍ହରପ୍ପୀୟ ସଭ୍ୟତାର ଯେଉଁ ଧ୍ୱଂସାବଶେଷମାନ ମିଳିଛି ତାହା ବାସ୍ତବିକ କୌତୂହଳୋଦ୍ଦୀପକ । ଏଠାରେ ଅବସ୍ଥିତ ପ୍ରଧାନ ସ୍ତୂପ (Citadel mound) ହରପ୍ପୀୟ-ସଭ୍ୟତାର ଅନ୍ୟାନ୍ୟ ପ୍ରଧାନ ସ୍ତୂପମାନଙ୍କ ଭଳି ଏକ ପୂଜାପୀଠ ରୂପେ ବ୍ୟବହୃତ ହେଉଥିବା ଭଳି ମନେହୁଏ । ଏହା ଉତ୍ତର ଓ ଦକ୍ଷିଣ ଏହି ଭଳି ଦୁଇଭାଗରେ ବିଭକ୍ତ । ଦକ୍ଷିଣ ଭାଗଟିରେ ଅନେକ ଗୁଡ଼ିଏ ଇଷ୍ଟକ ନିର୍ମିତ ଉଚ୍ଚ ମଞ୍ଚ ଶ୍ରେଣୀବଦ୍ଧ

ଭାବରେ ବିଦ୍ୟମାନ । ତନ୍ମଧ୍ୟରୁ ଗୋଟିଏ ମଞ୍ଚ ଉପରେ ସମାନ୍ତର ଶ୍ରେଣୀବଦ୍ଧ ଭାବରେ ସାତଟି ଯଜ୍ଞକୁଣ୍ଡ ବିଦ୍ୟମାନ । ମାଟି ପଲସ୍ତରାରେ ଏହି ଯଜ୍ଞକୁଣ୍ଡ ଗୁଡ଼ିକୁ ନିର୍ମାଣ କରାଯାଇଛି । ଏହା ମଧ୍ୟରୁ ଭସ୍ମ, ଅଙ୍ଗାର ଓ ମୃଣ୍ମୟ ପିଷ୍ଟକ ଆଦି ମିଳୁଥିବାରୁ ଏହା ଯଜ୍ଞକୁଣ୍ଡ ରୂପରେ ବ୍ୟବହୃତ ହେଉଥିବାର ସମ୍ଭାବନା ଅଧିକ । ( ୪ )

ଅଗ୍ନିଙ୍କର ସପ୍ତଜିହ୍ୱା ଥିବା କଥା ବୈଦିକ ଆର୍ଯ୍ୟମାନେ ବିଶ୍ୱାସ କରୁଥିଲେ । ଏହାଙ୍କର 'ସପ୍ତଶିଖା'କୁ ବୁଝାଯାଉଥିଲା 'ସପ୍ତଜିହ୍ୱା' । ଏଣୁ ଅଗ୍ନିଙ୍କୁ 'ସପ୍ତଜିହ୍ୱ' ନାମରେ ଆବାହନ କରାଯାଉଥିଲା । ଏହି ଜିହ୍ୱାଗୁଡ଼ିକ ହେଲା ହିରଣ୍ୟା, କନକା, ରକ୍ତା, କୃଷ୍ଣା, ସୁପ୍ରଭା, ବହୁରୂପା ଓ ଅତିରକ୍ତା । (୫) ସେଥିପାଇଁ ଅଗ୍ନିଙ୍କୁ ସାତ ଜଣ ହୋତା ସାତ ପ୍ରକାର ପୂଜା କରିଥାନ୍ତି । ତୈତ୍ତିରୀୟ ସଂହିତା ତେଣୁ କୁହେ :

'ସପ୍ତହୋତାରଃ ସପ୍ତଧା ତ୍ୱା ଯଜନ୍ତି'

ଅର୍ଥାତ୍ 'ହେ ଅଗ୍ନି ! ସାତ ଜଣ ହୋତା ତୁମକୁ ସାତ ପ୍ରକାର ଆରାଧନା କରନ୍ତି ।' ( ୬ ) ଏ ପ୍ରକାର ସପ୍ତବିଧ ଆରାଧନା ବୈଦିକ ସପ୍ତବିଧ 'ସୋମଯାଗ'ର ଚିନ୍ତାଧାରାରେ ପ୍ରତିଭାତ । ଏହି 'ସୋମଯାଗ' ଗୁଡ଼ିକ ହେଲେ ଅଗ୍ନିଷ୍ଟୋମ, ଅତ୍ୟଗ୍ନିଷ୍ଟୋମ, ଉକ୍‌ଥ୍ୟ, ଷୋଡ଼ଶୀ, ଅତିରାତ୍ର, ବାଜପେୟ ଓ ଆପ୍ତୋର୍ଯ୍ୟାମ । ଏହାଛଡ଼ା ଅଗ୍ନିଙ୍କର ସପ୍ତରୂପର ଆରାଧନା ବିଷୟରେ ଆଉ ଗୋଟିଏ ବୈଦିକ ପ୍ରମାଣ ମଧ୍ୟ ବିଦ୍ୟମାନ । ଋଗ୍‌ବେଦର ପ୍ରଥମ ମନ୍ତ୍ରରେ ଅଗ୍ନିଙ୍କୁ ଯେଉଁ ବହୁ ନାମରେ ଆବାହନ କରାଯାଇଛି, ସେଥି ମଧ୍ୟରୁ 'ରତ୍ନଧାତମ' ହେଉଛି ଅନ୍ୟତମ । ଏହାର ତାତ୍ପର୍ଯ୍ୟ ହେଲା, ଉପାସକମାନଙ୍କୁ ଧନରତ୍ନାଦି ଦେବାରେ ଅଗ୍ନି ହେଉଛନ୍ତି ଶ୍ରେଷ୍ଠ ଦାତା । ବିବାହ, ବ୍ରତ, ହୋମାଦି କାର୍ଯ୍ୟାନୁଷ୍ଠାନ ମାନଙ୍କରେ ଆମେ ଅଗ୍ନିଙ୍କର ଏହି ସପ୍ତରୂପକୁ ପୂଜାକରି ରତ୍ନମାନ ମାଗିଥାଉଁ । ଏହି ମନ୍ତ୍ରଟିକୁ 'ବସୁଧାରା' ମନ୍ତ୍ର ବୋଲି ବୁଝାଯାଇଥାଏ । ଏହା ହେଲା :

"ବସୋ ପବିତ୍ରମସି ଶତଧାରଂ ବସୋ ପବିତ୍ରମସି ସହସ୍ରଧାରମ୍" ।

ଅର୍ଥାତ୍, ହେ ଧନ ! (ବସୁ=ଧନ) ତୁମେ ଶତ ଧାରରେ ଓ ସହସ୍ର ଧାରରେ ପବିତ୍ର ଭାବରେ (ଆମ ପାଇଁ) ବିଦ୍ୟମାନ ଥାଅ । ଏହାର ତାତ୍ପର୍ଯ୍ୟ ହେଲା, ଆର୍ଯ୍ୟ ଋଷି ଅଗ୍ନିଦେବଙ୍କଠାରୁ କେବଳ ପବିତ୍ର ଉପାୟରେ ଆସୁଥିବା ଧନ କାମନା କରୁଛନ୍ତି; ଅସତ୍ ଉପାୟରେ କଦାପି ନୁହେଁ । ଏହି ମନ୍ତ୍ର ଉଚ୍ଚାରଣ କରି ପୁରୋହିତ ପୂର୍ବ ଦିଗସ୍ଥ କାନ୍ଥରେ (ଅଗ୍ନି ସର୍ବଦା ପୂର୍ବ ଦିଗରେ ସ୍ଥାପିତ ) ସାତୋଟି ଧାର ଟାଣି ଦିଅନ୍ତି । ଏହି ସନ୍ନିକୃତ ସପ୍ତ ଯଜ୍ଞକୁଣ୍ଡ ଉପରେ ବୈଦିକ ଆର୍ଯ୍ୟମାନଙ୍କର ଅଗ୍ନିଙ୍କ 'ସପ୍ତଶିଖା'କୁ ଆରାଧନା କରିବାରେ ପ୍ରଭାବ ସୁସ୍ପଷ୍ଟ ଭଳି ମନେହୁଏ । ଏହି ଆରାଧନା ଯେ ଋଗ୍‌ବେଦୀୟ 'ସପ୍ତବିପ୍ରାଃ' (ସାତ ବ୍ରାହ୍ମଣ) ବା 'ସପ୍ତଋଷୟଃ' (ସାତ ଋଷି) ସମାହିତ କରିଥିଲେ ଏଥିରେ ସନ୍ଦେହ ନାହିଁ ।

ଏହି ଗୋଲକୃତି ଯଜ୍ଞ-କୁଣ୍ଡ ଗୁଡ଼ିକର ବ୍ୟାସ ହେଲା ୧୦ ସେ. ମି. ରୁ ୧୫ ସେ. ମି. ମଧ୍ୟରେ ଏବଂ ଉଚ୍ଚତା ହେଲା ୩୦ ସେ.ମି.ରୁ ୪୦ ସେ. ମି ମଧ୍ୟରେ । ଏହା ପାଖରେ ଖପରାରେ କିଛି ପାଉଁଶ ଥିବାର ଦେଖାଯାଏ । ସମ୍ଭବତଃ ଯଜ୍ଞକୁଣ୍ଡରେ ଅଗ୍ନି ସଂସ୍ଥାପିତ କରିବାଲାଗି ଏଥିରେ ଅଗ୍ନିଦଗ୍ଧ କାଷ୍ଠ ରଖାଯାଉଥିବ । ଏହି ଯଜ୍ଞକୁଣ୍ଡ ଶ୍ରେଣୀର ପୃଷ୍ଠଦେଶରେ ଉତ୍ତର-ଦକ୍ଷିଣ କରି ଗୋଟିଏ କାନ୍ଥ ବିଦ୍ୟମାନ । ଏଥିରୁ ଅନୁମିତ ହୁଏ ଯେ ଯାଜ୍ଞିକ ବ୍ୟକ୍ତିଙ୍କୁ ପୂର୍ବାଭିମୁଖୀ ହୋଇ ବସିବାକୁ ପଡ଼ୁଥିବ । ଏବେ ମଧ୍ୟ ଯାଗ, ହୋମ ଆଦି କର୍ମରେ ଆମେ ଅଗ୍ନିଙ୍କୁ ପୂଜା କଲାବେଳେ ପରଂପରା ଅନୁସାରେ ପୂର୍ବାଭିମୁଖୀ ହୋଇ ବସିଥାଉଁ । ଅତଏବ ଏହି କାଲିବଙ୍ଗାସ୍ଥ ଯଜ୍ଞକୁଣ୍ଡ ସମ୍ମୁଖରେ ଉପବେଶନର ପଦ୍ଧତିରେ ମଧ୍ୟ ବୈଦିକ ପ୍ରଭାବ ପଡ଼ିଥିବା ସୁସ୍ପଷ୍ଟ ।

ଗୋଟିଏ ଯଜ୍ଞକୁଣ୍ଡରୁ କିଛି ପରିମାଣରେ ଗବାସ୍ଥି ଓ ମୃଗାସ୍ଥି ମିଳୁଛି । ଅଗ୍ନିଙ୍କ ଲାଗି ଗୋମାଂସ ଓ ମୃଗ-ମାଂସ ଅର୍ପଣ କରାଯାଉଥିବାର ଏହା ଏକ ପ୍ରମାଣ । ଏହି ଯଜ୍ଞକୁଣ୍ଡରୁ ମିଳୁଥିବା ଗୋଟିଏ ମୃଣ୍ମୟ ପିଷ୍ଟକରେ ଯଜମାନ ଯଜ୍ଞ ପଶୁଟିଏ ଅଡ଼ାଇ ଅଡ଼ାଇ ନେଉଥିବାର ଚିତ୍ର ମଧ୍ୟ ବିଦ୍ୟମାନ । ଆଉ ଗୋଟିଏ ମୃଣ୍ମୟ ପିଷ୍ଟକରେ ତ୍ରିଶୃଙ୍ଗଯୁକ୍ତ ଉଷ୍ଣୀଷ ପରିହିତ ଦେବତାଙ୍କର ଚିତ୍ର ବିଦ୍ୟମାନ । ଏହି ଦେବତା ଅଗ୍ନିଙ୍କ ବ୍ୟତୀତ ଆଉ କେହି ନୁହନ୍ତି । ଅଗ୍ନିଙ୍କର ତିନି ଜନ୍ମସ୍ଥାନ ଥିବାରୁ ବେଦରେ ତାଙ୍କୁ 'ତ୍ରିପସ୍ତ୍ୟ' ବା 'ତିନି ସ୍ଥାନରେ ଥିବାବାଲା' ବୋଲି କୁହାଯାଇଛି । ଋଗ୍‌ବେଦରେ ଏହାଙ୍କ ଜନ୍ମସ୍ଥାନ ସଂପର୍କରେ କୁହାଯାଇଅଛି :

'ସିନ୍ଧୁଃ ପୃଥିବୀଉତ ଦ୍ୟୌଃ' (୭)

ଅର୍ଥାତ୍ ଏହାଙ୍କ ଜନ୍ମସ୍ଥାନ ହେଲା ସମୁଦ୍ର, ପୃଥିବୀ ଓ ଆକାଶ ।

ସମୁଦ୍ରରେ ଏ ହେଲେ ବଡ଼ବାଗ୍ନି, ପୃଥିବୀରେ ଏ ହେଲେ ସାଧାରଣ ଅଗ୍ନି ଏବଂ ଆକାଶରେ ଏ ହେଲେ ସୂର୍ଯ୍ୟ । ଋଗ୍‌ବେଦରେ ମଧ୍ୟ ଆଉ ଠାଏ ଏହାଙ୍କର 'ତ୍ରୀଣି ଜନ୍ମାନ' ବା 'ତିନି ଜନ୍ମ' ଅଛି ବୋଲି କୁହାଯାଇଛି । (୮) ଅତଏବ କାଲିବଙ୍ଗାସ୍ଥ ମୃଣ୍ମୟ ପିଷ୍ଟକରେ ତ୍ରିଶୃଙ୍ଗଯୁକ୍ତ ଉଷ୍ଣୀଷ ପରିହିତ ଦେବତା ଯେ ଅଗ୍ନିଙ୍କ ଛଡ଼ା ଆଉ କେହି ନୁହନ୍ତି, ଏକଥା ନିଃସନ୍ଦେହ । ତତ୍‌କାଳୀନ ଅଗ୍ନି ଉପାସନା ଉପରେ ବୈଦିକ ପ୍ରଭାବ ପଡ଼ିଥିବାର ଏହା ମଧ୍ୟ ଆଉ ଏକ ନିଦର୍ଶନ ।

ଏ ତ ଗଲା ସର୍ବସାଧାରଣ ପୂଜାପୀଠରେ ଅଗ୍ନି-ଉପାସନାର ଦୃଷ୍ଟାନ୍ତ ମୁଖ୍ୟତଃ ଯାହାକୁ ଭିତ୍ତିକରି ଡ଼. ଡ଼. କୋସାମ୍ବିଙ୍କ ଭଳି ପ୍ରାଚ୍ୟତତ୍ତ୍ୱବିଦମାନେ ମତ ଦିଅନ୍ତି ଯେ ସିନ୍ଧୁ-ସଂସ୍କୃତି

ଥିଲା ପୁରୋହିତ-ପ୍ରଧାନ । ଏହାଛଡ଼ା ନଗରର ଜନବସତି ଅଞ୍ଚଳରୁ ମଧ୍ୟ ଯଜ୍ଞକୁଣ୍ଡର ଧ୍ୱଂସାବଶେଷ ବାହାରୁଛି, ଯହିଁରୁ ଜଣାପଡ଼ୁଛି ଯେ ଏହି ସଂସ୍କୃତିର ଅଧିବାସୀମାନଙ୍କ ଧର୍ମୀୟ ଜୀବନରେ ଅଗ୍ନିପୂଜା ଏକ ପ୍ରଧାନ ସ୍ଥାନ ଅଧିକାର କରିଥିଲା । ବସ୍ତି ଅଞ୍ଚଳରୁ ମିଳୁଥିବା ଯଜ୍ଞକୁଣ୍ଡ ମାନଙ୍କରୁ ମଧ୍ୟ ଅନୁରୂପ ମୃଣ୍ମୟ ପିଷ୍ଟକମାନ ମିଳୁଛି ଏବଂ ସେଗୁଡ଼ିକରେ ମଧ୍ୟ ହରପ୍ପୀୟ ଚିହ୍ନ ଓ ଚିହ୍ନଲିପି ବିଦ୍ୟମାନ । ଲୋଥାଲ୍ ଠାରେ ମଧ୍ୟ ବସ୍ତି-ଅଞ୍ଚଳରୁ ଏହିଭଳି ଯଜ୍ଞକୁଣ୍ଡମାନ ମିଳୁଛି । ଏଠାରେ ଗୋଟିଏ ଚଳଗ୍ରସ୍ତା ଉପରେ ଏକ ବୃହଦାକାର ପୋଡ଼ା ଇଟାରେ ତିଆରି ଆୟତକ୍ଷେତ୍ରାକାର ବିଶିଷ୍ଟ ଯଜ୍ଞକୁଣ୍ଡର ସନ୍ଧାନ ମିଳିଛି । ଏହାର ବୃହଦାକାରରୁ ଜଣାଯାଏ ଯେ ଏହା ବୋଧହୁଏ ସାମୂହିକ ଅଗ୍ନିପୂଜା ଲାଗି ନଗରବାସୀଙ୍କ ଦ୍ୱାରା ବ୍ୟବହୃତ ହେଉଥିବ । କୁଣ୍ଡଟି ପଶ୍ଚିମାଭିମୁଖୀ । ଅତଏବ ଠାରେ ପୂଜକଙ୍କୁ ପୂର୍ବାଭିମୁଖୀ ହୋଇ ବସିବାକୁ ପଡୁଥିବ । ପୂର୍ବ କଥିତ ମତେ ଏହା ହେଉଛି ଆମର ବୈଦିକ ପରଂପରା କ୍ରମେ ଗଢ଼ି ଆସୁଥିବା ଅଗ୍ନି-ପୂଜାର ଦୃଙ୍ମୁଖିତାର ପଦ୍ଧତି; କାରଣ ଯଜ୍ଞାନୁଷ୍ଠାନରେ ସର୍ବଦା ପୁରୋହିତ ଓ ଯଜମାନ ପୂର୍ବାଭିମୁଖୀ ହୋଇ ବସନ୍ତି । ଏଠାରୁ ଗୋଟିଏ ମୃଣ୍ମୟ ସ୍ରୁବ ମଧ୍ୟ ମିଳିଛି ଯାହାର ଅଗ୍ରଭାଗ ସାମାନ୍ୟ କୃଷ୍ଣବର୍ଣ୍ଣ । ଏଥିରେ ବାରମ୍ବାର ଘୃତାହୁତି ଦେବାଦ୍ୱାରା ଅଗ୍ନି-ଶିଖାର ସଂସ୍ପର୍ଶରେ ଆସି ଏହା ହୁଏତ ଏଭଳି କୃଷ୍ଣବର୍ଣ୍ଣ ଧାରଣ କରିଥିବ । ଏହା ପାଖରେ ଗୋଟିଏ ମୃଣ୍ମୟପାତ୍ର ଅଛି । ଏଥିରେ ବୋଧହୁଏ ପବିତ୍ର ଅଗ୍ନିଙ୍କୁ ରଖାଯାଉଥିବ । ଲୋଥାଲ୍ ନଗରର ନିମ୍ନାଞ୍ଚଳରେ ଆଉ ଗୋଟିଏ ଯଜ୍ଞକୁଣ୍ଡ ଆବିଷ୍କୃତ ହୋଇଛି ଯହିଁରୁ ଅଗ୍ନି-ଦେବତାଙ୍କୁ ପୂଜାର୍ଘ୍ୟ ସ୍ୱରୂପ ପଶୁ-ମାଂସ ସମର୍ପଣ କରାଯାଉଥିବାର ପ୍ରମାଣ ମିଳୁଛି । ଏଥିରୁ ମିଳୁଥିବା ଗବାସ୍ଥି ଦ୍ୱାରା ଏହି ପ୍ରମାଣ ଆହୁରି ଦୃଢ଼ୀଭୂତ । ଯଜ୍ଞକୁଣ୍ଡରୁ ସୁନା-ଅଳଙ୍କାରମାନ ମଧ୍ୟ ମିଳୁଛି । ଋଗ୍‌ବେଦରେ ଅଗ୍ନିଙ୍କୁ 'ରୁକ୍ମ' ଏବଂ 'ନିଷ୍କ' ଆଦି ସ୍ୱର୍ଣ୍ଣାଲଙ୍କାର ଅର୍ପିତ କରାଯାଉଥିବାର ଉଲ୍ଲେଖ ଅଛି । (୯) ଏଠାରେ ସଂପୃକ୍ତ ସ୍ୱର୍ଣ୍ଣାଲଙ୍କାରମାନ ଯଜମାନ ହୁଏତ ଅର୍ଘ୍ୟସ୍ୱରୂପ ଅର୍ପଣ କରିଥାଇ ପାରନ୍ତି । ଆଉ ଏକ ସମ୍ଭାବନାକୁ ମଧ୍ୟ ଦୂର କରାଯାଇ ନପାରେ । ସମ୍ଭବତଃ ଏହି ଯଜମାନ ଜଣେ ଅଗ୍ନି-ହୋତ୍ରୀ ହୋଇଥିବେ ଏବଂ ଏହାଙ୍କ ମୃତ୍ୟୁ ପରେ ତାଙ୍କ ଜାତାଗ୍ନିକୁ ଗୃହ ମଧ୍ୟରେ ନିର୍ବାପିତ କରାଯାଇଥିବ । ସେତିକବେଳେ ତାଙ୍କ ନିତ୍ୟ ବ୍ୟବହାର୍ଯ୍ୟ ଅଳଙ୍କାରକୁ ଅଗ୍ନିମଧ୍ୟରେ ନିକ୍ଷେପ କରାଯାଇଥିବ । ନିଷ୍ଠାପର ଅଗ୍ନିହୋତ୍ରୀମାନଙ୍କ ମଧ୍ୟରେ ଏପ୍ରଥା ବହୁବର୍ଷ ଧରି ଚାଲି ଆସୁଅଛି । ବ୍ରାହ୍ମଣ ଗ୍ରନ୍ଥମାନଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ବିଭିନ୍ନ ଆକୃତିର ଖପରାରେ ଅଗ୍ନିଙ୍କୁ ପୂଜାର୍ଘ୍ୟ ଅର୍ପଣ କରାଯାଉଥିଲା, ଯାହାକୁ କି କୁହାଯାଉଥିଲା 'ପୁରୋଡ଼ାଶ' । ଏହି ପ୍ରକ୍ରିୟାରେ ଉପରୋକ୍ତ ସାମଗ୍ରୀମାନ ଶଂସିତ ଯଜ୍ଞକୁଣ୍ଡସ୍ଥ ଅଗ୍ନି-ଦେବତାଙ୍କୁ ହୁଏତ ସମର୍ପିତ ହୋଇଥିବ । ଏବେ ବି ଯଜ୍ଞାନୁଷ୍ଠାନରେ ଆମ୍ଭମାନଙ୍କ ଭିତରେ ଏହି 'ପୁରୋଡାଶ'ର ପ୍ରଚଳନ ଅଛି । ସେହି ଦୃଷ୍ଟିରୁ ବିଚାର କଲେ ମଧ୍ୟ ଏହି ଯଜ୍ଞକୁଣ୍ଡ ଓ ତନ୍ମଧ୍ୟରୁ ମିଳୁଥିବା ବସ୍ତୁମାନଙ୍କ ବିଷୟରେ ନିବିଡ଼ ଭାବରେ ଅନୁଧ୍ୟାନ

କଲେ ଏହା ଉପରେ ଯେ ବୈଦିକ ପ୍ରଭାବ ପଡ଼ିଛି, ଏକଥା ନିଃସନ୍ଦେହ ରୂପରେ କୁହାଯାଇ ପାରିବ ।

ବୈଦିକ 'ଗବାମୟନ' ଯଜ୍ଞରେ ଅଗ୍ନିଙ୍କୁ ଗୋମାଂସ ଅର୍ପଣ କରାଯାଉଥିଲା । କେବଳ ତ ଗୋମାଂସ ନୁହେଁ, ବିଭିନ୍ନ ଯଜ୍ଞମାନଙ୍କରେ ଛାଗ, ଅଶ୍ୱ ଆଦି ବିଭିନ୍ନ ପ୍ରକାର ପଶୁମାଂସ ମଧ୍ୟ ଅର୍ପଣ କରାଯାଉଥିଲା । ଉଭୟ କାଲିବଙ୍ଗା ଓ ଲୋଥାଲ୍‌ଠାରେ ଯଜ୍ଞକୁଣ୍ଡରୁ ମିଳୁଥିବା ଗବାସ୍ଥି ଖଣ୍ଡିତ ଭାବରେ ସୂଚାଇ ଦେଉଛି ଯେ ଗୋମାଂସ ଅଗ୍ନି-ଦେବଙ୍କୁ ନୈବେଦ୍ୟ ସ୍ୱରୂପ ଅର୍ପଣ କରାଯାଉଥିଲା । ଏଣୁ ଯଥାର୍ଥରେ ଅଗ୍ନିଙ୍କର ଗୋଟିଏ ନାମ ଥିଲା 'କବ୍ୟାଦ' ବା 'କଞ୍ଚା ଗୋମାଂସ ଖାଇବା ବାଲା' । ଏହି ସ୍ୱାଦିଷ୍ଟ 'କବ୍ୟ' ଇରାନ୍‌ରେ ବହୁ ବର୍ଷ ଧରି ପ୍ରଚଳିତ ଥିଲା । ମୁସଲମାନ ମାନଙ୍କର 'କବାବ' ଶବ୍ଦର ମୂଳଭିତ୍ତି ଅଛି ଏଇଠି । କାଲିବଙ୍ଗାରେ ମିଳୁଥିବା ମୃଣ୍ମୟ ପିଷ୍ଟକ ଉପରେ ଯଜମାନ ଯଜ୍ଞପଶୁକୁ ଯଜ୍ଞକୁଣ୍ଡ ଆଡ଼କୁ ଆଗେଇ ନେବାର ଯେଉଁ ଚିତ୍ର ଅଙ୍କିତ ହୋଇଅଛି, ତାହା ଯଜ୍ଞରେ ହରପ୍‌ପୀୟ ମାନଙ୍କର ପଶୁବଳି ଦେବାର ପ୍ରମାଣ ଆହୁରି ଦୃଢ଼ୀଭୂତ କରିବା ସଙ୍ଗେ ସଙ୍ଗେ ତଦୁପରି ବୈଦିକ ପ୍ରଭାବର ସୁସ୍ପଷ୍ଟ ସୂଚନା ଦେଉଛି ।

## ମୃଣ୍ମୟ ମୋହରରେ ଅଙ୍କିତ ଚିତ୍ରଭିତ୍ତିକ ପ୍ରମାଣ :

ମହେଞ୍ଜୋଦାରୋ, ହରପ୍‌ପା, କାଲିବଙ୍ଗା, ଲୋଥାଲ୍, ଦ୍ୱାରକା ଆଦି ସ୍ଥାନ ମାନଙ୍କରେ ଖନନ ଫଳରେ ସିନ୍ଧୁ-ସଭ୍ୟତାର ଅନେକ ଗୁଡ଼ିଏ (ପ୍ରାୟ ୪୦୦୦ ସଂଖ୍ୟକ) ମୃଣ୍ମୟ ମୋହର ମିଳିଛି । ଏହି ମୋହର ଗୁଡ଼ିକ ମୂଳତଃ ବ୍ୟବସାୟ ବାଣିଜ୍ୟ ସଂପର୍କୀୟ କାର୍ଯ୍ୟକଳାପରେ ବ୍ୟବହୃତ ହେଉଥିବାର ପ୍ରମାଣ ମିଳୁଥିଲେ ମଧ୍ୟ ଏଥିରେ ଅଙ୍କିତ ଚିତ୍ରଲିପିରୁ ଜଣାପଡେ ଯେ ଏଗୁଡ଼ିକର ଧର୍ମନିଷ୍ଠ କାର୍ଯ୍ୟାବଳୀ ସହିତ ସଂପର୍କ କିଛି କମ୍ ନୁହେଁ । ଏହି ଚିତ୍ରଲିପି ଗୁଡ଼ିକର ସଂପୂର୍ଣ୍ଣ ପାଠୋଦ୍ଧାର ଏପର୍ଯ୍ୟନ୍ତ ଅବଶ୍ୟ କରାଯାଇ ପାରିନାହିଁ । ସେ ଯାହାହେଉ, ବି. ବି. ଲାଲ.; ଏସ. ଆର. ରାଓ ପ୍ରଭୃତି ସ୍ୱଳ୍ପ ସଂଖ୍ୟକ ପ୍ରତ୍ନତତ୍ତ୍ୱବିତ୍‌ମାନେ ଏଥିରୁ ଯେତୋଟିର ପାଠୋଦ୍ଧାର କରିଛନ୍ତି, ତାହା ଅନୁଧ୍ୟାନ କଲେ ଜଣାଯାଏ ଯେ ଏଥିରୁ ଅଧିକାଂଶ ଅଗ୍ନିପୂଜା ସହିତ ସଂପର୍କିତ ।

ମାର୍ଶାଲଙ୍କ ଦ୍ୱାରା ଆବିଷ୍କୃତ ଦୁଇଟି ମୃଣ୍ମୟ ମୋହର (ସଂଖ୍ୟା ୩୭ ଓ ୩୮) ବିଷୟ ବର୍ତ୍ତମାନ ବିଚାରକୁ ନିଆଯାଉ । ଏଠାରେ ଯଜ୍ଞକୁଣ୍ଡଟି ଉପରେ ସପ୍ତରଜ୍ଜୁ ଥିବା ତିନିଗୋଟି ମୃଣ୍ମୟପାତ୍ର ଗୋଟିକ ଉପରେ ଗୋଟିଏ ହୋଇ ତିନି ସ୍ତରରେ ସ୍ଥାପିତ ହୋଇଅଛି । କେତେକ ଗବେଷକ ଏହାକୁ 'ସୋମ-ପବିତ୍ର' ବା 'ସୋମରସ ଛାଣିବା

ପାତ୍ର' ବୋଲି ଅନୁମାନ କରନ୍ତି । ଏହା କିନ୍ତୁ ଠିକ୍ ନୁହେଁ । ଏହା ହୋଇଥିଲେ ନିମ୍ନତମ ଛିଦ୍ରଯୁକ୍ତ ପାତ୍ର ତଳେ ସୋମରସକୁ ଧରି ରଖିବା ପାଇଁ ଛିଦ୍ରହୀନ ପାତ୍ରଟିଏ ନିଶ୍ଚୟ ସଂସ୍ଥାପିତ ହୋଇଥା'ନ୍ତା । ତାହା କିନ୍ତୁ ହୋଇନାହିଁ । ତା'ଛଡ଼ା ପ୍ରତିଟି ପାତ୍ରରେ ସପ୍ତଛିଦ୍ର କରିବା ପଛରେ ନିର୍ଦ୍ଦିଷ୍ଟ କିଛି ଉଦ୍ଦେଶ୍ୟ ଓ ଅର୍ଥ ନିହିତ ଥିବାର ମନେ ହୁଏ । ଆମ୍ଭ ମତରେ ଅଗ୍ନିଙ୍କର ସପ୍ତଶିଖାର ଆରାଧନା ସଂପର୍କୀୟ ଚିନ୍ତାଧାରା ଏହି ଚିତ୍ରରେ ପ୍ରତି-ଫଳିତ ହୋଇପରି ମନେହୁଏ । ତିନୋଟି ସ୍ତରରେ ପାତ୍ର ରଖିବାର ତାତ୍ପର୍ଯ୍ୟ ହେଉଛି ଅଗ୍ନିଙ୍କର 'ତ୍ରିପସ୍ତ୍ୟ' ବା ତିନି ସ୍ଥାନରେ ଅବସ୍ଥାନ ବିଷୟରେ ସଙ୍କେତ ଦେବା, ଯେଉଁ ବିଷୟରେ ସବିଶେଷ ଆଲୋଚନା ପୂର୍ବରୁ କରାଯାଇଅଛି । ଏବେ ମଧ୍ୟ ଆମେ ଆକାଶଦୀପ ଦେଲାବେଳେ ସପ୍ତଛିଦ୍ରଯୁକ୍ତ ଗୋଟିଏ ମୃଣ୍ମୟ ପାତ୍ରରେ ପ୍ରଦୀପଟିଏ ସଂସ୍ଥାପିତ କରି ତାହାକୁ ଆକାଶ ଉପରକୁ ଉଠାଇ ଥାଉ । ଏହା ହେଉଛି ଅଗ୍ନି ଦେବଙ୍କର 'ସପ୍ତଧା' ବା 'ସାତ ପ୍ରକାର' ପୂଜାର (ସପ୍ତହୋତାରଃ ସପ୍ତଧା ତ୍ୱା ଯଜନ୍ତି) ସଙ୍କେତ ।

ମହେଞ୍ଜୋଦାରୋରେ ଆଉ ଗୋଟିଏ ମୃଣ୍ମୟ ମୋହରରେ (ସଂ-୩୬୬୦) ଅଶ୍ୱତ୍ଥ ବୃକ୍ଷରେ ଯଜ୍ଞକୁଣ୍ଡଟିଏ ଚିତ୍ରିତ ହୋଇଛି । ସେହିପରି ଅପର ଏକ ମୃଣ୍ମୟ ମୋହରରେ ଅଶ୍ୱରୂପୀ ଅଗ୍ନିଙ୍କର ଚିତ୍ର ମଧ୍ୟ ଅଙ୍କିତ ହୋଇଛି । ଦ୍ୱିତୀୟୋକ୍ତ ଚିତ୍ରରେ ଅଶ୍ୱତ୍ଥ ବୃକ୍ଷଟିକୁ ମଧ୍ୟ ଭାଗରେ ରଖି ଦୁଇ ପାର୍ଶ୍ୱରେ ଦୁଇଟି ଅଶ୍ୱ-ମୂର୍ତ୍ତି ଚିତ୍ରିତ ହୋଇଛନ୍ତି । ଋଗ୍-ବେଦରେ ଅଗ୍ନିଙ୍କର ଗୋଟିଏ ନାମ ହେଉଛି 'ଦ୍ରୁଷଦ୍' ବା 'ଦ୍ରୁମଜାତ' । ଅଗ୍ନି 'ଦ୍ରୁମଜାତ' ବୋଲି ତାଙ୍କୁ କୁହାଯାଏ 'ଦ୍ରୁଷଦ୍' (ସଦ୍ ଧାତୁ ଜନ୍ମାର୍ଥ ବୋଧକ) । ଅଗ୍ନିଙ୍କର ଏହି 'ଦ୍ରୁଷଦ' ଭାବଟି ଉପରୋକ୍ତ ମୃଣ୍ମୟ ମୋହର ଦ୍ୱୟରେ ଅଭିବ୍ୟକ୍ତ । ଅଶ୍ୱତ୍ଥ ବୃକ୍ଷର ଦୁଇ ଶାଖାକୁ ପରସ୍ପର ସହିତ ଘର୍ଷଣ କରିବା ଫଳରେ ପୂର୍ବେ ଅଗ୍ନି ସଂଜାତ କରାଇ ତାହାକୁ ଯଜ୍ଞରେ ଆରୋପିତ କରାଯାଉଥିଲା । ଏହି ଘର୍ଷକ ଶାଖାକୁ କୁହାଯାଉଥିଲା 'ଅରଣି' । ଏହି ଦୃଷ୍ଟିରୁ ଅଗ୍ନିଙ୍କୁ କୁହାଯାଉଥିଲା 'ଦ୍ରୁମଜାତ' ବୋଲି । ବେଦୋକ୍ତ 'ଅଶ୍ୱତ୍ଥ ସମ୍ଭାର' ଗଳ୍ପରେ ମଧ୍ୟ ଏହି ଭାବ ବିବକ୍ଷିତ । ଉକ୍ତ ଗଳ୍ପାନୁସାରେ ଅଗ୍ନି ଥରେ ନିଜକୁ ଗୁପ୍ତ କରି ରଖିଲେ । ଏଣୁ ଯଜ୍ଞାନୁଷ୍ଠାନ ଲାଗି ଋଷିମାନେ ବହୁ ଅସୁବିଧାରେ ପଡ଼ିଲେ । ପରିଶେଷରେ ବହୁ ଅନୁସଂଧାନ ଫଳରେ ଅଶ୍ୱତ୍ଥ ବୃକ୍ଷରେ ତାଙ୍କୁ ଅଶ୍ୱ ରୂପରେ ଠାବ କରାଗଲା । ତା'ପରେ ଋଷିମାନେ ତାଙ୍କୁ ସେଠାରୁ ଆବାହନ କରି ଆଣି ଯଜ୍ଞରେ ସଂସ୍ଥାପିତ କଲେ । ଅଗ୍ନି ଅଶ୍ୱ ରୂପରେ ଯେଉଁ ବୃକ୍ଷରେ ରହିଥିଲେ, ତାର ନାମ ହେଲା 'ଅଶ୍ୱସ୍ଥ' ବା 'ଅଶ୍ୱତ୍ଥ' । ଏଠାରେ ପ୍ରଶ୍ନ ହୋଇପାରେ, ଦୁଇଟି ଅଶ୍ୱର ଚିତ୍ର କାହିଁକି ମୋହରଟିରେ ଅଙ୍କିତ ହୋଇଅଛି ? ଏହାର ସମୁଚିତ ଉତ୍ତର ଆମେ ପାଇବା ଋଗ୍‌ବେଦର ଗୋଟିଏ ମନ୍ତ୍ରରେ ଯହିଁରେ ଲେଖାଯାଇଛି :

'ଦ୍ୱେ ବିରୂପେ ଚରତଃ ସ୍ୱର୍ଥେ' । (୧୦)

ଅର୍ଥାତ୍ 'ତୁମେ ଦୁହେଁ (ସୂର୍ଯ୍ୟ ଓ ଅଗ୍ନି) ବିଶିଷ୍ଟ ଦୁଇଟି ରୂପ ଧରି ଜଗତର କଲ୍ୟାଣ ଲାଗି ଚଳପ୍ରଚଳ ହେଉଛ' । ଏହି ମନ୍ତ୍ରରେ ସୂର୍ଯ୍ୟ ଓ ଅଗ୍ନିଙ୍କୁ ଅଗ୍ନିଙ୍କର ଦୁଇଟି ରୂପ ବୋଲି କଳ୍ପନା କରାଯାଇଛି । ସେମାନେ ଦୁଇ ଭାଇ ଭଳି ଜଗତର କଲ୍ୟାଣ ଲାଗି ବ୍ୟସ୍ତ । ସୂର୍ଯ୍ୟ ଦିବାଭାଗରେ କଲ୍ୟାଣ ସାଧନ କରୁଛନ୍ତି ଏବଂ ଅଗ୍ନି ରାତ୍ରି ଭାଗରେ କଲ୍ୟାଣ ସାଧନ କରୁଛନ୍ତି । ଏହି ମନ୍ତ୍ରଟିର ପ୍ରଭାବ ଉପରୋକ୍ତ ମୋହର ଉପରେ ଅଙ୍କିତ ଚିତ୍ରରେ ବୋଧହୁଏ ପଡ଼ିଛି ।

ବର୍ତ୍ତମାନ ମହେଞ୍ଜୋଦାରୋଠାରେ ଗୋଟିଏ ମୃଣ୍ମୟ ମୋହର ଉପରେ ଅଙ୍କିତ ହୋଇଥିବା ବହୁଚର୍ଚ୍ଚିତ 'ପଶୁପତି' ମୂର୍ତ୍ତି ବିଷୟ ବିଚାରକୁ ନେବା । ଏହାର ଆବିଷ୍କର୍ତ୍ତା ସାର୍ ଜନ୍ ମାର୍ଶାଲ୍ ମୂର୍ତ୍ତିଟିର ଯୋଗମୁଦ୍ରା, ତ୍ରିମୁଖ, (୨ଟି ମୁଖ ଲୁକ୍କାୟିତ) ଏବଂ ପଶୁମାନଙ୍କ ଦ୍ୱାରା ପରିବେଷ୍ଟିତ ଭାବକୁ ଲକ୍ଷ୍ୟ କରି ଏହା ଯୋଗୀରାଜ ଶିବଙ୍କ ମୂର୍ତ୍ତି ବୋଲି କହିଛନ୍ତି । ତାଙ୍କ ମତରେ ଏ ହେଉଛନ୍ତି ପଶୁପତି । ସେହି ଦିନଠାରୁ ଗବେଷକମାନେ ଏହି ମୂର୍ତ୍ତିଟିକୁ ପଶୁପତି ଶିବ ବୋଲି କହି ଆସୁଛନ୍ତି । କିନ୍ତୁ ମୂର୍ତ୍ତିଟିକୁ ଗଭୀରତର ଭାବରେ ଅନୁଧ୍ୟାନ କଲେ ଏବଂ ବେଦ ଓ 'ଜେନ୍ଦ୍‌ଆବେସ୍ତା'ରେ ବର୍ଣ୍ଣିତ ଅଗ୍ନିଙ୍କର ରୂପ ସହିତ ତୁଳନା କଲେ, ଆମେ ଜାଣିପାରିବା ଯେ ଏ ମୂର୍ତ୍ତି ଆଉ କାହାର ନୁହେଁ; ଏହା ହେଉଛି ସ୍ୱୟଂ ଅଗ୍ନିଦେବଙ୍କର । ଶତପଥ ବ୍ରାହ୍ମଣ ଅନୁସାରେ ଅଗ୍ନିଙ୍କର ଗୋଟିଏ ନାମ ମଧ୍ୟ ହେଉଛି ପଶୁପତି । ଏଠାରେ ପଶୁ ଅର୍ଥ ପ୍ରଜା ବା ସକଳ ଜୀବଜଗତ୍ ବୋଲି ଗ୍ରହଣ କରିବାକୁ ହେବ; ମାର୍ଶାଲ୍ କହିଲା ଭଳି ସାଧାରଣ ଭାବରେ ମାନବେତର ପଶୁ ବୋଲି ବୁଝିବାକୁ ହେବନାହିଁ । ଏହି ମୂର୍ତ୍ତିଟିକୁ ପରିବେଷ୍ଟନ କରି ରହିଥିବା କେତେକ ପଶୁଙ୍କ ଚିତ୍ର ଦେଖି ତାଙ୍କର ଏ ଧାରଣା ହୋଇଥିବ ବୋଲି ମନେ ହୁଏ । ଏହି ପଶୁଗୁଡ଼ିକ ହେଲେ ଦକ୍ଷିଣ ପାର୍ଶ୍ୱରେ ଥିବା ଗୋଟିଏ ହାତୀ ଓ ଗୋଟିଏ ବାଘ, ବାମ ପାର୍ଶ୍ୱରେ ଥିବା ଗୋଟିଏ ଗଣ୍ଡାର ଓ ଗୋଟିଏ ମହିଷ ଏବଂ ଆସନ ତଳେ ଶାୟିତ ଦୁଇଟି ମୃଗ । ଏହି ପଶୁମାନଙ୍କର ଚିତ୍ର ଏଠାରେ ସାଙ୍କେତିକ ଭାବରେ ଅଙ୍କିତ ହୋଇଥିବାର ମନେହୁଏ । ଏତଦ୍ଦ୍ୱାରା ସମଗ୍ର ଜୀବଜଗତ୍ ସୂଚିତ । ଋଗ୍‌ବେଦରେ ଅଗ୍ନିଦେବଙ୍କୁ ସମର୍ପିତ ନିମ୍ନଲିଖିତ ମନ୍ତ୍ରଟି ଏଠାରେ ପ୍ରଣିଧାନଯୋଗ୍ୟ ।

"ବିଶାଂ ଗୋପା ଅସ୍ୟ ଚରନ୍ତି ଜନ୍ତବୋ
ଦ୍ୱିପଚ୍ଚ ଯଦୁତ ଚତୁଷ୍ପଦକ୍ତୁଭିଃ ।"

ଅର୍ଥାତ୍ 'ଏ ହେଉଛନ୍ତି ମନୁଷ୍ୟମାନଙ୍କର ରକ୍ଷାକର୍ତ୍ତା । ସ୍ୱାଙ୍କର ଜ୍ୟୋତିଃର ଝଲକରେ ଦ୍ୱିପାଦ (ମନୁଷ୍ୟ ଓ ପକ୍ଷୀ ଉଭୟ) ଓ ଚତୁଷ୍ପାଦ ବିଶିଷ୍ଟ ଜୀବମାନେ ଚଳ-

ପ୍ରଚଳ କରିଥା'ନ୍ତି ।' (୧୧) ଜରାଥୃଷ୍ଟ୍ର ଯେଉଁ ଏକ ଦେବତା 'ଅହୁର ମଜଦା'ଙ୍କର (ଅସୁର ମଘବା) ଆରାଧନା ଉପରେ ଗୁରୁତ୍ୱ ଆରୋପ କରିଥିଲେ, ସେ ମଧ୍ୟ ହେଉଛନ୍ତି ଏହି ଅଗ୍ନି ଦେବତା । ତାଙ୍କ ପ୍ରତି ଅର୍ଘ୍ୟ ଦିଆଯାଇ ଜେନ୍ଦ୍ ଆବେସ୍ତାରେ କୁହାଯାଇଛି, ''ବିସ୍ପନାଂ ଦତରେମ୍'' ବା 'ସକଳ ବସ୍ତୁର ସ୍ରଷ୍ଟା', 'ଦାତ ଅଙ୍ଘେଉସ୍' ବା 'ଜୀବନର ଦାତା' ଇତ୍ୟାଦି । (୧୨)

ବହୁ ଦେବତା ମଧ୍ୟରେ ଜରାଥୃଷ୍ଟ୍ର ଏକ ଦେବତାର ପ୍ରାଧାନ ପାଇଥିଲେ ଏବଂ ଅଗ୍ନି-ପୂଜା ମାଧ୍ୟମରେ ତାଙ୍କୁହିଁ ପୂଜା କରିବାପାଇଁ ସେ ପରାମର୍ଶ ଦେଇଥିଲେ । ଏ ହେଉଛନ୍ତି ସେହି ବୈଦିକ ଅଗ୍ନି ଯେ ହେଉଛନ୍ତି ସବ ଦେବତାମାନଙ୍କର ସମଷ୍ଟି । ଅନ୍ୟାର୍ଥରେ ଅଗ୍ନି ହେଲେ ଏକମାତ୍ର ଦେବତା ଏବଂ ଅନ୍ୟ ଦେବତାମାନେ ହେଲେ ତାଙ୍କ ବିଭୂତି ସଦୃଶ । (୧୩) ମହେଞ୍ଜୋଦାରସ୍ଥ ମୂର୍ତ୍ତିଙ୍କର ତ୍ରିଶୃଙ୍ଗଯୁକ୍ତ ଶିରୋଭୂଷଣ ବେଦବର୍ଣ୍ଣିତ ଅଗ୍ନିଙ୍କର ପୂର୍ବରୁ କୁହାଯାଇଥିବା 'ତ୍ରିପଦସ୍ଥାୟୀଭାବ' ବା 'ତିନି ସ୍ଥାନରେ ଅବସ୍ଥାନ ଭାବ'ର ସଙ୍କେତ ହେଉଛି ବୋଲି ମନେହୁଏ । ମୂର୍ତ୍ତିଟିର ତ୍ରିମୁଖ (୨ଟି ମୁଖ ସାମାନ୍ୟମାତ୍ର ଦୃଷ୍ଟ) ବିଷୟରେ ସୂଚନା ଦେବାକୁ ଯାଇ ମାର୍ଶାଲ ଆଦି ଅନେକ ଗବେଷକ ମତ ଦିଅନ୍ତିଯେ ବମ୍ବେ ନିକଟସ୍ଥ ଏଲିଫାଣ୍ଟା ଠାରେ ଯେଉଁ ତ୍ରିମୁଖ ଶିବଙ୍କର ମୂର୍ତ୍ତି ଅଙ୍କିତ ହୋଇଛି, ତାହା ସିନ୍ଧୁ-ସଭ୍ୟତା କାଳରୁ ଗଢ଼ି ଆସୁଥିବା ଯୋଗିରାଜ ପଶୁପତିଙ୍କ ମୂର୍ତ୍ତି ନିର୍ମାଣ ଶୈଳୀର ପରଂପରା ସହିତ ସମ୍ବନ୍ଧିତ । ଏହା କିନ୍ତୁ ବିଶ୍ୱାସଯୋଗ୍ୟ ହୁଏ ନାହିଁ । ଅଗ୍ନିଙ୍କର ମଧ୍ୟ ତ୍ରିମୁଖ ଥିବା କଥା ବେଦରେ ବର୍ଣ୍ଣିତ ଅଛି । ବୈଦିକ ପ୍ରଜାପତି ବା ଅଗ୍ନିଙ୍କର ତିନିଗୋଟି 'ମୁଖବତୀ ତନୁ' ବିଦ୍ୟମାନ । ତାହା ହେଲା 'ଗାର୍ହପତ୍ୟ', 'ଦକ୍ଷିଣାଗ୍ନି' ଓ 'ଆହବନୀୟ' । ଯଜ୍ଞରେ ଏହି ତ୍ରିମୁଖ ବିଶିଷ୍ଟ ଅଗ୍ନିଙ୍କର ଆରାଧନା କରାଯାଇଥାଏ (୧୪) । ଆଉ ମଧ୍ୟ ଋଗ୍‌ବେଦ ଏବଂ ଅଥର୍ବବେଦ ଉଭୟରେ ଅଗ୍ନିଙ୍କୁ 'ତ୍ରୟଃ କେଶିନଃ' ବା 'ସୁକେଶଯୁକ୍ତ ତିନି ମସ୍ତକଯୁକ୍ତ' ଭାବରେ କଳ୍ପନା କଳ୍ପନା କରାଯାଇଅଛି । ଯାସ୍କଙ୍କ ମତରେ ଅଗ୍ନି, ବାୟୁ ଓ ସୂର୍ଯ୍ୟ ହେଉଛନ୍ତି ଅଗ୍ନିଙ୍କର ଏହି ତିନି ପୁଷ୍କଳ କେଶଯୁକ୍ତ ମସ୍ତକ (୧୪-କ) । ଅତଏବ ଶଂସିତ ମୂର୍ତ୍ତିଟିରେ ଅଗ୍ନିଙ୍କର ଏହି ତିନି ଗୋଟି 'ମୁଖବତୀ ତନୁ' ଥିବା ଭାବଟି ପ୍ରକଟିତ ହୋଇଥିବା ସମ୍ଭବ । ହୋଇଛନ୍ତି ଋଗ୍‌ବେଦରେ ଅନ୍ୟତ୍ର ମଧ୍ୟ ଅଗ୍ନିଙ୍କର ତିନୋଟି ମସ୍ତକ ଅଛିବୋଲି କୁହାଯାଇଅଛି (୧୫) ।

ଆବେସ୍ତାରେ ଅଗ୍ନିଙ୍କୁ ଅହୁର ମଜଦା ନାମରେ ବା ''ସକଳ ପ୍ରାଣୀଙ୍କର ରକ୍ଷକ'' ବୋଲି ଆବାହନ କରାଯାଇଛି । (୧୬) ଋଗ୍‌ବେଦରେ (୧ । ୧୪।୪) ମଧ୍ୟ ତାଙ୍କୁ କେମିତି ;ସକଳ ପ୍ରାଣୀଙ୍କର ରକ୍ଷକ' ଭାବରେ ଆବାହନ କରାଯାଇଅଛି, ତାହାର ସୂଚନା ପୂର୍ବରୁ 'ବିଶ୍ୱାଂ ଗୋପା ଇତ୍ୟାଦି' ମନ୍ତ୍ରର ଉଦାହରଣ ଦେଇ ଦର୍ଶା ଯାଇଅଛି । ଧ୍ୟାନ ମୁଦ୍ରାରେ

ବସିଥିବା ଏହି ମୂର୍ତ୍ତିଙ୍କ ହସ୍ତଦ୍ୱୟର ଅବସ୍ଥିତି ଭଙ୍ଗୀ ଋଗ୍‌ବେଦର ଅପର ଏକ ମନ୍ତ୍ର ସହିତ ପ୍ରତ୍ୟକ୍ଷ ଭାବରେ ସଂପର୍କିତ ଥିବାର ମନେହୁଏ । ଉଂପିତ ମନ୍ତ୍ରଟି ହେଲା :

"ସଃ ସବ୍ୟେନ ଯମତି ବ୍ରାଧତଶ୍ଚିତ୍ ସଃ ଦକ୍ଷିଣେ ସଂଗୃଭୀତା କୃତାନି" । (୧୭) .

ଅର୍ଥାତ୍ ସେ (ଅଗ୍ନି) ବାମ ହାତରେ ହିଂସାରୁ ରକ୍ଷା କରନ୍ତି ଏବଂ ଡାହାଣ ହାତରେ ତାଙ୍କ ପାଇଁ ଅର୍ପିତ ହେଉଥିବା ଅର୍ଘ୍ୟ ଗ୍ରହଣ କରନ୍ତି । ମୂର୍ତ୍ତିଟିର ଡାହାଣ ହାତକୁ ପରୀକ୍ଷା କଲେ ଜଣାପଡ଼ିବ ଯେ ଏହା ସାମାନ୍ୟ ଟିକିଏ ଉତ୍ତୋଳିତ ହୋଇ ଗ୍ରହଣ ମୁଦ୍ରାରେ ରହିଅଛି । ଏହି ଗ୍ରହଣ ମୁଦ୍ରା ସମ୍ଭବତଃ ବୈଦିକ ପ୍ରଭାବର ଫଳଶ୍ରୁତି ।

ଏଥିରୁ ଜଣାପଡୁଛି ଯେ ବୈଦିକ ଓ ସିନ୍ଧୁ-ସଂସ୍କୃତିର ଅଗ୍ନି-ପୂଜାର ପରସ୍ପର ସହିତ ଯଥେଷ୍ଟ ସୌସାଦୃଶ୍ୟ ରହିଥିବା ସଙ୍ଗେ ସଙ୍ଗେ ଇରାନୀୟ ଅଗ୍ନି-ପୂଜା ସହିତ ମଧ୍ୟ ଅନେକାଂଶରେ ସୌସାଦୃଶ୍ୟ ରହିଅଛି । (୧୮) କିନ୍ତୁ ଗୋଟିଏ ବିଶିଷ୍ଟ ପାର୍ଥକ୍ୟ ହେଉଛି ଏହି ଯେ ଇରାନ୍‌ରେ ଏକ ଦେବତା ଅଗ୍ନିଙ୍କର ଆରାଧନା କରାଯାଉଥିବା ସ୍ଥଳେ ଭାରତରେ ଅଗ୍ନି ସକଳ ଦେବତାଙ୍କ ଲାଗି ହୋଇଥିଲେ 'ହବ୍ୟବହନକାରୀ' । ଅଗ୍ନିଙ୍କ ମାଧ୍ୟମରେ ହିଁ ଅନ୍ୟ ସବୁ ଦେବତାଙ୍କର ଆରାଧନା କରା ଯାଉଥିଲା । ସୂକ୍ଷ୍ମରେ ଏହାର ଅର୍ଥ ହେଉଛି, ବୈଦିକ ଆର୍ଯ୍ୟମାନେ ଏକ ପରମେଶ୍ୱର 'ଅଗ୍ନି'ଙ୍କ ଉପରେ ବିଶ୍ୱାସ କରୁଥିଲେ ଏବଂ ତାଙ୍କୁ ଅର୍ଘ୍ୟଦେଇ ତାଙ୍କର ବିଭିନ୍ନ ବିଭୂତିର ଅଭିପ୍ରକାଶକୁ ସ୍ୱତନ୍ତ୍ର ଦେବତା ଭାବରେ ପୂଜା କରୁଥିଲେ । ଅତଏବ ସେମାନେ ଏକେଶ୍ୱରବାଦୀ ନଥିଲେ ବୋଲି ଭାବିବା ଠିକ୍ ହେବ ନାହିଁ । ବେଦରେ ଏକେଶ୍ୱରବାଦର କେଉଁ କେଉଁ ପ୍ରମାଣମାନ ବିଦ୍ୟମାନ, ତାହା ଏଠାରେ ଆଲୋଚନା କରିବା ଅପ୍ରାସଙ୍ଗିକ ହେତୁ କରା ଯାଉନାହିଁ । ସେହି ଏକ ପରମେଶ୍ୱର ଅଗ୍ନିଙ୍କୁ କିପରି ଭାବରେ ଇନ୍ଦ୍ର, ମିତ୍ର, ବରୁଣ, ଦିବ୍ୟରଥ, ସୁପର୍ଣ୍ଣ, ଗରୁତ୍ମାନ୍, ଯମ, ମାତରିଶ୍ୱା ନାମରେ ସଦ୍‌ବିପ୍ରମାନେ (ସତ୍ୟାନ୍ୱେଷୀ ପଣ୍ଡିତମାନେ) ଆବାହନ କରୁଥିଲେ ତାହା ଋଗ୍‌ବେଦର ନିମ୍ନଲିଖିତ ଗୋଟିଏ ମାତ୍ର ମନ୍ତ୍ର ଅନୁଧ୍ୟାନ କଲେ ଜଣାପଡ଼ିବ :

ଇନ୍ଦ୍ରଂ ମିତ୍ରଂ ବରୁଣମଗ୍ନିମାହୁ
ରଥୋଦିବ୍ୟଃ ସଃ ସୁପର୍ଣ୍ଣୋ ଗରୁତ୍ମାନ୍,
ଏକଂ ସଦ୍‌ବିପ୍ରାଃ ବହୁଧା ବଦନ୍ତି,
ଅଗ୍ନିଂ ଯମଂ ମାତରିଶ୍ୱାନମାହୁ (୧୯)

ମହେଞ୍ଜୋଦାରୋରୁ ମିଳିଥିବା ଆଉ ଗୋଟିଏ ମୃଣ୍ମୟ ମୋହର (ସଂଖ୍ୟା ୪୩୦) କୃତ୍ରିମ ଅଗ୍ନି-ପୂଜା ସଂପର୍କରେ ମଧ୍ୟ ଯଥେଷ୍ଟ ଆଭାସ ଦେଇଥାଏ । ତଦୁପରି ଅଙ୍କିତ

ଚିତ୍ରରେ ଗୋଟିଏ ବୃତ୍ତାକୃତିର ଯଜ୍ଞକୁଣ୍ଡରୁ ଦୁଇ ଶାଖାବିଶିଷ୍ଟ ଅଶ୍ୱତ୍ଥ ଗଛଟିଏ ବାହାରିଛି । ଏହି ଶାଖାଦ୍ୱୟ ମଧ୍ୟରେ ଜଣେ ଶୃଙ୍ଗୀ ଦେବତା ବିଦ୍ୟମାନ । ଜଣେ ଭକ୍ତ ତାଙ୍କୁ ଭୂମିଷ୍ଠ ପ୍ରଣାମ କରୁଥିବା । ନିକଟରେ ଆପାଦଲମ୍ବୀ ପରିଚ୍ଛଦ ପିନ୍ଧିଥିବା ସାତ ଜଣ ଲୋକ ଶ୍ରେଣୀବଦ୍ଧ ଭାବରେ ଚାଲିଛନ୍ତି । ଆଉ ମଧ୍ୟ ତଦୁପରି ଏକ ବିରାଟକାୟ ଛାଗର ଚିତ୍ର ଅଙ୍କିତ । ଏହି ଚିତ୍ର ଗୁଡ଼ିକୁ ଅନୁଧ୍ୟାନ କଲେ ନିମ୍ନଲିଖିତ ସିଦ୍ଧାନ୍ତ ଅଣାଯାଇ ପାରିବ ।

କ-ଲୋକ ସାତଜଣ ହେଉଛନ୍ତି ସାତ ଜଣ ହୋତା, ଯେଉଁମାନେ କି ଅଗ୍ନିଙ୍କ 'ସପ୍ତଧା' ବା ସାତ ପ୍ରକାର ପୂଜା କରନ୍ତି;

ଖ-ଅଶ୍ୱତ୍ଥ ବୃକ୍ଷ ବାହାରିବାର ସ୍ଥାନ ହେଉଛି ଯଜ୍ଞକୁଣ୍ଡ ।

ଗ-ଅଶ୍ୱତ୍ଥ ଶାଖା ମଧ୍ୟରେ ଦଣ୍ଡାୟମାନ ଶୃଙ୍ଗଧାରୀ ବ୍ୟକ୍ତି ହେଉଛନ୍ତି ସ୍ୱୟଂ ଅଗ୍ନି-ଦେବତା । ପୂର୍ବରୁ ଆଲୋଚିତ ହୋଇଥିବା ତାଙ୍କର 'ଦ୍ରୁମଜାତ ଭାବ' ନେଇ ସେ ଏଠାରେ ବିଦ୍ୟମାନ । 'ଶୃଙ୍ଗ' ଦେବତ୍ୱର ଚିହ୍ନ ବୋଲି ହୁଇଲର୍ ସମେତ ବହୁ ଗବେଷକ ମତ ଦେଇଛନ୍ତି ।

ଘ-ଭୂମିଷ୍ଠ ପ୍ରଣାମ କରିଥିବା ବ୍ୟକ୍ତି ଜଣକ ହେଉଛନ୍ତି ଯଜମାନ, ଯାହାଙ୍କ ଦ୍ୱାରା ଅଗ୍ନି-ପୂଜା ଆୟୋଜିତ ହୋଇଛି ।

ଙ-ଛାଗ ମୂର୍ତ୍ତିଟି ହେଉଛି ଯଜ୍ଞ-ପଶୁ । ବେଦରେ ଅନେକତ୍ର ଅଗ୍ନି 'ଅଜ-ଭାଗ' ବା ତାଙ୍କ ଲାଗି ସମର୍ପିତ ଛାଗ-ମାଂସ ଗ୍ରହଣ କରୁଥିବା କଥାର ଉଲ୍ଲେଖ ଏହି ସିଦ୍ଧାନ୍ତକୁ ଦୃଢ଼ୀଭୂତ କରୁଛି ।

## ଚିତ୍ରଲିପିଭିତ୍ତିକ ପ୍ରମାଣ :

ସିନ୍ଧୁ-ସଂସ୍କୃତିର ମୋହର ମାନଙ୍କରେ ଯେଉଁ ଲିପି ବ୍ୟବହୃତ ହୋଇଛି ତାହାକୁ ଗବେଷକମାନେ ଚିତ୍ରଲିପି ବୋଲି କହୁଛନ୍ତି । ଯଦିଓ ମୋହର ଗୁଡ଼ିକ ମୁଖ୍ୟତଃ ବାଣିଜ୍ୟିକ କାରବାର ସହିତ ସଂପୃକ୍ତ ଥିବ, ଏଗୁଡ଼ିକ ଉପରେ ଅଙ୍କିତ ବିଭିନ୍ନ ଚିତ୍ରମାନଙ୍କର ଯେ ଧର୍ମ ସହିତ ସଂପୃକ୍ତ ନଥିବ ଏକଥା କହି ହେବନାହିଁ; ବରଂ ଧର୍ମ ସହିତ ସଂପର୍କ ଥିବାର ସମ୍ଭାବନା ଅଧିକ । ଅତଏବ ଏହି ଲିପି ଗୁଡ଼ିକର ପାଠୋଦ୍ଧାର ଏକାନ୍ତ ଆବଶ୍ୟକ । କିନ୍ତୁ ଦୁର୍ଭାଗ୍ୟବଶତଃ ଏପର୍ଯ୍ୟନ୍ତ ଏଗୁଡ଼ିକର ବିଶ୍ୱାସଯୋଗ୍ୟ ପାଠୋଦ୍ଧାର ହୋଇ ପାରିନାହିଁ । ଅବଶ୍ୟ ବି. ବି. ଲାଲ୍, ଏସ୍ ଆର୍. ରାଓ ଆଦି ଏ ସଂପର୍କରେ ପ୍ରାଥମିକ ଉଦ୍ୟମ କରିଛନ୍ତି । ସେମାନେ ଖଣ୍ଡିତ ଆକାରରେ ସ୍ୱଳ୍ପ କେତୋଟିର ପାଠୋଦ୍ଧାର କରିବାର ପ୍ରୟାସ କରିଛନ୍ତି ମାତ୍ର । କିନ୍ତୁ ପ୍ରାୟ ୪୦୦୧

ସଂଖ୍ୟକ ମୋହର ସିନ୍ଧୁ-ସଂସ୍କୃତି ସହିତ ସଂପୃକ୍ତ ବିଭିନ୍ନ ଅଞ୍ଚଳରୁ ମିଳୁଥିବା ଦୃଷ୍ଟିରୁ ସେମାନଙ୍କର ଏହି ପ୍ରାଥମିକ ଉଦ୍ୟମ ନଗଣ୍ୟ ବୋଲି ବୁଝିବାକୁ ହେବ ।

ଜେନ୍ଦ୍ ଆବେସ୍ତାରେ 'ଅତର୍' ଙ୍କୁ କୁହାଯାଇଅଛି 'ଅହୁର ମଜଦା' (ଅସୁର ମଘବା)ଙ୍କ ପୁତ୍ର ବୋଲି । ସେ ହେଉଛନ୍ତି 'ମାନବ ହୃଦୟରେ ନିହିତ ଥିବା ପ୍ରଜ୍ଞାର ପ୍ରଦୀପ୍ତ ଅଗ୍ନି (୨୦) ଋଗ୍‌ବେଦରେ ଅଗ୍ନିଙ୍କର ଗୋଟିଏ ନାମ ହେଉଛି 'ଅଥର୍ଯୁ' । ମୌଳିକ 'ଅଥର୍' ଶବ୍ଦରୁ ଏହା ନିଷ୍ପନ୍ନ । ଏହି ମୌଳିକ 'ଅଥର୍' ଶବ୍ଦରୁ ହିଁ ଏତ ବାହାରେ 'ଅଧ୍ୱର' ଶବ୍ଦ ଯାହାର ଅର୍ଥ ହେଲା ଯଜ୍ଞ । 'ଅଧ୍ୱର' ଶବ୍ଦ ସହିତ ସମ୍ପର୍କିତ ହେଲା 'ଅଧ୍ୱର୍ଯୁ' ଯାହାର ଅର୍ଥ ହେଉଛି ଯଜ୍ଞର ପୁରୋହିତ । ଏହି ଅଗ୍ନିଙ୍କର ଲେଲିହାନ ଶିଖାର ବିସ୍ତାରକୁ ହିଁ ଏତ ଲକ୍ଷ୍ୟ କରି 'ଆତନ୍' ଧାତୁର ସୃଷ୍ଟି ହୋଇଛି ଯାହାର ଅର୍ଥ ହେଉଛି ବିସ୍ତାର କରିବା ବା ପ୍ରକୃଷ୍ଟ ଭାବରେ ପ୍ରକାଶମାନ ହେବା । ଏହି ଅର୍ଥରେ ସଂସ୍କୃତ ଭାଷାରେ 'ଅତ୍ମନ୍' ଶବ୍ଦର ସୃଷ୍ଟି । ଏସ ଆର. ରାଓ ଏହି ମତର ପ୍ରବକ୍ତା । ଏକଥା ଆହୁରି ସ୍ପଷ୍ଟ କରିବାକୁ ଯାଇ ସେ କହିଛନ୍ତି : The idea of illumination, shining or brilliance was prominent in the mind of the Harappans, Vedic Aryans and Iranians." । (୨୧)

ସେ ମଧ୍ୟ 'ଓସ' (ଆବେସ୍ତାରେ 'ଓହି') ଓ 'ଭା' ଆଦି ଶବ୍ଦ ହରପ୍ପୀୟ ଚିହ୍ନଲିପିରେ ପ୍ରକାଶ କରିବା ଅର୍ଥରେ ବ୍ୟବହୃତ ହୋଇଥିବା କଥାର ଉଲ୍ଲେଖ କରିଛନ୍ତି । ସେ ହରପ୍ପୀୟ ଚିହ୍ନଲିପିରୁ ଆଉ ଗୋଟିଏ ଶବ୍ଦର ପାଠୋଦ୍ଧାର କରିଛନ୍ତି, ଯାହାର କ ବୈଦିକ ଓ ଆବେସ୍ତୀୟ ସାହିତ୍ୟ ସହିତ ନିବିଡ଼ ସଂପର୍କ ଥିବାର ମନେହୁଏ । ଏହି ଶବ୍ଦଟି ହେଲା 'ଭଗ' । ଏହା 'ପରମ ଦାତା' ଅର୍ଥରେ ଉଭୟ ସାହିତ୍ୟରେ ପ୍ରଯୁକ୍ତ । ଋଗ୍‌ବେଦର ପ୍ରଥମ ମନ୍ତ୍ରରେ ଅଗ୍ନିଙ୍କୁ କୁହାଯାଇଛି 'ରତ୍ନଧାତମ' ବୋଲି । ସେ ତାଙ୍କ ଉପାସକମାନଙ୍କୁ ସକଳ ଧନରତ୍ନ ଦାନ କରିବାରେ ହେଉଛନ୍ତି ଶ୍ରେଷ୍ଠଦାତା । ଆବେସ୍ତାରେ ମଧ୍ୟ ସେହିପରି 'ଅହୁର ମଜଦା'ଙ୍କୁ ଆବାହନ କରାଯାଇଛି ଉପାସକମାନଙ୍କର ଶ୍ରେଷ୍ଠଦାତା ଭାବରେ (୨୨) । ଅତଏବ, ହରପ୍ପୀୟ ଚିହ୍ନଲିପିରେ ଅଗ୍ନିପୂଜା ସଂପର୍କୀୟ ବୈଦିକ ଓ ଆବେସ୍ତୀୟ ଚିନ୍ତାଧାରା ପ୍ରତିଫଳିତ ହୋଇଥିବାର ଏହା ଆଉ ଏକ ପ୍ରମାଣ ।

ଏସ. ଆର. ରାଓ ମଧ୍ୟ ସୈନ୍ଧବ ମୋହର ମାନଙ୍କର ଚିହ୍ନଲିପିର ପାଠୋଦ୍ଧାର କରି କେତେ ସ୍ଥଳରେ 'ତ୍ରାତୃ', 'ତର୍' 'ପା' ଆଦି ଶବ୍ଦମାନ ବ୍ୟବହୃତ ହୋଇଥିବା କଥା ଦର୍ଶାଇଛନ୍ତି । ଋଗ୍‌ବେଦରେ (ଋ ୧-୯-୪୪-୫) ଅଗ୍ନିଙ୍କୁ 'ତ୍ରାତା' ହିସାବରେ ଚିତ୍ରଣ କରାଯାଇଅଛି । ସେ ହେଉଛନ୍ତି ଉପାସକ ମାନଙ୍କର ରକ୍ଷାକର୍ତ୍ତା ବା ପାଳନକର୍ତ୍ତା ।

ସେ ଏକମାତ୍ର ପାଳନକର୍ତ୍ତା ବୋଲି ତାଙ୍କୁ କୁହାଯାଇଥାଏ 'ଏକପାତ୍' । ସୈନ୍ଧବ ମୋହରରେ ଡ଼ଃ ଗୁର୍ଦ୍ଦ ଏହି 'ଏକପାତ୍' ଶବ୍ଦର ପ୍ରୟୋଗ ହୋଇଥିବା କଥା ମଧ୍ୟ ଆବିଷ୍କାର କରିଛନ୍ତି । ପୂର୍ବରୁ ଦୁଇ ଅଶ୍ୱତ୍ଥ ଶାଖା ମଧ୍ୟରେ ଯେଉଁ ଅଗ୍ନିଦେବ ଦଣ୍ଡାୟମାନ ଥିବାରୁ ଏବଂ ସପ୍ତ ବ୍ରାହ୍ମଣ ଶ୍ରେଣୀବଦ୍ଧ ଭାବରେ ଚାଲୁଥିବାର ଚିତ୍ର ଗୋଟିଏ ମୃଣ୍ମୟ ମୋହର ଉପରେ ଅଙ୍କିତ ହୋଇଛି ବୋଲି କୁହାଯାଇଛି, ତାହାର ଚିତ୍ରଲିପିର ମଧ୍ୟ ପାଠୋଦ୍ଧାର କରି ଡ଼ଃ ଗୁର୍ଦ୍ଦ ଏଠାରେ 'ତିଦା-ଶାସ-ଆର୍' ଶବ୍ଦ ଲେଖାଯାଇଛି ବୋଲି କହିଛନ୍ତି । ଏହାର ଆକ୍ଷରିକ ଅର୍ଥହେଲା 'ତିନି ପ୍ରକାର ସ୍ଥିତ ଶାସନକର୍ତ୍ତା-ପ୍ରଶଂସନୀୟ' । ଏ ସମସ୍ତ ଅଗ୍ନିଙ୍କ ପ୍ରତି ପ୍ରଯୁଜ୍ୟ । କାରଣ ସେ ହେଉଛନ୍ତି 'ତିଧା' ବା ତିନି ପ୍ରକାର ସ୍ଥିତ (ଆକାଶ, ପୃଥିବୀ ଓ ସମୁଦ୍ରରେ) । ପୁଣି ସେ ହେଉଛନ୍ତି ସାରା ଜଗତର ଶାସନକର୍ତ୍ତା । ଆଉ ମଧ୍ୟ ସେ ହେଉଛନ୍ତି ଖୁବ୍ ପ୍ରଶଂସନୀୟ ବା ଯଶସ୍ୱୀ । (୨୩) ଋଗ୍‌ବେଦରେ ତେଣୁ ତାଙ୍କୁ ଗୋଟିଏ ସ୍ଥଳରେ 'ଚିତ୍ରଶ୍ରବ' ବା ବହୁପ୍ରକାର ଯଶର ଅଧିକାରୀ ବୋଲି କୁହାଯାଇଛି । ଏହାଙ୍କ ଯଶ ସାତ ନଦୀକୁ ଧାରଣ କରିଛି ବୋଲି ଋଗ୍‌ବେଦର ଆଉ ଗୋଟିଏ ସ୍ଥାନରେ ମଧ୍ୟ କୁହାଯାଇଛି । ସେଠାରେ କୁହାଯାଇଛି, "ଅସ୍ୟ ଶ୍ରବୋନଦ୍ୟଃସପ୍ତ ବିଭ୍ରତି !" । (୨୪) ଅତଏବ, ହରପ୍ପୀୟ ଅଗ୍ନିପୂଜା ଉପରେ ବୈଦିକ ପ୍ରଭାବ ପଡ଼ିଥିବାର ଏଗୁଡ଼ିକ ମଧ୍ୟ ଆଉ କେତେକ ପ୍ରମାଣ ।

ବୈଦିକ, ଓ ଆବେସ୍ତୀୟ ହରପ୍ପୀୟ ଚିନ୍ତାଧାରାରେ ଅଗ୍ନି-ପୂଜା ସଂପର୍କୀୟ ଏଭଳି ସାମଞ୍ଜସ୍ୟ ଥିବାର କାରଣ ତେବେ କ'ଣ ? ଆମ୍ଭ ମତରେ ଏହାର ଏକମାତ୍ର କାରଣ ହେଉଛି, ଏହି ତିନି କ୍ଷେତ୍ରରେ ଅଗ୍ନିପୂଜାର ମୂଳ-ଭିତ୍ତି ଗୋଟିଏ । ଗୋଟିଏ ବୃକ୍ଷର ଏମାନେ ହେଉଛନ୍ତି ତିନୋଟି ଫଳ । ଏ ସଂପର୍କରେ ବେଦ ଓ ଆବେସ୍ତାରେ ବ୍ୟବହୃତ ହୋଇଥିବା ବିଭିନ୍ନ ଶବ୍ଦମାନଙ୍କ ମଧ୍ୟରେ କିଭଳି ସୌସାଦୃଶ୍ୟ ରହିଅଛି । ସେ ବିଷୟରେ ଆଲୋଚନା କରିବା ଅପ୍ରାସଙ୍ଗିକ ହେବ ନାହିଁ । ଉଭୟ ଗ୍ରନ୍ଥରେ ବ୍ୟବହୃତ ହୋଇଥିବା ନିମ୍ନଲିଖିତ ଶବ୍ଦମାନ ପରସ୍ପର ସହିତ ତୁଳନୀୟ (୨୫) ।

| ବେଦ | ଆବେସ୍ତା |
|---|---|
| ଅସୁର | ଅହୁର |
| ମଜଦା | ମଘବା |
| ସପ୍ତ | ହପ୍ତ |
| ସପ୍ତସିନ୍ଧବଃ | ହପ୍ତହିନ୍ଦବଃ |
| ହୃଦୟ | ଜର୍ଦୟ |

| | |
|---|---|
| ବାହୁ | ବାଜୁ |
| ମିତ୍ର | ମିଥ୍ର |
| ସୋମ | ହୋମ |
| ହିମ | ଜିମ |
| ଅଶ୍ୱ | ଅସ୍ପ |
| ଶ୍ୱାନ | ସ୍ପାନ୍ |
| ସର୍ବତାତ୍ (ସର୍ବୋଭତ୍ତାବରେ) | ହର୍ବତାତ୍ |
| ଅମୃତତ୍ୱ | ଅମରେତତାତ୍ |
| ଯମ | ୟିମ |
| ବିବସ୍ୱତ୍ (ଯମଙ୍କ ପିତା) | ବିବଂଘ୍ୱନ୍ତ (ୟିମଙ୍କ ପିତା) |
| ଦିବ୍ୟ | ଦାଏବ |

ଡ଼ଃ ରାଓ ମଧ୍ୟ କେତେକ ମୁଣ୍ଡସ୍ଥ ମୋହରର ପାଠୋଦ୍ଧାର କରି ସେଥିରେ ୧, ୨, ୩, ୪ ଆଦି ସଂଖ୍ୟାମାନ ଲିପିବଦ୍ଧ ହୋଇଥିବାର କହିଛନ୍ତି । ଏହି ସଂଖ୍ୟା ପଛରେ 'ହ' ଅକ୍ଷର ଯୁକ୍ତ ହୋଇଅଛି । ବିଭିନ୍ନ ସଂଖ୍ୟାମାନ କିପରି ଭାବରେ ଲେଖା ଯାଇଅଛି ତାହା ନିମ୍ନରେ ସୂଚିତ ହେଲା :

୧-ଏକହ ।
୨-ଦ୍ୱିହ ।
୩-ତ୍ରିହ ।
୫-ପନ୍ତହ ।
୭-ହପ୍ତହ ।
୮-ଅଷ୍ଟହ ।
୧୨-ଦ୍ୱାଦଶହ ।

'ହ' ବର୍ଣ୍ଣଟି ସଂସ୍କୃତରେ 'ସ୍ୟ' ବୋଲି ଗ୍ରହଣ କଲେ ଏହା ଷଷ୍ଠୀ ବିଭକ୍ତିର ଚିହ୍ନ ବୋଲି ଧରିବାକୁ ହେବ । ଏଣୁ 'ଏକହ', 'ପନ୍ତହ', 'ହପ୍ତହ'ର ଅର୍ଥ ଯଥାକ୍ରମେ ହେବ 'ଏକର' (ଏକସ୍ୟ), ପାଞ୍ଚର (ପଞ୍ଚସ୍ୟ) ଓ 'ସାତର' (ସପ୍ତସ୍ୟ) । କେଉଁ ଯଜ୍ଞ କେତେଦିନ ଧରି ଚାଲିବା କଥା ତାହା ସୂଚାଇ ଦେବାକୁ ଯାଇ ବୋଧହୁଏ ଏଭଳି କଥା ଲେଖାଯାଇଛି । ବାସ୍ତବିକ ବୈଦିକ ଯଜ୍ଞରେ ମଧ୍ୟ ଦିନ ସହିତ ସଂପର୍କିତ ଥାଇ ଏହିଭଳି ବିଭିନ୍ନ ଯଜ୍ଞମାନଙ୍କର ନାମକରଣ କରାଯାଇଛି, ଯଥା, 'ଏକାହ', 'ପଞ୍ଚାହ', 'ସପ୍ତାହ' ଇତ୍ୟାଦି । ଏଠାରେ ଅବଶ୍ୟ 'ଅହ'କୁ ଦିନ ଅର୍ଥରେ ଗ୍ରହଣ

କରିବାକୁ ହେବ । (୨୭) ହରପ୍ପାରୁ ଅଗ୍ନିପୂଜାରେ ବୈଦିକ ପ୍ରଭାବ ପଡ଼ିଥିବାର ଏଗୁଡ଼ିକ ମଧ୍ୟ ହେଲେ ଆଉ କେତେକ ଦୃଷ୍ଟାନ୍ତ ।

ଉପରୋକ୍ତ ଆଲୋଚନାରୁ ଉପସଂହାର ସ୍ୱରୂପ ଏତିକି କୁହାଯାଇ ପାରେ ଯେ ସିନ୍ଧୁ-ସଂସ୍କୃତିର ଅଧିବାସୀମାନଙ୍କ ମଧ୍ୟରେ ଅଗ୍ନିପୂଜା ବହୁଳ ଭାବରେ ପ୍ରଚଳିତ ଥିଲା ଏବଂ ସେହି ପୂଜା ପଦ୍ଧତି ସହିତ ବୈଦିକ ଓ ଆବେସ୍ତୀୟ ଅଗ୍ନିପୂଜାର ଯଥେଷ୍ଟ ସୌସାଦୃଶ୍ୟ ବିଦ୍ୟମାନ । ଏଥିରୁ ଜଣାପଡୁଛି ଯତେ ଯେମିତି ଏହି ସଂସ୍କୃତି ଥିଲା ଗୋଟିଏ ସୂତ୍ରରେ ବନ୍ଧା । ଏହି ଦୃଷ୍ଟିକୋଣରୁ ବିଚାର କଲେ ସିନ୍ଧୁ-ସଂସ୍କୃତି ସମ୍ପର୍କରେ ମୁଖ୍ୟତଃ ପାଶ୍ଚାତ୍ୟ ପଣ୍ଡିତମାନେ ଯାହା ଯାହା କହିଆସିଛନ୍ତି, ସେ ବିଷୟରେ ଆମକୁ ନିଷ୍ପକ୍ଷ ଭାବରେ ପୁନର୍ବିଚାର କରିବାକୁ ହେବ ।

## ଗ୍ରନ୍ଥସୂଚୀ

୧—S. R. Rao : Key Note Address at a seminar organised by the Sanskrit Department, Bombay University on "Sacrifice in India : Concept and Evolution." from the 3rd March, 1986 to the 5th March, 1986.

୧-କ-ଋଗ୍‌ବେଦ; ୧।୧।୧।୨।

୨—S.R. Rao. op. cit.

୩—ଏସ୍. ଆର. ରାଓଙ୍କ ନେତୃତ୍ୱରେ ଦ୍ୱାରକାସ୍ଥ ସମୁଦ୍ର ତଳୁ ଏକ ପ୍ରାଚୀନ ନଗରୀର ଧ୍ୱଂସାବଶେଷ ମିଳୁଛି, ଯାହାକୁ ଖ୍ରୀ: ପୂ. ୩୦୦୦ ଶତାବ୍ଦୀରେ ସ୍ଥାନିତ କରାଯାଇ ପାରିବ । ଏଠାରେ ମିଳୁଥିବା ମୃଣ୍ମୟ ମୋହର ମାନଙ୍କର ସୈନ୍ଧବ ଉପତ୍ୟକାସ୍ଥ ମୋହର ମାନଙ୍କର ସୌସାଦୃଶ୍ୟ ଅଛି । ଉଭୟ ମୋହରରେ ଏକ ପ୍ରକାର ଚିହ୍ନ ଓ ଚିହ୍ନଲିପି ବିଦ୍ୟମାନ । ଗବେଷକମାନଙ୍କର ମତରେ ଦ୍ୱାରକାର ସେତେବେଳର ସମୁଦ୍ରପତ୍ତନ ବର୍ତ୍ତମାନର ସମୁଦ୍ରପତ୍ତନ ଠାରୁ ୯ ମିଟର ତଳେ ଅବସ୍ଥିତ ଥିଲା । ମହାଭାରତରେ ସମୁଦ୍ର ଜଳପ୍ଳାବନରେ ଦ୍ୱାରକା ଜଳମଗ୍ନ ହୋଇଥିବାର ଯେଉଁ ବର୍ଣ୍ଣନା ଦିଆ ଯାଇଅଛି, ତାହାର ଐତିହାସିକ ସତ୍ୟତା ଥିବାର ଆବିଷ୍କୃତ ଉପରୋକ୍ତ ତଥ୍ୟମାନଙ୍କରୁ ଜଣାପଡ଼େ ।

୪—B. B. Lal 'Some Reflections of the Structural Remains at Kalibanga' in Frontiers of Indus Civilizations (Ed)

B. B. LaI, and S. P. Gupta, New Delhi (1984) pp-55-56

୫—ନୀଳକଣ୍ଠ ରଥ : ଚରିତ ଚିନ୍ତାମଣି : ଓଡ଼ିଶା ସାହିତ୍ୟ ଏକାଡ଼େମୀ, ପୃ. ୧୬୦-୧୬୧ ।

ଏଥିରେ ଅଗ୍ନିଙ୍କ ସପ୍ତଜିହ୍ୱାର ନିମ୍ନଲିଖିତ ଅନ୍ୟ ନାମମାନ ଥିବା କଥା ମଧ୍ୟ ଲେଖା ଅଛି ।

କ—କାଳୀ, କରାଳୀ, ମନୋଜବା, ସୁଲୋହିତା, ସୁଧୂମବର୍ଣ୍ଣା, ସ୍ଫୁଲିଙ୍ଗିନୀ ଓ ବିଶ୍ୱ-ନିରୂପିଣୀ ।

ଖ—ଆବହ, ପ୍ରବହ, ଉଦ୍‌ବହ, ସଂବହ, ବିବହ, ନିବହ ଓ ପରିବହ ।

ଗ—ଶ୍ୱେତ, ପୀତ, ରକ୍ତ, କୃଷ୍ଣ, ନୀଳ, ଧୂମ୍ର ଓ ପାଟଳ ।

୬—ତୈତ୍ତିରୀୟ ସଂହିତା ୧ । ୫ । ୩ ।

୭—ଋଗ୍‌ବେଦ : ୧ । ୧୪ । ୧୫ ।

୮—ଋଗ୍‌ବେଦ : ୧ । ୧୫ । ୨ ।

୯—ଋଗ୍‌ବେଦ : ୨ । ୩୪ । ୨ ଏବଂ ୧ । ୬୪ । ୩ ।

୧୦—ଋଗ୍‌ବେଦ : ୧ । ୧୫ । ୧ ।

୧୧—ଋଗ୍‌ବେଦ : ୧ । ୧୪ । ୪ ।

୧୨—ଜେନ୍ଦ ଆବେସ୍ତା : ୟସ୍‌ନା : ୪୪ । ୭ ଏବଂ ୟସ୍‌ନା : ୫୦ । ୧୧ ।

ସଂସ୍କୃତ ଉକ୍ତିର ଶୁଦ୍ଧପାଠ : "ବିଶ୍ୱନାଂ ଦତରେମ୍" ବା 'ସକଳ ବସ୍ତୁର ସ୍ରଷ୍ଟା', 'ଦାତ ଅଙ୍ଗେହେସ୍' ବା 'ଜୀବନର ଦାତା' ଇତ୍ୟାଦି ।

୧୩—ଅଥର୍ବ ବେଦରେ କୁହାଯାଇଛି, "ଅଗ୍ନିଃ ସର୍ବାଃ ଦେବତାଃ" । ଅର୍ଥାତ୍ ଅଗ୍ନି ହେଉଛନ୍ତି ସକଳ ଦେବତା ।

ଦ୍ରଷ୍ଟବ୍ୟ : ଅଥର୍ବବେଦ : ୨ । ୩ ।

୧୪—V. S. Agarwala : Vedic Lectures, Prithivi Prakashan (1981) : p. 91 ।

୧୪-କ-ଋଗ୍‌ବେଦ : ୨ । ୩ । ୨୨ ଏବଂ ଅଥର୍ବ ବେଦ ୯ । ୨୯ । ୬ ।

୧୫—ଋଗ୍‌ବେଦ : ୧ । ୧୪୬ । ୧୧ ଏବଂ A. A. Macdonnel : Vedic Mythology (1971 Reprint) p. 89.

୧୬—Zend Avesta : Yasna, 51/10/4. (Eng. translation) in D. F. A. Bode and Piloo Nanavatty : Songs of Zarathustra : The Gathas, (1952) p. 99,

୧୭—ଋଗବେଦ : ୧ । ୩ । ୮ ।

ଶଂସିତ ମନ୍ତ୍ରଟିର ଶୁଦ୍ଧପାଠ : "ସଃ ସବେ୍ୟନ ଯମଥ ବ୍ରାଧତଶ୍ଚିତ୍ସଃ ଦକ୍ଷିଣେ ସଗୃଭୀତା କୃତାନ୍" ।

୧୮— Ibid, Foreward by S. Radhakrishnan.

ଇରାନ୍ ଓ ଭାରତ ମଧ୍ୟରେ ଅଗ୍ନି-ପୂଜା ସଂପର୍କୀୟ ଧାର୍ମିକ ଚେତନା ଓ ବିଶ୍ୱାସ ଏପରି ସୁଦୃଢ ଥିଲା ଯେ ଇରାନୀୟ ଅଗ୍ନିପୂଜକମାନେ ଇସ୍‌ଲାମ୍‌ଧର୍ମର ଆବିର୍ଭାବରେ ବହୁ ପ୍ରକାର ପୀଡ଼ିତ ହେବାପରେ ଭାରତକୁ ଚାଲି ଆସିଥିଲେ ଏବଂ ସେଠାରେ ପାର୍ସି ସଂପ୍ରଦାୟ ଭାବରେ ଅନ୍ୟାନ୍ୟ ଭାରତୀୟମାନଙ୍କ ସହିତ ବନ୍ଧୁ ଭାବରେ ବସବାସ କରି ଏବଂ ସେମାନଙ୍କ ସ୍ୱୀୟ ଧର୍ମ-ବିଶ୍ୱାସ ରକ୍ଷା କରି ଏ ପର୍ଯ୍ୟନ୍ତ ବି ସୁଖଶାନ୍ତିରେ ରହିଛନ୍ତି । ଏଥିପ୍ରତି ଲକ୍ଷ୍ୟ କରି ଡ଼ଃ ରାଧାକ୍ରିଷ୍ଣନ୍ ଉପରୋକ୍ତ ଅଗ୍ରଲେଖରେ ନିମ୍ନଲିଖିତ ଯେଉଁ ମନ୍ତବ୍ୟ ଦେଇଛନ୍ତି ତାହା ପ୍ରଣିଧାନଯୋଗ୍ୟ :

"For us in India it is a matter of pride that the followers of this faith, which has much in common with the Vedic religion, have made India their home and have contributed effectively to her material and spiritual welfare."

୧୯—ଋଗ୍‌ବେଦ : ୨ । ୩ । ୨୨ । ୭ ।

୨୦—D. F. A. Bede and Piloo Nanavatty : Songs of Zarasthustra, The Gathas (1952), : p. 112.

୨୧—S.R. Rao. op. cit.

୨୨—D. F A. Bode and Piloo Nanavatty, op. cit. p. 72.

୨୩— Ibid. pp. 26-27.

୨୪—ଋଗ୍‌ବେଦ : ୧ । ୧୦୨ । ୨ ।

୨୫— S. R. Rao : op. cit.

୨୬— S. R Rao. op. cit.



# ଷଷ୍ଠ ପରିଚ୍ଛେଦ

# ସିନ୍ଧୁ-ସଂସ୍କୃତିରେ ସମାଜ

ଭାରତୀୟ ସଂସ୍କୃତିର ଇତିହାସରେ ସିନ୍ଧୁ-ସଂସ୍କୃତି ନିଶ୍ଚିତ ଭାବରେ ଏକ ପ୍ରମୁଖ ସ୍ଥାନ ଅଧିକାର କରିଅଛି । ଏହାର ଆଲୋଚନା ଯେପରି କୌତୁହଳମୟ ସେହିପରି ସମଧିକ ଜଟିଳ ପ୍ରଶ୍ନମାନଙ୍କରେ ଭରପୂର । ଏହାର ସମସ୍ତ ବିଷୟରେ ଯଦିଓ ପ୍ରତ୍ନତାତ୍ତ୍ୱିକ ଅବଶେଷମାନଙ୍କର ଅଙ୍ଗାର ପରୀକ୍ଷା (Carbon test) ଫଳରେ କିଛି ବିଶ୍ୱାସଜନକ ତଥ୍ୟ ମିଳିପାରୁଛି; ଏହାର ଖ୍ରୀ. ପୂ. 1750ରେ ହଠାତ୍ ବିଲୋପ, ଏହାର ବିସ୍ତୃତିର ପରିସୀମା, ଏହାର କେନ୍ଦ୍ରସ୍ଥଳ (Epicentre) ଏବଂ ଏହାର ସ୍ରଷ୍ଟା ସମ୍ପର୍କରେ ଏପର୍ଯ୍ୟନ୍ତ ନିଃସନ୍ଦେହ ଭାବରେ ଶେଷ ତଥ୍ୟ ମିଳିନାହିଁ । ତା' ଉପରେ ଗବେଷଣା ଏପର୍ଯ୍ୟନ୍ତ ଚାଲିଛି । ତେବେ ଯାହା ସବୁ ତଥ୍ୟ ମିଳିଛି, ସେଥିରୁ ଏହି ପ୍ରମାଣ ସୁସ୍ପଷ୍ଟ ଯେ ସିନ୍ଧୁ-ସଂସ୍କୃତିର ସ୍ରଷ୍ଟା ଥିଲେ ଏକ ସୁସଭ୍ୟ, ସୁସଂସ୍କୃତ ତଥା ଶାନ୍ତିଶୀଳ ମାନବ ଗୋଷ୍ଠୀ ଏବଂ ସେହି ସଂସ୍କୃତିରେ ସନାତନ ଆର୍ଯ୍ୟ-ଧର୍ମର ବୀଜ ନିହିତ ଥିଲା । ସିନ୍ଧୁ-ସଂସ୍କୃତିକୁ କେହି କେହି ଦ୍ରାବିଡ଼ମାନଙ୍କର ନଗର ସଭ୍ୟତାର ସଂସ୍କୃତି ବୋଲି ଅଭିହିତ କରିଥାନ୍ତି ଏବଂ ଏହାକୁ ଆର୍ଯ୍ୟେତର ବୋଲି ଆଖ୍ୟା ଦେଇ ଆର୍ଯ୍ୟ ଓ ଦ୍ରାବିଡ଼ମାନଙ୍କ ମଧ୍ୟରେ ସଂଗ୍ରାମ, ଆର୍ଯ୍ୟମାନଙ୍କ ଦ୍ୱାରା ଏ ନଗର ସଭ୍ୟତାର ଧ୍ୱଂସ ହେବା ବିଷୟ ଏବଂ ଦ୍ରାବିଡ଼ମାନେ ଆର୍ଯ୍ୟମାନଙ୍କ ଚାପରେ ଭାରତର ଦକ୍ଷିଣ ଦେଶକୁ ଆଗମନ ଇତ୍ୟାଦି ଯୁକ୍ତିମାନ ବାଢ଼ିଥାନ୍ତି । କିନ୍ତୁ ଏହା ଯେ ଭ୍ରମାତ୍ମକ ଏବଂ ଏହି ସିନ୍ଧୁ-ସଂସ୍କୃତି ଯେ ଆର୍ଯ୍ୟ ସଂସ୍କୃତିର ଏକ ଅଂଶବିଶେଷ ଏକଥା ନାନା ତଥ୍ୟ ସହିତ ଲେଖକ "ସିନ୍ଧୁ-ସଂସ୍କୃତି ଆର୍ଯ୍ୟ ନା ଦ୍ରାବିଡ ?" ଶୀର୍ଷକ ପୂର୍ବ ପରିଚ୍ଛେଦରେ ଦର୍ଶାଇଛନ୍ତି । (୧) ଏଣୁ ତାହାର ପୁନରୁକ୍ତି ଅନାବଶ୍ୟକ ।

ସିନ୍ଧୁ-ସଂସ୍କୃତିର ସମୟରେ ବ୍ୟାପ୍ତି ବିଷୟରେ ନାନା ମୁନିଙ୍କର ନାନା ମତ ଥିବାର ପରିଲକ୍ଷିତ ହୁଏ । ୧୯୬୮ ମସିହାରେ ଡ଼. ପି. ଅଗ୍ରୱାଲ୍ ବମ୍ବେସ୍ଥିତ Indian Institute of fundamental Researchର ପରୀକ୍ଷାଗାରରେ ଅଙ୍ଗାର ପରୀକ୍ଷା କରି ଏ ସଂସ୍କୃତି ଖ୍ରୀ. ପୂ. ୨୩୦୦ରୁ ଖ୍ରୀ. ପୂ. ୧୭୫୦ ମଧ୍ୟରେ ସୀମିତ ବୋଲି କହିଛନ୍ତି । ଏହାର ଶେଷ ସମୟ-ସୀମା ଖ୍ରୀ. ପୂ. ୧୭୫୦ ବୋଲି ସକଳ ପ୍ରତ୍ନତତ୍ତ୍ୱବିଦ୍ ମତ ଦେଉଥିବା ସ୍ଥଳେ ଆରମ୍ଭର ସମୟସୀମା ନିର୍ଦ୍ଧାରଣ କରିବାରେ ସେମାନଙ୍କ ମଧ୍ୟରେ

କେତେ ଶହ ବର୍ଷର ବ୍ୟବଧାନ ଥିବାର ଜଣାଯାଏ । ଏ ସମ୍ପର୍କରେ ଥିବା ବିଭିନ୍ନ ମତାମତକୁ ବିଗ୍ଚାର କଲେ, ଏ ସଂସ୍କୃତି ଯେ ଯଥାର୍ଥରେ ଖ୍ରୀ: ପୂ. ୨୫୦୦ରୁ ଖ୍ରୀ.ପୂ. ୧୭୫୦ ମଧ୍ୟରେ ସୀମାବଦ୍ଧ, ତାହା ସ୍ପଷ୍ଟ ଭାବରେ ଉପଲବ୍ଧ ହୁଏ ।

ଖ୍ରୀ.ପୂ. ୧୭୫୦ରେ ଏ ସଂସ୍କୃତିର ହଠାତ୍ ବିଲୋପ ବିଷୟରେ ପ୍ରତ୍ନତତ୍ତ୍ୱବିଦ୍ ଅଲ୍‌ଚିନ୍ ଦମ୍ପତି କହିଛନ୍ତି :

> Around 1750 B. C. the uniform culture of this great area broke up apparently with different results in Sind and the South and in the Punjab and the North. (୨)

ଅର୍ଥାତ୍ ପ୍ରାୟ ଖ୍ରୀ: ପୂ: ୧୭୫୦ ଆଡ଼କୁ ଏହି ବିରାଟ ଅଞ୍ଚଳର ଏକକ ସଂସ୍କୃତିଟି ଲୋପ ପାଇଗଲା । ଫଳରେ ସିନ୍ଧୁ ଓ ଦକ୍ଷିଣରେ ଏବଂ ପଞ୍ଜାବ ଓ ଉତ୍ତରରେ ଏହା'ର ଭିନ୍ନ ଭିନ୍ନ ଫଳ ଦେଖାଦେଲା । ଏତେ ବଡ ଉନ୍ନତ ସଭ୍ୟତା, ଏତେ ବଡ ଉନ୍ନତ ସଂସ୍କୃତି ଯେ ହଠାତ୍ କିପରି ଲୋପ ପାଇଗଲା ଏହା ନିଶ୍ଚିତ ଭାବରେ ଏକ କୌତୂହଳୋଦ୍ଦୀପକ ବିଷୟ । ଲାମ୍ବ୍ରିକ୍‌ଙ୍କ ମତରେ ସିନ୍ଧୁ ଓ ତା'ର ଉପନଦୀମାନ ହଠାତ୍ ସେମାନଙ୍କର ଗତିକୁ ବଦଳାଇ ଦେଲେ; ଫଳରେ ଧ୍ୱଂସାତ୍ମକ ଗତି-ପରିବର୍ତ୍ତନ ଏ ସଂସ୍କୃତିକୁ ଲୋପ କରିଦେଲା । ମାର୍ଶାଲ ଓ ମ୍ୟାକେ ମଧ୍ୟ ଏହିଭଳି ମତର ପୋଷକ । ସେମାନଙ୍କ ମତରେ ବାରମ୍ବାର ନଈବଢ଼ି ଫଳରେ ନଗରମାନ ଧ୍ୱଂସ ହୋଇଗଲା । ଫଳରେ ନଗର-ଅଧିବାସୀମାନେ ସେ ସ୍ଥାନ ଛାଡ଼ି ଚାଲିଗଲେ । ଚାଇଲ୍‌ଡ (୧୯୩୪) ଓ ହୁଇଲର (୧୯୪୭) କିନ୍ତୁ ଭିନ୍ନ ମତ ଦିଅନ୍ତି । ସେମାନଙ୍କ ମତରେ ଆର୍ଯ୍ୟମାନେ ଏ ନଗରଗୁଡ଼ିକୁ ଆକ୍ରମଣ କରି ଏ ନଗର ସଭ୍ୟତାକୁ ଧ୍ୱଂସ କରି ଦେଇଥିଲେ । ମହେଞ୍ଜୋଦାରୋର ରାସ୍ତାରେ କବର ଦିଆ ନ ଯାଇ ପଡି ରହିଥିବା କେତେକ ନର-କଙ୍କାଳକୁ ଦେଖି ସେମାନେ ଏ ପ୍ରକାର ଆର୍ଯ୍ୟ ଆକ୍ରମଣର କେତେକ ପ୍ରମାଣରୁ ଗୋଟିଏ ଆଣି ଉପସ୍ଥାପିତ କରିଥାନ୍ତି । (୩) ତା'ଛଡ଼ା ଋଗ୍‌ବେଦରେ ବର୍ଣ୍ଣିତ ଆର୍ଯ୍ୟମାନଙ୍କର 'ଦାସ', 'ଦସ୍ୟୁ' ଆଦି ମାନଙ୍କ ସହିତ ସଂଘର୍ଷକୁ ଏହି ସିନ୍ଧୁ-ସଂସ୍କୃତିର ସ୍ରଷ୍ଟାମାନଙ୍କ ସହିତ ହୋଇଥିବା ସଂଘର୍ଷ ବୋଲି କହିଥାନ୍ତି । ଏହାର ଭ୍ରମାତ୍ମକତା ବିଷୟରେ ଲେଖକ ତାଙ୍କର ପୂର୍ବ ଆଲୋଚନାରେ ସବିଶେଷ ଆଲୋକପାତ କରିଅଛନ୍ତି । ଏଣୁ ତାହାର ପୁନରାଲୋଚନା ଏଠାରେ ଅନାବଶ୍ୟକ । ଖାଲି କ'ଣ ଯୁଦ୍ଧ ଲାଗିଲେ ନର-କଙ୍କାଳ ରାସ୍ତାରେ ପଡ଼ିରହିବ ? ନଈବଢି ବା ଭୂମିକମ୍ପ ଆଦି ପ୍ରାକୃତିକ ବିପର୍ଯ୍ୟୟରେ କ'ଣ ଏହା ସମ୍ଭବ ହେବନାହିଁ ? ଯେତେ ଦୂର ସମ୍ଭବ, ନଈବଢି କିମ୍ବା ଭୂମିକମ୍ପ ଭଳି କୌଣସି ଏକ ପ୍ରାକୃତିକ ବିପର୍ଯ୍ୟୟ ଫଳରେ ଏ ସ୍ଥାନଟି ଜନ-ପରିତ୍ୟକ୍ତ ହୋଇ ଅଛି । ତାହା ନହୋଇଥିଲେ ହଠାତ୍ ଖ୍ରୀ: ପୂ. ୧୭୫୦ରେ ଏ ସ୍ଥାନଟି ଜନପରିତ୍ୟକ୍ତ ହୋଇ

ନଥାନ୍ତା । ଆର୍ଯ୍ୟ-ପରଂପରା-କ୍ରମେ ଯେଉଁ ପ୍ରଳୟ-ଜଳର କିମ୍ବଦନ୍ତୀ ଗଢ଼ି ଆସୁଅଛି ତାହା ହୁଏତ ଏକ ଐତିହାସିକ ସତ୍ୟ ଘଟଣା ହୋଇଥିବ । ବୋଧହୁଏ ଏକ ପ୍ରଳୟଙ୍କରୀ ନଦୀବନ୍ୟା ଜନବସତିମାନଙ୍କରେ ଯେଉଁ ଧ୍ୱଂସର ଲୀଳା ଖେଳାଇ ଦେଇଥିବ, ତାକୁ ହିଁ ସ୍ମରଣ କରି ପରବର୍ତ୍ତୀକାଳରେ ପ୍ରଳୟର କଳ୍ପନା କରାଯାଇଥିବ । ଏହି ପ୍ରଳୟ ଜଳରେ ଉପରୋକ୍ତ ସିନ୍ଧୁ-ସଂସ୍କୃତିର ଯେ ହଠାତ୍ ବିଲୋପ ଘଟି ନଥିବ ସେ କଥା କହି ହେବନାହିଁ । ବରଂ ସେଉଳି ଘଟିଥିବାର ଯଥେଷ୍ଟ ସମ୍ଭାବ୍ୟ କାରଣମାନ ରହିଅଛି ।

ସିନ୍ଧୁ-ସଂସ୍କୃତି କହିଲେ ଲୋକେ ସାଧାରଣତଃ କେବଳ 'ମହେଞ୍ଜୋଦାରୋ' ଓ 'ହରପ୍ପା' ଠାରେ ୧୯୨୧ରୁ ୧୯୨୫ ମସିହା ମଧ୍ୟରେ ଭୂଖନନ ଫଳରେ ଯେଉଁ ଦୁଇ ନଗର-ସଭ୍ୟତାର ଆବିଷ୍କାର କରାଗଲା, ତାହାରି ସଂସ୍କୃତି । ତାହା କିନ୍ତୁ ଭ୍ରମାତ୍ମକ । ଉପରୋକ୍ତ ଭୂଖନନ ଫଳରେ ସିନ୍ଧୁ ପ୍ରଦେଶସ୍ଥ (ବର୍ତ୍ତମାନ ପାକିସ୍ଥାନରେ) ସିନ୍ଧୁ ନଦୀର ଦକ୍ଷିଣ ତୀରରେ ଅବସ୍ଥିତ ମହେଞ୍ଜୋଦାରୋଠାରେ ଏକ ନଗର-ସଭ୍ୟତାର ଧ୍ୱଂସାବଶେଷ ବାହାରିଥିଲା । ସେହିପରି ସିନ୍ଧୁନଦୀର ବାମ ତୀରରେ ହରପ୍ପାଠାରେ (ବର୍ତ୍ତମାନ ପାକିସ୍ଥାନରେ) ଆଉ ଏକ ନଗର-ସଭ୍ୟତାର ଧ୍ୱଂସାବଶେଷ ମଧ୍ୟ ବାହାରିଥିଲା । ଏ ପ୍ରକାର ଭୂଖନନ କାର୍ଯ୍ୟ ଉଭୟ ଭାରତ ଓ ପାକିସ୍ଥାନରେ ପର୍ଯ୍ୟାୟକ୍ରମେ ଅବ୍ୟାହତ । ଏହା ଫଳରେ ଉଭୟ ଦେଶରେ ଏପର୍ଯ୍ୟନ୍ତ ୭୪ ଗୋଟି ସ୍ଥାନରେ ଏ ପ୍ରକାର ନଗର-ସଭ୍ୟତାର ଚିହ୍ନମାନ ମିଳିଅଛି । ଭାରତରେ ମଧ୍ୟ ରାଜସ୍ଥାନର କାଲିବଙ୍ଗାଠାରେ, ଗୁଜୁରାଟର ଲୋଠାଲ୍, ରୋଜଦି ଓ ଦେଶଲପୁରଠାରେ, ପଞ୍ଜାବର ରୂପରଠାରେ ଏବଂ ଉତ୍ତର ପ୍ରଦେଶର ଆଲମଗିରଠାରେ ଏ ପ୍ରକାର ନଗର-ସଭ୍ୟତାର ଧ୍ୱଂସାବଶେଷମାନ ପରିଦୃଷ୍ଟ । ଏମାନଙ୍କ ମଧ୍ୟରେ ମହେଞ୍ଜୋଦାରୋ, ହରପ୍ପା, କାଲିବଙ୍ଗା ଓ ଲୋଠାଲ୍ ହେଉଛି ପ୍ରଧାନ । ଲୋଠାଲ୍ସ୍ଥିତ ଧ୍ୱଂସାବଶେଷର ବିଶେଷତ୍ୱ ହେଲା ଏହି ଯେ ସେଠାରେ ଗୋଟିଏ ବନ୍ଦରର ଚିହ୍ନ ମିଳିଛି । କାଲିବଙ୍ଗାସ୍ଥିତ ଧ୍ୱଂସାବଶେଷର ବିଶେଷତ୍ୱ ହେଲା, ସେଠାରେ ଉଭୟ ହରପ୍ପୀୟ ଓ ପ୍ରାକ୍-ହରପ୍ପୀୟ ସଭ୍ୟତାର ନିଦର୍ଶନ ମିଳୁଛି । ଏ ସଭ୍ୟତାମାନଙ୍କ ମଧ୍ୟରେ ଏକ ଆଶ୍ଚର୍ଯ୍ୟଜନକ ସାମ୍ୟ ପରିଲକ୍ଷିତ । ବାସ୍ତବିକ, ଉତ୍ତର ପ୍ରଦେଶରେ ମିଳୁଥିବା ଧ୍ୱଂସାବଶେଷ ଏକ ଜଟିଳତା ସୃଷ୍ଟି କରୁଛି । ଆର୍ଯ୍ୟମାନଙ୍କର 'ସପ୍ତସିନ୍ଧୁ' ଦେଶରୁ କ୍ରମେ କ୍ରମେ ପୂର୍ବଆଡ଼କୁ ଗତି କରିବା ଏକ ଐତିହାସିକ ସତ୍ୟ ଘଟଣା । ସେମାନଙ୍କ ପୂର୍ବ ହଟିବୁ ହୋଇଥିବା ଗତି ସହିତ ସମତାଳ ରଖି ଏ ନଗର-ସଭ୍ୟତା ଗତି କରିଥିବାରୁ ଏହା ସହିତ ଯେ ଆର୍ଯ୍ୟମାନେ ସଂଶ୍ଳିଷ୍ଟ ଏ ସମ୍ଭାବନାକୁ ଦୂର କରାଯାଇ ନପାରେ । ଏ ସମ୍ପର୍କରେ ଯେତେ ପ୍ରକାର ସମ୍ଭାବନାର ପ୍ରଶ୍ନ ମନକୁ ଛୁଉଁଛି, ତା'ର ସମୁଚିତ ଉତ୍ତର ଦେବା ଭବିଷ୍ୟତର ଗବେଷଣା ଉପରେ ନିର୍ଭର କରେ । (୪) ଏ ସଂସ୍କୃତିର ବ୍ୟାପ୍ତିର ଶେଷ ସୀମା-

ରେଖା ଏ ପର୍ଯ୍ୟନ୍ତ ନିର୍ଦ୍ଧାରିତ ହୋଇପାରି ନ ଥିବାରୁ ଏହାର ଉତ୍ପତ୍ତିସ୍ଥଳ (epicentre) ବିଷୟକ ଜ୍ଞାନ ମଧ୍ୟ ସେହିପରି ଅନ୍ଧକାରାଚ୍ଛନ୍ନ ହୋଇ ରହିଅଛି । ଅତଏବ, ଏହାର ଉତ୍ପତ୍ତି-ସ୍ଥଳ ବିଷୟରେ ବର୍ତ୍ତମାନ ନିର୍ଦ୍ଦିଷ୍ଟ ଓ ସ୍ଥିର ନିଶ୍ଚୟ ଭାବରେ କିଛି ମତ ଦେଇ ହେବନାହିଁ । (୫) ଉପରୋକ୍ତ ସ୍ଥାନମାନଙ୍କରେ ଯେଉଁ ନାଗରିକ ସଂସ୍କୃତିର ସନ୍ଧାନ ମିଳିଛି ସେ ସବୁକୁ ସାମଗ୍ରିକ ଭାବରେ ସିନ୍ଧୁ-ସଂସ୍କୃତି ବୋଲି ଧରାଯାଇପାରେ ।

ପ୍ରତ୍ନତାତ୍ତ୍ୱିକ ଖନନ ଫଳରେ ସବୁ ଅଞ୍ଚଳରେ ପ୍ରାୟ ସମାନ ପ୍ରକାରର ଧ୍ୱଂସାବଶେଷ ଦେଖିବାକୁ ମିଳୁଛି । ଏଣୁ ସବୁ ଅଞ୍ଚଳର ସଂସ୍କୃତିରେ ଯେ ଏକ ବିରାଟ ସାମ୍ୟ ରହିଅଛି, ଏହାହିଁ ତାହାର ପ୍ରମାଣ । ଏହାକୁ ଲକ୍ଷ୍ୟ କରି ପ୍ରତ୍ନତତ୍ତ୍ୱବିତ୍ ଆଲଚିନ୍ ଦମ୍ପତି ଯଥାର୍ଥରେ କହିଛନ୍ତି ;

> One of the striking facts revealed by the excavations of Mahenjodaro, Harappa Kalibanga, Lothal etc. is the complete uniformity of their culture. (୬)

ଅର୍ଥାତ୍ ମହେଞ୍ଜୋଦାରୋ, ହରପ୍ପା, କାଲିବଙ୍ଗା, ଲୋଥାଲ୍, ଇତ୍ୟାଦି ଅଞ୍ଚଳରେ ଭୂଖନନର ଏକ ବିଶିଷ୍ଟ ବିଷୟ ହେଉଛି ଏହି ଯେ ସମସ୍ତଙ୍କ ସଂସ୍କୃତିରେ ସଂପୂର୍ଣ୍ଣ ଐକ୍ୟ ବିଦ୍ୟମାନ । ନଗର ନିର୍ମାଣ ଓ ଜନ-ବସତିର ବିସ୍ତାର ପ୍ରାୟ ଏକାଭଳି । ପଶ୍ଚିମ ଦିଗରେ ଗୋଟିଏ ବୃହଦାକାର ଉତ୍ତର-ଦକ୍ଷିଣ ହୋଇ ବିସ୍ତାର ଲାଭ କରିଥିବା ସ୍ତୂପ ( Citadel mound ) ବିଦ୍ୟମାନ । ଏହା ଗୋଟିଏ ଉଚ୍ଚ ମଣ୍ଡପ ଉପରେ ଅବସ୍ଥିତ । ଏହାର ପୂର୍ବକୁ ପ୍ରାୟ ଏହାକୁ ମଧ୍ୟ ଭାଗରେ ରଖି ଅପେକ୍ଷାକୃତ ନୀଚ ଭୂମିରେ ଜନବସତିଟି ଗଢି ଉଠିଛି । ଏହି ଜନ-ବସତିର ଦକ୍ଷିଣକୁ ଅଛି କବରସ୍ଥାନ ବା ଶ୍ମଶାନ । ବୃହଦାକାର ସ୍ତୂପଟି ଓ ତଳ ପ୍ରଦେଶରେ ଅବସ୍ଥିତ ଥିବା ସହରଟି ଗୋଟିଏ ଗୋଟିଏ ଇଟା-ପ୍ରାଚୀର ଦ୍ୱାରା ବେଷ୍ଟିତ । ପ୍ରତ୍ୟେକ ସହରରେ ଅନେକଗୁଡ଼ିଏ ମୃଣ୍ମୟ ମୋହର (ପ୍ରାୟ ୨୫୦୦) ମିଳିଥିବା ବେଳେ ମହେଞ୍ଜୋଦାରୋରେ ଗୋଟିଏ ବିରାଟ ପୁଷ୍କରିଣୀର (୨୩'×୩୯'×୮') ସନ୍ଧାନ ମିଳିଛି । ସେଠାରେ ମଧ୍ୟ ଗୋଟିଏ ବ୍ରୋଞ୍ଜ ନିର୍ମିତ ନର୍ତ୍ତକୀର କ୍ଷୁଦ୍ର ମୂର୍ତ୍ତିଟିଏ ଦେଖିବାକୁ ମିଳେ । ଏହା ଛଡା ଉଭୟ ସ୍ଥାନରେ ଅନ୍ୟାନ୍ୟ ପ୍ରସ୍ତର ଓ ମୃଣ୍ମୟ ମୂର୍ତ୍ତି-ମାନ ବିଦ୍ୟମାନ ।

ଲୋଥାଲ୍‌ରେ ସେହିପରି ଅନ୍ୟାନ୍ୟ ଜନପଦମାନଙ୍କ ଭିତରେ ଏକ ବନ୍ଦରର ଧ୍ୱଂସା-ବଶେଷ ପରିଲକ୍ଷିତ ହୁଏ । ଏହା ବ୍ୟତୀତ ସବୁ ଅଞ୍ଚଳରୁ ପ୍ରଚୁର ପରିମାଣରେ ଚିହ୍ନିତ

ମାଟିପାତ୍ରମାନ ମିଳୁଅଛି । ମୁଣ୍ଡ୍ରସ୍ଥ ମୋହରମାନଙ୍କରେ ଅଙ୍କିତ ହୋଇଥିବା ବିଭିନ୍ନ ଚିହ୍ନକୁ ତତ୍ତ୍ୱବିତ୍ମାନେ ଏବେ ଚିହ୍ନଲିପି ବୋଲି କହିବାକୁ ଆରମ୍ଭ କଲେଣି । ବି. ବି. ଲାଲ୍ ସେଥିରୁ କେତେଗୁଡ଼ିଏ ଚିହ୍ନଲିପିର ପାଠୋଦ୍ଧାର କରିଛନ୍ତି । ନିକଟ ଅତୀତରେ ଏସ୍. ଆର. ରାଓ ଆହୁ ଅନେକଗୁଡ଼ିଏ ଚିହ୍ନଲିପିରେ ପାଠୋଦ୍ଧାର କରିଛନ୍ତି (୭) ଏହି ସବୁ ଧ୍ୱଂସାବଶେଷକୁ ବିଚାରକୁ ନେଲେ ସିନ୍ଧୁ-ସଂସ୍କୃତିରେ ସାମାଜିକସ୍ଥିତି କ'ଣ ଥିଲା ସେ ବିଷୟରେ ସମ୍ୟକ୍ ସୂଚନା ମିଳିଥାଏ ।

ସିନ୍ଧୁ-ସଂସ୍କୃତିର ବିସ୍ତାରକୁ ଲକ୍ଷ୍ୟକଲେ ଆମେ ଜାଣି ପାରିବା ଯେ ଏହା ନଦୀମାନଙ୍କ ତୀରରେ ଗଢ଼ି ଉଠିଥିଲା । ସେ ଅଞ୍ଚଳଗୁଡ଼ିକ ପୁଣି ସେତେ ଉର୍ବର ନଥିଲା । ବର୍ତ୍ତମାନ ତ ସେ ଅଞ୍ଚଳ ଗୁଡ଼ିକରୁ ଅଧିକାଂଶ ମରୁଭୂମିମୟ । ଅବଶ୍ୟ ଶହ ଶହ ବର୍ଷ ଧରି ଜଙ୍ଗଲ କଟାଯିବା ଫଳରେ ଏପରି ଜଳବାୟୁର ପରିବର୍ତ୍ତନ ଘଟିଥାଇପାରେ । କିନ୍ତୁ ଖ୍ରୀ:ପୂ: ୨୫୦୦ ଶତାବ୍ଦୀରେ ଏ ଅଞ୍ଚଳର ଜଳବାୟୁ ଯେ ସେତେ ଭଲ ଏବଂ ଭୂମି ସେତେ ଉର୍ବର ଥିବ, ତାହା ବିଶ୍ୱାସ କରିହେଉ ନାହିଁ । ତେବେ ଉର୍ବର ଅଞ୍ଚଳକୁ ଛାଡ଼ି ଅର୍ଦ୍ଧମରୁଭୂମି ଅଞ୍ଚଳରେ ସିନ୍ଧୁ-ସଂସ୍କୃତିର ଲୋକମାନେ କାହିଁକି ସେମାନଙ୍କର ସଭ୍ୟତା ଓ ସଂସ୍କୃତି ବିସ୍ତାର କଲେ ? ଏହି ପ୍ରଶ୍ନର ଉତ୍ତରରେ ହିଁ ଆମେ ଜାଣିପାରିବା ସାଧାରଣ ଭାବରେ ସେମାନଙ୍କର ସାମାଜିକ ଚଳଣି କ'ଣ ଥିଲା । ଡ଼ି. ଡ଼ି. କୋଶାମ୍ବି ଏ ସମ୍ପର୍କରେ କହିଛନ୍ତି :

> "The world's ancient civilizations grew up along just such rivers, the Nile and the Tigris-Euphrates complex, both in a very dry environment." । ୭ ।

ଅର୍ଥାତ୍ ନୀଳ ନଦୀ ଓ ଟାଇଗ୍ରିସ୍-ଇଉଫ୍ରେଟିସ୍ ନଦୀର ତୀରେ ତୀରେ ଅତି ଶୁଷ୍କ ପର୍ଯ୍ୟାବରଣ ଭିତରେ ପୃଥିବୀର ପ୍ରାଚୀନ ସଭ୍ୟତାମାନ ଗଢ଼ି ଉଠିଥିଲା । ପଟୁମାଟିରେ ଖୁବ୍ ଭଲ ଫସଲ ହେବ, ଯଦି ନିୟମିତ ଭାବରେ ତହିଁରେ ଜଳସେଚନର ସୁବିଧା ଥିବ; ଅନ୍ୟଥା ନୁହେଁ । କିନ୍ତୁ ସିନ୍ଧୁ ସଂସ୍କୃତିର ଅଧିବାସୀମାନେ ଜଳସେଚନର ବ୍ୟବସ୍ଥା ଜାଣି ନଥିଲେ । ତାହାଛଡ଼ା ବେଶୀ ଉର୍ବର ଜମି ହେଲେ ଜଙ୍ଗଲ ମଧ୍ୟ ଘଞ୍ଚ ହେବ । ଜଙ୍ଗଲର ପଶୁ ମଧ୍ୟ ସେହିଭଳି ଦୁର୍ଦ୍ଧର୍ଷ ହେବେ । ତେଣୁ ସେଠି କୃଷି କରିବା ଅପେକ୍ଷାକୃତ କଷ୍ଟକର ବ୍ୟାପାର ହେବ । ପୁନଶ୍ଚ ଲୁହାର ବ୍ୟବହାର ଏ ଲୋକେ ଜାଣିନଥିଲେ । ଏଣୁ ଦୁର୍ବଳ ବ୍ରୋଞ୍ଜର ହାତ ହତିଆରରେ ଘଞ୍ଚ ଜଙ୍ଗଲ ସଫା କରି କୃଷି କରିବା ଓ ନିଜକୁ ଦୁର୍ଦ୍ଧର୍ଷ ପଶୁମାନଙ୍କ ଆକ୍ରମଣରୁ ରକ୍ଷା କରିବା ନିଶ୍ଚିତ ଭାବରେ ଅସମ୍ଭବ ହୋଇ ଉଠିଥିବ । ନଦୀ ତୀରରେ ରହିବା ଫଳରେ ପ୍ରଚୁର ମାଛ ଖାଇବାକୁ ମିଳୁଥିବ । ମହେଞ୍ଜୋଦାରୋ ଓ

ହରପ୍ପାର ଧ୍ୱଂସାବଶେଷମାନଙ୍କ ମଧ୍ୟରେ ବ୍ରୋଞ୍ଜ ନିର୍ମିତ ବନ୍ସିକଣ୍ଟା ଅନ୍ୟତମ ଅଟେ । ତା'ର ଆକାର ଆଜିକାର ବନ୍ସିକଣ୍ଟା ଭଳି । ଏଥିରୁ ଜଣାପଡୁଛି ସେମାନେ ମାଛ ଖାଉଥିଲେ । ଏମାନେ ଜଳପଥରେ ବାଣିଜ୍ୟ କରୁଥିଲେ । ଲୋଥାଲ୍ ସ୍ଥିତ ପୋତାଶ୍ରୟର ଧ୍ୱଂସାବଶେଷ ଏମାନଙ୍କର ଜଳପଥରେ କରୁଥିବା ବହିର୍ବାଣିଜ୍ୟର ଦ୍ୟୋତକ । ଏ ପ୍ରକାର ବାଣିଜ୍ୟ କାରବାର ଲାଗି ନଦୀ ଧାରରେ ରହିବା ଅଧିକ ସୁବିଧାଜନକ ହେଉଥିବ । ଏଥିରୁ ଏହା ସୂଚିତ ହେଉଛି ଯେ ଏମାନେ ସାଧାରଣ ଭାବରେ ଥିଲେ କୃଷିଜୀବୀ, ମତ୍ସ୍ୟଭୋଜୀ ଏବଂ ବାଣିଜ୍ୟ-ବ୍ୟବସାୟୀ ।

ଏମାନଙ୍କର ବହିର୍ବାଣିଜ୍ୟରେ ଲିପ୍ତ ଥିବାର ଆହୁ କେତେକ ପ୍ରମାଣ ଦୃଷ୍ଟିଗୋଚର ହୁଏ । ମେସୋପଟାମିଆରେ (ଆଧୁନିକ ଇରାକ୍) ସୈନ୍ଧବ ମୃଣ୍ମୟ ମୋହର ଅନେକଗୁଡ଼ିଏ ମିଳୁଛି । ଏହି ମୋହରଗୁଡ଼ିକ ବାଣିଜ୍ୟ ବ୍ୟବସାୟରେ ବ୍ୟବହୃତ ହେଉଥିବାର ମନେହୁଏ । ପ୍ୟାକେଟ୍‌ର ମୋହରଟି ଯଦି ଅକ୍ଷୁର୍ଣ୍ଣ ଥାଏ, ତେବେ ପ୍ୟାକେଟ୍ ଭିତରେ ଥିବା ଜିନିଷ ସବୁ ଅଛୁଟ ଥିଲା ବୋଲି ଗଣ୍ୟ ହେଉଥିଲା । ଏତେ ଗୁଡ଼ିଏ ମୃଣ୍ମୟ ମୋହର ସେଠାରୁ ଯେତେବେଳେ ବାହାରୁଛି, ସେଥିରୁ ଅନୁମିତ ହେଉଛି ଯେ ସେ ଅଞ୍ଚଳରେ ବୋଧହୁଏ ଏକ ସୈନ୍ଧବ ବ୍ୟବସାୟୀଙ୍କ ଜନ-ବସତି ଗଢ଼ି ଉଠିଥିବ । ଇରାକ୍‌ର ଫାରାଠାରେ ଖନନ କାଳରେ ଗୋଟିଏ ମୃଣ୍ମୟ ମୋହର ବାହାରିଛି ଯହିଁରେ ଗୋଟିଏ ନୌକାର ଚିତ୍ର ଅଛି ଓ ତହିଁ ଉପରେ ଦିଗନିର୍ଣ୍ଣୟକ ଗୋଟିଏ ପକ୍ଷୀର ଚିତ୍ର ମଧ୍ୟ ଅଛି । ପୂର୍ବେ ଦିଗନିର୍ଣ୍ଣୟକ ଯନ୍ତ୍ରର ଉଦ୍ଭାବନ ନ ହୋଇଥିବାବେଳେ ନୌକାବାହୀ ବ୍ୟବସାୟୀମାନେ ନୌକାରୁ କୁଆଟିଏ ଛାଡ଼ି ଦେଉଥିଲେ । କୁଆଟି ସିଧାସଳଖ ସ୍ଥଳଭାଗ ଦିଗକୁ ଉଡ଼ିଯାଉଥିଲା । ଫଳରେ ବ୍ୟବସାୟୀମାନେ ନିକଟତମ ସ୍ଥଳଭାଗକୁ ଜାଣିପାରୁଥିଲେ । ଗୋଟିଏ ବୌଦ୍ଧଜାତକ ଗଳ୍ପରେ ଜଳଯାତ୍ରୀ ବ୍ୟବସାୟୀମାନେ ଏହିଭଳି ପକ୍ଷୀ ସାହାଯ୍ୟରେ ବାଭେରୁ (ବ୍ୟାବିଲୋନ୍) ସହିତ ବାଣିଜ୍ୟ ବ୍ୟବସାୟ କରୁଥିଲେ ବୋଲି ଉଲ୍ଲେଖ ଅଛି । କିନ୍ତୁ ମେସୋପଟାମୀୟମାନେ କୁଆର ବ୍ୟବହାର ଜାଣି ନ ଥିବାରୁ ସେମାନେ ଏଭଳି ବ୍ୟବସାୟ କରୁଥିବାର ପ୍ରମାଣ ଛୁଡ଼ିଯାଇ ନାହାନ୍ତି । (୮) ସୈନ୍ଧବ ମୃଣ୍ମୟ ମୋହର ଦୁଇଟି ବାହାରିଛି, ଯହିଁରେ ଗୋଟିଏ ବୀର ପୁରୁଷ ଦୁଇ ହାତରେ ଦୁଇଟି ବାଘକୁ ତଣ୍ଟି ଚିପି ମାରୁଥିବାର ଛବି ଅଙ୍କିତ । ଏହା ସୁମେରୀୟ ବୀର ଗିଲ୍‌ଗାମେଶ୍ ଦୁଇ ହାତରେ ଦୁଇଟି ସିଂହର ତଣ୍ଟି ଚିପି ମାରୁଥିବାର ଛବିର ଅନୁରୂପ । ବୃଷଭ-ବୀର ଗିଲଗାମେସଙ୍କ ସହିତ ଅନେକ ଯୁଦ୍ଧ-ଯାତ୍ରାରେ ସହଯୋଗ କରିଥିଲେ ବୋଲି ସୁମେରୀୟ ପରମ୍ପରା କହେ । ଏହି ବୃଷଭ ବୀର ଅଙ୍କିତ ହୋଇଥିବା ଅନେକ ସୈନ୍ଧବ ମୃଣ୍ମୟ ମୋହର ମଧ୍ୟ ଦେଖିବାକୁ ମିଳେ । ଏଥିରୁ ପ୍ରମାଣିତ ହୁଏ ଯେ ସୈନ୍ଧବ ଅଧିବାସୀମାନେ ମିଶର, ମେସୋପଟାମିଆ,

ବ୍ୟାବିଲୋନ୍, ସୁମେର ଆଦି ଦେଶମାନଙ୍କ ସହିତ ଜଳପଥରେ ବାଣିଜ୍ୟ କାରବାର କରୁଥିଲେ ।

ମେସୋପଟାମିଆର ଅଧିବାସୀମାନେ ଇଉଫ୍ରେଟିସ୍ ନଦୀର ଜଳପ୍ରବାହକୁ ନିୟନ୍ତ୍ରିତ କରି କେନାଲ ସାହାଯ୍ୟରେ ଜଳସେଚନ କରୁଥିଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା ଏହି ଯେ ସେଠାରେ ହେଉଥିବା ଗମ୍ଭୀର କୃଷି ଓ ଜଳସେଚନ ପ୍ରଣାଳୀ ସୈନ୍ଧବ ଅଧିବାସୀମାନେ ଅନୁକରଣ କରି ନଥିଲେ । ସେମାନେ ତ ବାଣିଜ୍ୟ କାରବାର ଫଳରେ ଇଉଫ୍ରେଟିସର ଉଭୟ ପାରରେ ପୁଷ୍କଳ ଶସ୍ୟକ୍ଷେତମାନ ଦେଖିବାକୁ ପାଇଥିବେ । ସେମାନେ ତେବେ କାହିଁକି ତାହା ଅନୁକରଣ କଲେନାହିଁ କାହିଁକି ? ଏହାର କାରଣ ଅନୁସନ୍ଧାନ କରି କୋଶାମ୍ବୀ କହିଛନ୍ତି :

"The Indus merchants could not profit from any of these improvements. It follows that the land as a whole must have been the property of and directly administered by the great temple and its priesthood. Once established, they would insist in the way of most ancient priesthoods upon preventing all innovation." (୯)

ଅର୍ଥାତ୍ ସୈନ୍ଧବ ବଣିକ ଏ ସବୁ ଉନ୍ନତ-ସାଧନରୁ (କୃଷିରୁ) କିଛି ହିଁ ଲାଭ ଉଠାଇ ପାରି ନ ଥିଲା । ଏଥିରୁ ପ୍ରମାଣ ମିଳେ ଯେ ସାରା ଜମିର ମାଲିକାନା ସ୍ୱତ୍ୱ ଏବଂ ତାହାର ପରିଚାଳନା ଭାର ବୃହତ୍ ମନ୍ଦିରର ଓ ତତ୍‌ସମ୍ପର୍କିତ ପୁରୋହିତ ଗୋଷ୍ଠୀର ହାତରେ ଥିଲା । ପରେ ସେମାନେ ପ୍ରତିଷ୍ଠିତ ହୋଇଗଲେ ଅଧିକାଂଶ ପ୍ରାଚୀନ ପୁରୋହିତ ଗୋଷ୍ଠୀ ଭଳି ସମସ୍ତ ପ୍ରକାର ନୂତନତ୍ୱକୁ ପ୍ରତିରୋଧ କରୁଥିଲେ । ବାସ୍ତବିକ ଏହି ପ୍ରକାର ପ୍ରତିରୋଧରୁ ହିଁ କ୍ରମେ କ୍ରମେ ଶସ୍ୟ ଉତ୍ପାଦନ ସୈନ୍ଧବ ଉପତ୍ୟକାରୁ ହ୍ରାସ ପାଇଥିବ ଏବଂ ନଈନଦି କିମ୍ବା ମରୁଡ଼ି କିମ୍ବା ଭୂମିକମ୍ପ ଭଳି ଏକ ବଡ଼ ପ୍ରାକୃତିକ ବିପର୍ଯ୍ୟୟ ଫଳରେ ଏ ସ୍ଥାନ ପରିତ୍ୟକ୍ତ ହୋଇଯାଇଥିବ । ସେଥିପାଇଁ ବୋଧହୁଏ ଖ୍ରୀ. ପୂ. ୧୭୫୦ରେ ହଠାତ୍ ଏ ସଂସ୍କୃତିର ବିଲୋପ ସାଧନ ସଂଘଟିତ ହୋଇଅଛି ।

ସିନ୍ଧୁ-ସଂସ୍କୃତିକୁ ସମକାଳୀନ ମିଶରୀୟ ସଂସ୍କୃତି ସହିତ ତୁଳନା କଲେ ଆମେ ସାମାଜିକ ବ୍ୟବସ୍ଥାରେ ଯଥେଷ୍ଟ ତାରତମ୍ୟ ଦେଖିବାକୁ ପାଇବା । ମିଶରର ସମ୍ରାଟଙ୍କୁ ସାରେ ପୂଜାଯାଉଥିଲା । ସେ ତାଙ୍କର କ୍ଷମତାକୁ ଦୃଢ଼ୀଭୂତ କରିବା ପାଇଁ ବହୁ ସଂଖ୍ୟକ

ସମସ୍ତ ସାମନ୍ତ ତଥା ସମର୍ଥକ ପୁରୋହିତ ଗୋଷ୍ଠୀ ଉପରେ ନିର୍ଭର କରୁଥିଲେ । ରାଜ୍ୟଜୟ, ରାଜ୍ୟ-ଶାସନ ଥିଲା ତାଙ୍କର ମୁଖ୍ୟ କାର୍ଯ୍ୟ । ଫାରୋଙ୍କର କବରସ୍ଥାନ ବିରାଟ ପିରାମିଡ୍‌ମାନଙ୍କଠାରୁ ଆରମ୍ଭ କରି, ତାଙ୍କର ରାଜପ୍ରାସାଦ, ଯୁଦ୍ଧସାଧା ଇତ୍ୟାଦି ସହିତ ବିରାଟ ଚାକଚକ୍ୟର ସମ୍ପର୍କ ଥିବାର ଦୃଷ୍ଟିଗୋଚର ହୁଏ । ଜନସାଧାରଣଙ୍କ ନିକଟରେ ଫାରୋ ଥିଲେ ଖୁବ୍ ବିରାଟ ଏବଂ ସେ ଦୁହିଁଙ୍କର ବ୍ୟବଧାନ ମଧ୍ୟ ଥିଲା ସେହିପରି ଅପୂରଣୀୟ । କିନ୍ତୁ ସିନ୍ଧୁ-ସଂସ୍କୃତିରେ ଆମେ ଠିକ୍ ଏହାର ବିପରୀତ ଅବସ୍ଥା ଦେଖିବାକୁ ପାଇଥାଉଁ । ଯେଉଁ ପକ୍‌କା ଘରଗୁଡ଼ିକର ଧ୍ୱଂସାବଶେଷ ରହିଛି, ସେଗୁଡ଼ିକ ପ୍ରାୟ ଏକ ଆକାରର । ବଡ଼ ଘର, ବଡ଼ ଦରଜା, ମୋଜାଇକ୍ ବା ମାର୍ବଲ୍ ଚଟାଣ ଆଦି କୁଆପି ଦୃଷ୍ଟିଗୋଚର ହୁଏ ନାହିଁ । ଏଣୁ ଏଠି କେହି ଶାସନକର୍ତ୍ତା ରାଜା ଥିବାର ଅନୁମିତ ହୁଏ ନାହିଁ । ଯେଉଁ ବିରାଟ ପ୍ରାକୃତ ଗୃହର କଥା ପୂର୍ବରୁ କୁହାଯାଇଛି, ତାହା ରାଜପ୍ରାସାଦ କିମ୍ବା ଦୁର୍ଗ ନୁହେଁ । ତାହା ହେଉଛି ଏକ ମନ୍ଦିର ଯହିଁରେ ଅଗ୍ନିଦେବଙ୍କୁ ପୂଜା କରାଯାଉଥିଲା । ସିନ୍ଧୁ-ସଂସ୍କୃତିର ଅଧିବାସୀମାନେ ଯେ ଅଗ୍ନିଦେବ ବା ପଶୁପତିଙ୍କର ପୂଜା କରୁଥିଲେ ସେ ବିଷୟ ଅଧୁନାତନ ଗବେଷଣା ଫଳରେ ଜଣାଗଲାଣି । ଏସ. ଆର. ରାଓ ଏ ସମ୍ପର୍କରେ ଅନେକ ପ୍ରମାଣ ଦର୍ଶାଇଛନ୍ତି (୧୦) ଅତଏବ ଏଥିରୁ ଜଣାଯିବ ଯେ, ସିନ୍ଧୁ-ସଂସ୍କୃତିର ସମାଜ ଥିଲା ଏକପ୍ରକାର ଗଣତାନ୍ତ୍ରିକ ସମାଜ (ଆଧୁନିକ ଅର୍ଥରେ କିନ୍ତୁ ନୁହେଁ) ଯାହାକି ପୁରୋହିତ ଗୋଷ୍ଠୀ ଦ୍ୱାରା ପରିଚାଳିତ ହେଉଥିଲା । ଏହି ପୁରୋହିତ ଗୋଷ୍ଠୀ ଗଣକୁ ଚଳାଉଥିଲେ ଏବଂ ସେଥିପାଇଁ ଗଣପତି ନାମରେ ଖ୍ୟାତ ଥିଲେ । ଏହି 'ଗଣପତି' ଅନୁଷ୍ଠାନର କ୍ରମବିକାଶ ଫଳରେ ଆର୍ଯ୍ୟମାନଙ୍କ ମଧ୍ୟରେ ପରବର୍ତ୍ତୀ କାଳରେ ରାଜା ପଦବୀଟି ସୃଷ୍ଟି ହୋଇଥିଲା । ଏହି ପ୍ରାଚୀନ 'ଗଣପତି'ଙ୍କୁ ହୁଏତ ଲକ୍ଷ୍ୟ କରି ସେଦିନ ଋଗ୍‌ବେଦର ଋଷି ଗାଇଥିଲେ—

ଗଣାନାଂ ତ୍ୱା ଗଣପତିଂ ହବାମହେ । (୧୧)

ଅର୍ଥାତ୍ ହେ ଗଣମାନଙ୍କର ଗଣପତି ! ମୁଁ ତୁମକୁ ଆବାହନ କରୁଛି । ଏକ ପକ୍ଷରେ ସିନ୍ଧୁ-ସଂସ୍କୃତିରେ 'ରାଜା' ବା 'ଶାସକ'ଙ୍କର ଅନୁପସ୍ଥିତି ଓ ଅନ୍ୟପକ୍ଷରେ ସମାଜରେ ପୁରୋହିତ-ଗୋଷ୍ଠୀର ପ୍ରାଧାନ୍ୟ ଉତ୍ପାଦନରେ ବଣ୍ଟନ ଓ ଲୋକଙ୍କ ଆର୍ଥିକ ଅଭିବୃଦ୍ଧିକୁ ଏକ ନୂତନ ରୂପ ଦେଇଥିଲା । ବିଶ୍ୱର ଇତିହାସ ପର୍ଯ୍ୟାଲୋଚନା କଲେ ଆମେ ଦେଖିବାକୁ ପାଇବା ଯେ ବସ୍ତୁଗତ ଉତ୍ପାଦନକୁ ଯିଏ ନିୟନ୍ତ୍ରିତ କରେ, ସମାଜର ଆର୍ଥିକ ଉତ୍ପାଦନର ଚାବିକାଠିଟି ତା'ର ହାତରେ ଥାଏ । କାର୍ଲ ମାର୍କସ ଏହି ଐତିହାସିକ ସୂତ୍ରର ଉଦ୍ଘାଟନର ପ୍ରବକ୍ତା ଅଟନ୍ତି । ତାଙ୍କୁ ହିଁ ଅନୁକରଣ କରି ସର୍ଚ୍ଚି ଗାହିତରାୟ କହିଛନ୍ତି :—

"ବସ୍ତୁଗତ ଉତ୍ପାଦନ ଯେଉଁ ଶ୍ରେଣୀ ନିୟନ୍ତ୍ରଣ କରେ, ଆତ୍ମିକ ଉତ୍ପାଦନକୁ ମଧ୍ୟ ସେହି ଶ୍ରେଣୀ 'କଣ୍ଟ୍ରୋଲ' କରେ । ଏହାର ଅର୍ଥ, ସମାଜର ବସ୍ତୁଗତ ଉତ୍ପାଦନ ଯେଉଁ ଶ୍ରେଣୀ ହାତରେ ଥାଏ, ଯାହାର ଆଧିପତ୍ୟରେ ଥାଏ, ସମାଜର ଗୋଟା ମାନସିକତାକୁ ମଧ୍ୟ ସେମାନେ ପ୍ରଭାବିତ କରନ୍ତି । ଏହା ନ ହୋଇ ଉପାୟ ନାହିଁ ।" (୧୬)

ବାସ୍ତବିକ ଏହା ହିଁ ଘଟିଥିଲା ସୈନ୍ଧବ ସଂସ୍କୃତିର ଆତ୍ମା ଓ ଅଙ୍ଗରେ । କୃଷି କ୍ଷେତର ମାଲିକାନା ସ୍ୱତ୍ୱ ହେଉ ବା କୃଷି-ଉତ୍ପାଦନ ହେଉ ବା ଉତ୍ପନ୍ନ ଦ୍ରବ୍ୟର ବଣ୍ଟନ ହେଉ ବା ବାଣିଜ୍ୟ ବ୍ୟବସାୟ ହେଉ ବା ଧର୍ମ-ଧାରଣା ହେଉ ବା ଜନ୍ମ-ମୃତ୍ୟୁ ହେଉ, ସବୁ ସ୍ତରରେ ଏହି ପୁରୋହିତ-ଗୋଷ୍ଠୀର ଦୃଢ଼ ପ୍ରଭାବ, ଉଭୟ ପ୍ରଚ୍ଛନ୍ନ ଓ ପ୍ରତ୍ୟକ୍ଷ ଭାବରେ ଅନୁଭୂତ । ଆଉ ଏ ପୁରୋହିତ-ଗୋଷ୍ଠୀଟି ଥିଲା ପୁରୁଷ ପ୍ରଧାନ, ନାରୀ ପ୍ରଧାନ ନୁହେଁ । ଅବଶ୍ୟ ସମାଜରେ ପ୍ରଜନନ ଶକ୍ତି ବା 'ମହାନାରୀ-ଶକ୍ତି'ର ଯେ ଆରାଧନା କରାଯାଉ ନ ଥିଲା, ତାହା ନୁହେଁ । ଏ ବିଷୟରେ ସବିଶେଷ ଆଲୋଚନା ପରବର୍ତ୍ତୀ ଅନୁଚ୍ଛେଦମାନଙ୍କରେ କରାଯିବ । କିନ୍ତୁ ଏ ପ୍ରକାର ଆରାଧନାର ମାର୍ଗ ନିର୍ଦ୍ଦେଶକ ଥିଲେ ପୁରୁଷ, ନାରୀ ନୁହେଁ । ସମାଜରେ ନାରୀର ସ୍ଥାନ ଅପେକ୍ଷାକୃତ ନିମ୍ନ ସ୍ତରରେ ଥିଲା । ମହାନାରୀ-ଶକ୍ତିର ଆରାଧନା ନାରୀ ଜାତିକୁ ସମ୍ମାନ ଦେବାପାଇଁ ଉଦ୍ଦିଷ୍ଟ ଥିବାର ଉପରକୁ ଜଣାପଡୁଥିଲେ ମଧ୍ୟ ଏହାର ଭିତର ଉଦ୍ଦେଶ୍ୟ ଥିଲା ଅଲଗା । ଚତୁର ପୁରୋହିତ ଗୋଷ୍ଠୀ ପୁରୁଷର ସୁଖ ସମ୍ଭୋଗ ଲାଗି ଏ ପ୍ରକାର 'ମହାନାରୀ ଶକ୍ତି' ବା 'ପ୍ରଜନନ ଶକ୍ତି'ର ଆରାଧନା ପ୍ରଥାଟିର ପ୍ରଚଳନ କରିଥିଲେ ।

ପୂର୍ବରୁ କୁହାଯାଇଛି କପରି ଜମି ଉପରେ ଲୋକମାନଙ୍କର ବ୍ୟକ୍ତିଗତ ମାଲିକାନା ସ୍ୱତ୍ୱ ନ ଥିବାରୁ ଏବଂ ଏହାର ଉତ୍ପାଦନ 'ମନ୍ଦିର' ବା ପୁରୋହିତ ଗୋଷ୍ଠୀ ଦ୍ୱାରା ନିୟନ୍ତ୍ରିତ ହେଉଥିବାରୁ ଲୋକମାନେ ଉତ୍ପାଦନ ବଢାଇବା ପାଇଁ ଆଗ୍ରହୀ ନ ଥିଲେ । ସେମାନେ ଗତାନୁଗତିକ ଢଙ୍ଗରେ ଅନୁନ୍ନତ ପୁରୁଣାକାଳିଆ ଯନ୍ତ୍ର ଦ୍ୱାରା ଅଗଭୀର ଚାଷ କରୁଥିଲେ । ଏପରି କି ଲଙ୍ଗଳର ସେମାନେ ବ୍ୟବହାର ମଧ୍ୟ କରୁ ନ ଥିଲେ, ଯଦିଓ ସେମାନଙ୍କୁ ମେସୋପଟାମିଆ ସହିତ ବାଣିଜ୍ୟ କାରବାର କରିବା ଅବସରରେ ଜଳସେଚିତ ଗଭୀର ଚାଷ ଅନୁଧ୍ୟାନ କରିବାର ସୁଯୋଗ ମିଳୁଥିଲା । ସେମାନେ ଖୁଣ୍ଟ ବିଦା (Toothed harrow) ସାହାଯ୍ୟରେ ଚାଷ କରୁଥିଲେ, ଯାହାର ଚିତ୍ର ମୃଣ୍ମୟ ମୋହରମାନଙ୍କରେ ଅଙ୍କିତ । କୋସାମ୍ବୀ ସେଥିପାଇଁ ଦୃଢମତ ଦିଅନ୍ତି ଯେ, ସେମାନେ ଲଙ୍ଗଳର ବ୍ୟବହାର ଜାଣି ନ ଥିଲେ । (୧୩-କ) ବାସ୍ତବିକ ଦେଖିବାକୁ ଗଲେ ଲଙ୍ଗଳ ଦ୍ୱାରା ଗଭୀର ଚାଷ ଋଗ୍‌ବେଦର ପରବର୍ତ୍ତୀ ଯଜୁର୍ବେଦର ତୈତ୍ତିରୀୟ ସଂହିତାରେ ଦେଖିବାକୁ ମିଳେ । ଏଣୁ ଅନ୍ୟ କୌଣସି

ପ୍ରମାଣ ନ ମିଳିବା ପର୍ଯ୍ୟନ୍ତ ହୈନ୍ଧବ-ସଂସ୍କୃତିର ଅଧିବାସୀମାନେ ଲଙ୍ଗଳ ବ୍ୟବହାର ଜାଣି ନ ଥିଲେ ବୋଲି ଗ୍ରହଣ କରିବାକୁ ହେବ ।

ଉତ୍ପନ୍ନ ଦ୍ରବ୍ୟର ପରିବହନ ତଥା ଲୋକଙ୍କ ଯାତାୟାତ ଲାଗି ବୋଧହୁଏ ଶଗଡ ବ୍ୟବହୃତ ହେଉଥିଲା । ମହେଞ୍ଜୋଦାଡୋରେ ମାଟିରେ ତିଆରି ଗୋଟିଏ ଶଗଡ଼ ଓ ତାକୁ ଦୁଇଟି ବଳଦ ଟାଣୁଥିବାର ମୂର୍ତ୍ତି ମିଳିଛି । ଏ ଶଗଡ଼ଟି ହୁଏତ ପିଲାଙ୍କର ଗୋଟିଏ ଖେଳଣା ହୋଇ ଥାଇପାରେ । ଯେ ଯାହାହେଉ, ଏ ଖେଳଣା ଶଗଡଟି ମଧ୍ୟ ପ୍ରମାଣ କରି ଦେଉଛି ଯେ ସେତେବେଳେ ଶଗଡ଼ର ବ୍ୟବହାର ଲୋକମାନେ ଜାଣିଥିଲେ । କିନ୍ତୁ ଏ ଶଗଡର ଆକାର, ଏହାର ଦୁଇ ଚକ ମଧ୍ୟରେ ଥିବା ବ୍ୟବଧାନ ବର୍ତ୍ତମାନର ଶଗଡ଼ଠାରୁ ଭିନ୍ନ । ହୈନ୍ଧବ ସହରମାନଙ୍କ ରାସ୍ତାରେ ଯେଉଁ ଶଗଡ ଚକର ଚିହ୍ନ ରହିଛି, ତାକୁ ଅନୁଧ୍ୟାନ କରି ପ୍ରତ୍ନତତ୍ତ୍ୱବିତ୍‌ମାନେ ଏ କଥା କହୁଥାନ୍ତି ।

ଉତ୍ପନ୍ନ ଶସ୍ୟମାନଙ୍କ ଭିତରେ ଗହମ, ଯବ, ଧାନ, ଖଜୁରି, ମୁଗ ଜାତୀୟ ଶସ୍ୟ ଅନ୍ତର୍ଭୁକ୍ତ । ଲୋଥାଲ ଓ ରଙ୍ଗପୁରଠାରେ ମିଳୁଥିବା ମୃଣ୍ମୟ ପାତ୍ରର ଧ୍ୱଂସାବଶେଷରୁ ଜଣାଯାଏ ଯେ ସେଗୁଡିକ ତିଆରି କଲାବେଳେ ମାଟି ସହିତ କୁଣ୍ଡା ବ୍ୟବହାର କରାଯାଉଥିଲା । କିନ୍ତୁ ଅତି ଆଶ୍ଚର୍ଯ୍ୟର କଥା ଯେ ମୃଣ୍ମୟ ପାତ୍ରଟି କେଉଁ ପ୍ରକ୍ରିୟାରେ ପୋଡା ହେଉଥିଲା କେଜାଣି, ତହିଁରେ ଥିବା କୁଣ୍ଡା ପୋଡ଼ି ନ ଯାଇ ସେହିଭଳି ଅକ୍ଷୁଣ୍ଣ ରହୁଥିଲା । ପ୍ରତିଟି ସହରରେ ବୃହଦାକାର ସ୍ତୂପ (ଯାହାକୁ କି ବୃହତ୍ ମନ୍ଦିର କୁହାଯାଇପାରେ) ନିକଟରେ ବୃହତ୍ ଶସ୍ୟାଗାରର ସନ୍ଧାନ ମିଳିଛି । ଏହାର କାନ୍ଥକୁ ଲାଗି ଛୋଟ ଛୋଟ କୋଠରି ଘରଟିମାନ ଅଛି । ବୋଧହୁଏ ଏହି ଘରଗୁଡ଼ିକରେ କୁଲି ମୂଲିଆମାନେ ରହୁଥିଲେ, ଯେଉଁମାନେ କି ଶସ୍ୟକୁ ଖାଦ୍ୟୋପଯୋଗୀ କରିବା କାର୍ଯ୍ୟରେ ନିଯୁକ୍ତ ଥିଲେ । ଆଧୁନିକ ଗ୍ରହଳ-ଜଳର ପ୍ରାଚୀରକୁ ଲାଗି ଏହି ଭଳି କୁଲିମାନଙ୍କର ବାସଗୃହ ଏବେ ମଧ୍ୟ ଆମେ ଦେଖିବାକୁ ପାଉଥାଉଁ । (୧୩-ଖ) ବୃହତ୍ ମନ୍ଦିରକୁ ନିୟନ୍ତ୍ରିତ କରୁଥିବା ପୁରୋହିତ ଗୋଷ୍ଠୀ ବୋଧହୁଏ ଏହି ସବୁ ଖାଦ୍ୟ-ଦ୍ରବ୍ୟର ପ୍ରସ୍ତୁତି ଓ ବର୍ଣ୍ଟନ ପ୍ରକ୍ରିୟାକୁ ନିୟନ୍ତ୍ରିତ କରୁଥିଲେ । ମେସୋପଟାମିଆରେ ମଧ୍ୟ ଠିକ୍ ଏହିଭଳି ମନ୍ଦିର ଦ୍ୱାରା କୁଲି ମଜୁରିଆ ନିଯୁକ୍ତ ହେଉଥିଲେ । ସେମାନଙ୍କୁ କୁହାଯାଉଥିଲା 'କଲୁ' । (୧୪)

ଏ ତ ଗଲା କୃଷି କଥା । ଅନେକ ଗୃହପାଳିତ ପଶୁଙ୍କର ଧ୍ୱଂସାବଶେଷ ମଧ୍ୟ ପ୍ରାପ୍ତ ସହରଗୁଡ଼ିକରେ ମିଳୁଅଛି । ଏ ସମ୍ପର୍କରେ ଆଲଚନ୍ ଦମାରିଙ୍କର ବକ୍ତବ୍ୟ ପ୍ରଣିଧାନଯୋଗ୍ୟ । ସେ ତୁହେଁ କହିଛନ୍ତି :—

"Of animal remains, three species are reported at nearly every site so far excavated; they are sheep, goats and cattle."

ଅର୍ଥାତ୍ ଖୋଳା ହୋଇଥିବା ପ୍ରତ୍ୟେକ ସ୍ଥାନରୁ ତିନ ପ୍ରକାର ପଶୁଙ୍କର ଧ୍ୱଂସାବଶେଷ ମିଳିଅଛି । ସେଗୁଡିକ ହେଲେ ମେଣ୍ଢା, ଛେଳି ଓ ଗୋରୁଗାଈ । ଏହି 'ଗୋରୁଗାଈ'ରେ ଅବଶ୍ୟ କେବଳ ଗାଈ, ବଳଦ, ଷଣ୍ଢ ଇତ୍ୟାଦି ଗୋଜାତୀୟ ପଶୁ ଅନ୍ତର୍ଗତ । ଅନ୍ୟ ପକ୍ଷରେ, ମଇଁଷି ଜାତୀୟ ପଶୁ ଅନ୍ତର୍ଭୁକ୍ତ ନୁହନ୍ତି । ମଇଁଷିର ବ୍ୟବହାର ବୋଧହୁଏ ସେ ଲୋକମାନେ ଜାଣି ନ ଥିଲେ । ଗୋଟିଏ ସୈନ୍ଧବ ମୃଣ୍ମୟ ମୋହରରେ ମଇଁଷିଟିଏ ମୁଣ୍ଡ ହଲାଇ ମଣିଷକୁ ଆକ୍ରମଣ କରୁଥିବାର ଦୃଶ୍ୟଟିଏ ଅଙ୍କିତ । ଏଥିରୁ ଜଣାଯାଉଛି ଯେ ସେ ପର୍ଯ୍ୟନ୍ତ ବୋଧହୁଏ ମଇଁଷିକୁ ଗୃହପାଳିତ ପଶୁ ହିସାବରେ ସେମାନେ ନିୟନ୍ତ୍ରଣାଧୀନ କରି ପାରି ନଥିଲେ । ବୋଧହୁଏ ସେମାନଙ୍କର ଏହି ପଶୁକୁ ନିୟନ୍ତ୍ରଣାଧୀନ କରିବାର ପ୍ରାଥମିକ ପ୍ରଚେଷ୍ଟାର ଚିତ୍ରଟି ଉପରୋକ୍ତ ମୃଣ୍ମୟ ମୋହରଟିରେ ଅଙ୍କିତ ।

ଏତେ ପ୍ରକାର କୃଷି କାର୍ଯ୍ୟରେ ବ୍ୟବହୃତ ହେଉଥିବା ପଶୁମାନଙ୍କର ପାଳନ, ବିଭିନ୍ନ ପ୍ରକାର ଶସ୍ୟର ଉତ୍ପାଦନ, ପରିବହନ, ସଂଗ୍ରହ ଓ ବଣ୍ଟନ ଇତ୍ୟାଦି ବିଷୟକୁ ବିଚାରକୁ ନେଲେ ମନରେ ଏକ କୌତୂହଳୋଦ୍ଦୀପକ ପ୍ରଶ୍ନ ଉଠେ—ଏ ସୈନ୍ଧବ ସଭ୍ୟତା କ'ଣ କେବଳ ନଗର-ଭିତ୍ତିକ ? ଏହା କ'ଣ କୃଷିଭିତ୍ତିକ ନୁହେଁ ? ହରପ୍ପାରେ ଥିବା ଗୃହ ସଂଖ୍ୟା, ଆକାର ଓ କବର ଭୂମିର ସଂଖ୍ୟା, ଆକାର ଆଦି ବିଷୟ ବିଚାରକୁ ନେଇ ସେତେବେଳେ ଆନୁମାନିକ ଏହି ସହରର ଲୋକ-ସଂଖ୍ୟା କେତେ ହୋଇଥିବ, ଏ ବିଷୟରେ ଗବେଷଣା କରାଯାଇଅଛି । ଜେ. ଏମ୍. ଦାଲି ଏ ବିଷୟରେ ଗବେଷଣା କରି ଏହି ଲୋକ ସଂଖ୍ୟା ୩୨୧୫୬ ହୋଇଥିବ ବୋଲି ସିଦ୍ଧାନ୍ତ କରିଛନ୍ତି । (୧୫) ଏତେ ଲୋକଙ୍କ ପାଇଁ ଖାଦ୍ୟଦ୍ରବ୍ୟ ଯୋଗାଇବା ପାଇଁ ନିଶ୍ଚିତ ଭାବେ ନଗର ବାହାରେ ଅନ୍ୟାନ୍ୟ ଲୋକମାନେ କୃଷି କାର୍ଯ୍ୟ କରୁଥିବେ । କାରଣ ନଗର ଭିତରେ ଏହା କରିବା ଅସମ୍ଭବ । ଏ ପ୍ରକାର କୃଷିକାର୍ଯ୍ୟରେ ଯେଉଁମାନେ ନିଯୁକ୍ତ ରହିଥିବେ, ସେମାନେ ନିଶ୍ଚିତ ସହର ବାହାରେ ଆଜିକାଲି ଭଳି ଗାଁଗଣ୍ଡାରେ ରହୁଥିବେ । ଏଣୁ ଏବକାର ଭଳି ଉଭୟ ନଗର ଓ ଗ୍ରାମର ଅର୍ଥନୀତି ସେତେବେଳେ କାମ କରୁଥିବ । ଅତଏବ, ଏହି ସିଦ୍ଧାନ୍ତରେ ଆମେ ଉପନୀତ ହେବା, ଯେ ସୈନ୍ଧବ ସଭ୍ୟତାକୁ ତଥାକଥିତ ନଗର-ସଭ୍ୟତା ବୋଲି ଆଖ୍ୟା ଦେବା ସଂପୂର୍ଣ୍ଣ ସତ୍ୟ ନୁହେଁ । ଅନ୍ୟ ପକ୍ଷରେ ଏହା ଆଂଶିକ ସତ୍ୟ ମାତ୍ର । ଏହା ଏକ ବୃହତ୍ତର ସଭ୍ୟତାର ଅଂଶବିଶେଷ ଯହିଁରେ କୃଷିଭିତ୍ତିକତା ମଧ୍ୟ ସମଧିକ ପରିମାଣରେ ଥିଲା । ସଂକ୍ଷେପରେ କହିବାକୁ ଗଲେ ଉଭୟ ଗ୍ରାମ ଓ ନଗରର ବିକାଶ

କାନ୍ଧକୁ କାନ୍ଧ ମିଳାଇ ଚାଲିଥିଲା । ନଗର ଆଜିକାଲି ଭଳି ବାଣିଜ୍ୟ ବ୍ୟବସାୟ ଓ ଶାସନର କେନ୍ଦ୍ରବିନ୍ଦୁ ହୋଇ ରହିଥିଲା ମାତ୍ର । କିନ୍ତୁ ଶସ୍ୟ ଉତ୍ପାଦନର କେନ୍ଦ୍ରବିନ୍ଦୁ ଥିଲା ଗ୍ରାମ । ସିନ୍ଧୁ-ସଂସ୍କୃତିର ଏହି ଦିଗଟିର ଆର୍ଯ୍ୟ-ସଂସ୍କୃତି ସହିତ କେତେଦୂର ସାମ୍ୟ ରହିଅଛି ତାହା ବିଚାର୍ଯ୍ୟ । (୧୬)

ବୈଦିକ ସଂସ୍କୃତିରେ ଆମେ ଯେମିତି ପରିବାରକୁ ପିତୃକୈନ୍ଦ୍ରିକ ବୋଲି ଦେଖି-ବାକୁ ପାଉଥାଉ, ସିନ୍ଧୁ-ସଂସ୍କୃତିରେ ମଧ୍ୟ ପରିବାର ଠିକ୍ ସେହିଭଳି ସମଧିକ ପିତୃକୈନ୍ଦ୍ରିକ ଥିଲା । ପ୍ରତ୍ନତାତ୍ତ୍ୱିକ ଖନନ ଫଳରେ ଏ ପର୍ଯ୍ୟନ୍ତ ଯେତେ ଯେତେ ମୃଣ୍ମୟ ମୋହର-ମାନ ବାହାରିଛି (ପ୍ରାୟ ୪୦୦୦ ସଂଖ୍ୟକ) କିମ୍ବା ଯେତେଗୁଡ଼ିଏ ଚିତ୍ରିତ ମୃଣ୍ମୟ ପାତ୍ରର ଭଗ୍ନାବଶେଷ ବାହାରିଛି, ଆମେ ସେଥିରେ କେବଳ ପୁରୁଷଜାତୀୟ ପଶୁ ପକ୍ଷୀଙ୍କର ଚିତ୍ର-ଗୁଡ଼ିକ ଦେଖିବାକୁ ପାଉଥାଉ । ସେଗୁଡ଼ିକ ହେଲେ ସିଂହ, ବୃଷଭ, ଛାଗ, ମୟୂର ଇତ୍ୟାଦି । ଏଥିରୁ ଅନୁମିତ ହୁଏ ଯେ ସେମାନଙ୍କର ପରିବାର ଥିଲା ପିତୃକୈନ୍ଦ୍ରିକ ଏବଂ ସମାଜ ଥିଲା ପିତୃ-ପ୍ରଧାନ । ଡ଼. ଡ଼. କୋସାମ୍ବୀ ଅବଶ୍ୟ ଏଥିରେ ଭିନ୍ନ ମତ ପୋଷଣ କରନ୍ତି । ତାଙ୍କ ମତରେ ସୈନ୍ଧବ ସମାଜ ନାରୀପ୍ରଧାନ ଥିଲା; କିନ୍ତୁ ସବୁ ମୃଣ୍ମୟ-ପାତ୍ରରେ ପୁରୁଷ ପଶୁମାନଙ୍କର ଚିତ୍ର ଅଙ୍କିତ ହେବା କଥାରୁ ଏହି ସୂଚନା ମିଳୁଛି ଯେ, ଏହି ମୋହରଗୁଡ଼ିକ ବ୍ୟବହାର କରୁଥିବା ବ୍ୟବସାୟୀମାନେ ସେମାନଙ୍କର ନୂତନ ଦେବତା-ତତ୍ତ୍ୱ ଆବିଷ୍କାର କରିଥିଲେ ଏବଂ ତଦନୁଯାୟୀ ସେମାନଙ୍କର ପରିବାର ଓ ସମାଜ ନିୟନ୍ତ୍ରିତ ହେଉଥିଲା । (୧୭) ଏହା କିନ୍ତୁ ଠିକ୍ ବୋଲି ମନେ ହୁଏନାହିଁ । ତାଙ୍କ ମତକୁ ଗ୍ରହଣ କଲେ ସିନ୍ଧୁସଂସ୍କୃତିର ଅଧିବାସୀମାନଙ୍କର ଦୁଇ ପ୍ରକାର ସାମାଜିକ ଓ ଧାର୍ମିକ ବ୍ୟବସ୍ଥା ଥିଲା ବୋଲି ଧରି ନେବାକୁ ହେବ—ଗୋଟିଏ ପିତୃ-ପ୍ରଧାନ ଓ ଅପରଟି ମାତୃ-ପ୍ରଧାନ । ପିତୃ-ପ୍ରଧାନ ସମାଜ ଓ ଧର୍ମଧାରଣା ବ୍ୟବସାୟୀମାନଙ୍କ ମଧ୍ୟରେ ସୀମାବଦ୍ଧ । ଅପର ପକ୍ଷରେ ମାତୃ ପ୍ରଧାନ ସମାଜ ଓ ଧର୍ମ ଧାରଣା ଅନ୍ୟମାନଙ୍କ ମଧ୍ୟରେ ସୀମାବଦ୍ଧ । ଗୋଟିଏ ସ୍ଥାନରେ ଘରକୁ ଘର ଲାଗି ରହିଥିବା ଲୋକମାନଙ୍କ ମଧ୍ୟରେ ଦୁଇ ପ୍ରକାର ସାମାଜିକ, ପାରିବାରିକ ଓ ଧାର୍ମିକ ବ୍ୟବସ୍ଥା ଥିବାର କଥା ସହଜରେ ବିଶ୍ୱାସଯୋଗ୍ୟ ହେଉନାହିଁ । ପୁଂ ପ୍ରଧାନ ଚିତ୍ରମାନ ତ କେବଳ ବ୍ୟବସାୟୀମାନେ ବ୍ୟବହାର କରୁଥିବା ମୃଣ୍ମୟ ମୋହରମାନଙ୍କରେ ସୀମାବଦ୍ଧ ନାହିଁ । ସମସ୍ତେ ବ୍ୟବହାର କରୁଥିବା ମୃଣ୍ମୟ ପାତ୍ରମାନଙ୍କରେ ମଧ୍ୟ ଏହି ଚିତ୍ରମାନ ରହିଛି । ଘରର ଭୂଇଁରୁ ବ୍ୟକ୍ତି ନିର୍ବିଶେଷରେ ଏହି ପ୍ରକାର ଚିତ୍ରିତ ମୃଣ୍ମୟ ପାତ୍ରର ଧ୍ୱଂସାବଶେଷ ମିଳୁଅଛି । ଏହି ସବୁ ପ୍ରମାଣରୁ ଅନୁମିତ ହୁଏ ଯେ କୋସାମ୍ବୀଙ୍କ ମତ ଅସାର ଅଟେ । ଅତଏବ, ସେମାନଙ୍କର ସମାଜ ଥିଲା ପୁଂପ୍ରଧାନ ଓ ପରିବାର ଥିଲା ପିତୃକୈନ୍ଦ୍ରିକ । ପ୍ରାଗୈତିହାସିକ ଯୁଗରୁ ଗଢ଼ି ଆସୁଥିବା ସମାଜର ମାତୃକୈନ୍ଦ୍ରିକ ବ୍ୟବସ୍ଥାକୁ ସେମାନେ ବହୁଦିନରୁ ଅତିକ୍ରମ କରିସାରିଥିଲେ ।

କାରଗରୀ ବିଦ୍ୟାରେ ଏମାନଙ୍କର ଦକ୍ଷତା ତଥା ସିଦ୍ଧହସ୍ତତା ବର୍ତ୍ତମାନ ବିସ୍ମୟଁୟ । ବାସ୍ତବିକ କାରଗରୀ ବିଦ୍ୟା ହିଁ ଯୁଗେ ଯୁଗେ ମାନବ ଗୋଷ୍ଠୀ ବା ସମାଜକୁ ପାରିପାର୍ଶ୍ୱ ଉପରେ ନିୟନ୍ତ୍ରଣ ଜାରି କରିବାକୁ ସାହାଯ୍ୟ କରି ଆସିଛି । ମଣିଷ ନୂତନ ନୂତନ ଉପାୟମାନ ଉଦ୍ଭାବନ କରି ଶିକାର, ଗୃହ ନିର୍ମାଣ, କୃଷି ଓ ପରିବହନ ପ୍ରକ୍ରିୟା ମାଧ୍ୟମରେ ପରିପାର୍ଶ୍ୱକୁ ନିୟନ୍ତ୍ରଣ କରି ଆସିଅଛି । (୧୮) ସିନ୍ଧୁ-ସଂସ୍କୃତିର ଅଧିବାସୀମାନେ ତାହା ହିଁ କରିଥିଲେ । ଯେଉଁ ସବୁ ବସ୍ତୁମାନଙ୍କର ଧ୍ୱଂସାବଶେଷ ବିଭିନ୍ନ ସୈନ୍ଧବ ନଗରମାନଙ୍କରୁ ମିଳୁଛି ତହିଁରୁ ଅନୁମିତ ହେଉଛି ଯେ ଏଠାର ଅଧିବାସୀମାନେ ନିମ୍ନ-ଲିଖିତ ବସ୍ତୁଗୁଡ଼ିକର ପ୍ରସ୍ତୁତି-ପ୍ରକ୍ରିୟା ଜାଣିଥିଲେ ଏବଂ ଏଥିରୁ ଅନେକ ଜିନିଷ ବାହାରକୁ ରପ୍ତାନି କରୁଥିଲେ । (୧୯)

(କ) ଇଟାର ପ୍ରସ୍ତୁତି ଓ ତା'ର ପୋଡ଼ିବା ପ୍ରକ୍ରିୟା;

(ଖ) ଉଭୟ ଘର ତିଆରି ଓ ପକ୍କା ନାଳୀରେ ବ୍ୟବହାର ଲାଗି ମସୃଣ ପଥରର ସ୍ଲାବ୍ ତିଆରି;

(ଗ) ବ୍ୟବସାୟ କିମ୍ବା ଧାର୍ମିକ ଅନୁଷ୍ଠାନମାନଙ୍କରେ ବ୍ୟବହାର ଲାଗି ମୃଣ୍ମୟ ମୋହର ଓ ତହିଁରେ ଚିତ୍ରାଙ୍କନ;

(ଘ) ମୃଣ୍ମୟ ପାତ୍ର ଓ ତହିଁରେ ଚିତ୍ରାଙ୍କନ,

(ଙ) ତମ୍ବା ଓ ବ୍ରୋଞ୍ଜର କାମ କରିବା ସରଞ୍ଜାମ ତଥା ଅସ୍ତ୍ରଶସ୍ତ୍ର,

(ଚ) ତମ୍ବା ଓ ବ୍ରୋଞ୍ଜର ଅଳଙ୍କାର,

(ଛ) ସୁନା ଓ ରୂପାର ଅଳଙ୍କାର ଓ ଅନ୍ୟାନ୍ୟ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ;

(ଜ) ସାବୁନ ପଥରରେ ( Steatite ) ପୋହଳା, କାଚ ଓ ବାହୁଟି ଇତ୍ୟାଦି ତିଆରି ଓ ସେଗୁଡ଼ିକ ଚକ୍ ଚକ୍ କରିବା ଲାଗି ଏକ ମୃତ୍ତିକାର ଲେପ ତିଆରି;

(ଝ) କ୍ଷାର ଜାତୀୟ ପ୍ରଲେପ ଦେଇ ଉପଯୁକ୍ତ ତାପ ଦେଇ ଧଳା ପୋହଳା ତିଆରି;

(ଞ) ଅର୍ଦ୍ଧ ମୂଲ୍ୟବାନ ପଥର ଓ ପୋହଳାରେ ମାଳି ତିଆରି ( ୨୦ ) ଏବଂ

(ଟ) ଘୋଡ଼ା, ଗାଈ, ଗଣ୍ଡା, ବିଭିନ୍ନ ପକ୍ଷୀ, ଶଗଡ଼ ଇତ୍ୟାଦିର ମୃଣ୍ମୟ ଖେଳଣା ତିଆରି ।

ମହେଞ୍ଜୋଦାରୋଠାରେ ଅସମ୍ପୂର୍ଣ୍ଣ ଅବସ୍ଥାରେ ଗୋଟିଏ ବ୍ରୋଞ୍ଜ ନିର୍ମିତ ୧୦.୨ ସେ.ମି ବିଶିଷ୍ଟ ନର୍ତ୍ତକୀ ମୂର୍ତ୍ତି ମିଳିଛି, ଯହିଁରୁ ଜଣାଯାଏ ଯେ ବ୍ରୋଞ୍ଜ ଧାତୁର ମୂର୍ତ୍ତି ତିଆରି କୌଶଳରେ

ସେମାନେ କଳାତ୍ମକ ପରାକାଷ୍ଠା ହାସଲ କରି ପାରିଥିଲେ । ହରପ୍ପାରେ ସେହିପରି ୧୦ସେ.ମି. ବିଶିଷ୍ଟ ଗୋଟିଏ ଅର୍ଦ୍ଧଭଗ୍ନ ମୃଣ୍ମୟ ନର୍ତ୍ତକୀ ମୂର୍ତ୍ତି ମିଳିଛି, ଯହିଁରୁ ଏମାନଙ୍କର ମୃଣ୍ମୟ ମୂର୍ତ୍ତି ତଥା ଅନ୍ୟାନ୍ୟ ବସ୍ତୁମାନଙ୍କର ନିର୍ମାଣ-କୌଶଳ ବିଷୟରେ ସମଧିକ ପରିଚୟ ମିଳିଥାଏ । ମୃଣ୍ମୟ ମୂର୍ତ୍ତିଟିର ପୁଷ୍କଳ କବରୀ ସଜ୍ଜାରୁ ଜଣାଯାଏ ଯେ ନାରୀମାନଙ୍କ ମଧ୍ୟରେ କେଶ-ସଜ୍ଜାର ଆଦର୍ଶ ଶୈଳୀ ତଥା ସୂକ୍ଷ୍ମାତିସୂକ୍ଷ୍ମ ପଟୁତା ରହିଥିଲା । ଏହା ଫଳରେ ଏ ଭାରତ ଭୂମିରେ ପରବର୍ତ୍ତୀ କାଳରେ ଆକର୍ଷଣୀୟ ବହୁ ପ୍ରକାର କେଶ-ବନ୍ଧନ ଶୈଳୀର ପ୍ରବର୍ତ୍ତନ ହୋଇଥିଲା, ଯାହାର ପ୍ରମାଣ ଆମେ ପ୍ରାଚୀନ ସାହିତ୍ୟରୁ ତଥା ମନ୍ଦିର-ଗାତ୍ର ଓ ଅନ୍ୟତ୍ର ଆବିଷ୍କୃତ ବହୁ ମୂର୍ତ୍ତିମାନଙ୍କରୁ ଦେଖିବାକୁ ପାଇଥାଉଁ । ଏହି ବ୍ରୋଞ୍ଜ ନିର୍ମିତ ନର୍ତ୍ତକୀଟି ବକ୍ଷସ୍ପର୍ଶୀ ହାରପରିହିତା । ତା'ର ଦକ୍ଷିଣ ହସ୍ତଟି କଙ୍କଣ ଓ ବାହୁ-ବନ୍ଧରେ ଭୂଷିତ ହୋଇ ନୃତ୍ୟ ମୁଦ୍ରାର ଶୋଭନୀୟ ଭାବରେ କଟିଲଗ୍ନ ହୋଇଛି । ବାମ ହସ୍ତଟିରେ ସ୍କନ୍ଧ-ମୂଳରୁ ବିଭିନ୍ନ ଅଳଙ୍କାର ହସ୍ତ ସାରା ସୁଶୋଭିତ । ସାମାନ୍ୟ ଉତ୍ତୋଳିତ ବାମ-ଜାନୁ ଉପରେ ଏହି ପ୍ରସାରିତ ଦକ୍ଷିଣ କରଟି ସ୍ଥାପିତ । ପୁଣି ଏ ଦକ୍ଷିଣ କରରେ ଗୋଟିଏ ପାତ୍ର ସଂସ୍ଥାପିତ । ଏ ପାତ୍ରଟି କ'ଣ ହୋଇପାରେ ତାହା ବାସ୍ତବିକ ଏକ କୌତୂହଳୋଦ୍ଦୀପକ ପ୍ରଶ୍ନ । ଏହା ଯେ ଏକ ମଦ୍ୟର (ସୋମରସ ?) ପାତ୍ର ହୋଇନଥିବ ସେ କଥା କହି ହେବନାହିଁ । ଏ ନାରୀ ମୂର୍ତ୍ତିଟି ବାମ ଜାନୁକୁ ଟିକେ ଉତ୍ତୋଳିତ କରି, ପୁଣି ତାକୁ ବହୁ ଆଭରଣ ମଣ୍ଡିତ ବାମ ହସ୍ତରେ ପାତ୍ରଟି ଧରି ସ୍ପର୍ଶ କରିବାରେ ଏ ନାରୀ ମୂର୍ତ୍ତିଟିର ବାମାଙ୍ଗୀ ଭାବ ସୂଚିତ ହେଉଛି ଏବଂ ଏ ନୃତ୍ୟର ଭଙ୍ଗୀଟି ଏକ ଲୋଭନୀୟ ଓ ଶୋଭନୀୟ କାମୋଦ୍ଦୀପକ ପ୍ରକଟିତ କରାଉଛି । କେହି କେହି ଗବେଷକ ଏହାକୁ ଏକ ଦେବୀ ମୂର୍ତ୍ତି ଓ ହାତରେ ଧରିଥିବା ପାତ୍ରଟିରେ ଭକ୍ତଜନ ଲାଗି ଆଶୀର୍ବାଦର (ଅମୃତ ?) ଧାରାର ନିଦର୍ଶନ ଦିଆଯାଉଥିବାର ମତବ୍ୟକ୍ତ କରନ୍ତି । କିନ୍ତୁ ଏ ମତ ଗ୍ରହଣ କରିବାରେ ଏକ ମୌଳିକ ଅସୁବିଧା ରହିଅଛି । ଏହା ଦେବୀମୂର୍ତ୍ତି ହୋଇଥିଲେ ଏଭଳି ନୃତ୍ୟ-ଭଙ୍ଗୀରେ କାହିଁକି ଦଣ୍ଡାୟମାନ ହୋଇଥାଆନ୍ତା ? ପୁଣି ଆଶୀର୍ବାଦର ମୁଦ୍ରାରେ ଦକ୍ଷିଣ ହସ୍ତ କାହିଁକି ଉତ୍ତୋଳିତ କରି ନଥାନ୍ତା ? ବାମ ହସ୍ତଟି ଟିକେ ଉତ୍ତୋଳିତ ବାମ-ଜାନୁକୁ କାହିଁକି ସ୍ପର୍ଶ କରୁଥାଆନ୍ତା ? ଏଣିଥିରୁ ଅନୁମିତ, ଏହା ନିଶ୍ଚିତ ଏକ ନୃତ୍ୟରତା ନାରୀର ମୂର୍ତ୍ତି । ଏ ନାରୀ ନୃତ୍ୟର ତାଳେ ତାଳେ ଉପଭୋକ୍ତା ପୁରୁଷକୁ ମଦିରା (ସୋମରସ ?) ପରିବେଷଣ କରିଯାଉଛି । ହରପ୍ପ ସ୍ଥିତ ମୃଣ୍ମୟ ନର୍ତ୍ତକୀ-ମୂର୍ତ୍ତିଟି ଏ ପ୍ରମାଣକୁ ଆହୁରି ଦୃଢ଼ତର କରୁଅଛି ।

ଏମାନଙ୍କର ଧର୍ମଧାରଣା ବିଷୟରେ ମଧ୍ୟ ସେହିଭଳି ବହୁ କୌତୂହଳୋଦ୍ଦୀପକ ତଥ୍ୟମାନ ରହିଛି । ଏମାନେ ଯେ 'ଅଗ୍ନିଦେବ'ଙ୍କର ପୂଜା କରୁଥିଲେ ଏହାର ଭୂରିଭୂରି ପ୍ରମାଣ ମିଳୁଥିବା ଧ୍ୱଂସାବଶେଷମାନଙ୍କରେ ଆମେ ଏବେ ଦେଖିବାକୁ

ପାଇଥାଉଁ । ବହୁ ମୃଣ୍ମୟ ମୋହରମାନଙ୍କରେ ଅଗ୍ନିଙ୍କର ନାମ ଓ ବିଭୂତି ଲେଖାଯାଇଅଛି ବୋଲି ଏଗୁଡ଼ିକର ପାଠୋଦ୍ଧାର କରି ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱବିଦ୍ ଏସ୍. ଆର୍. ରାଓ ପ୍ରମାଣ କରିଛନ୍ତି । ସୈନ୍ଧବ ନଗରମାନଙ୍କର ବୃହଦାକାର ସ୍ତୂପର ଧ୍ୱଂସାବଶେଷରୁ (Citadel mound) ଯଜ୍ଞକୁଣ୍ଡର ଚିହ୍ନ ମିଳୁଛି । ଗୋଟିଏ ମୃଣ୍ମୟ ମୋହରରୁ ସାତ ଜଣ ପୁରୋହିତ (ସପ୍ତହୋତାରଃ) ଯଜମାନଙ୍କୁ ଯଜ୍ଞରେ ସାହାଯ୍ୟ କରିବା ଓ ଯଜମାନ ଯଜ୍ଞପଶୁକୁ ଟାଣି ଟାଣି ନେଉଥିବାର ଚିହ୍ନ ଅଙ୍କିତ ହୋଇଥିବାର ସେ ମହାଶୟ ଅର୍ଥ କରିଛନ୍ତି ଏବଂ ଏଥିରେ ବୈଦିକ ପ୍ରଭାବ (ସପ୍ତହୋତାରଃ ସପ୍ତଧା ତ୍ୱା ଯଜନ୍ତି=ସାତଟି ହୋତା ସାତ ପ୍ରକାର ତୁମକୁ ପୂଜା କରନ୍ତି (ଋଗ୍‌ବେଦ : ୧।୯।୪୪) ରହିଅଛି ବୋଲି ସେ କହିଛନ୍ତି । (୨୧) ଲେଖକ ମଧ୍ୟ ଝଙ୍କାରରେ ପ୍ରକାଶିତ ପୂର୍ବକଥିତ ପ୍ରବନ୍ଧରେ ଏମାନଙ୍କର ଅଗ୍ନିପୂଜା ତଥା ବୈଦିକ ପୂଜା-ପଦ୍ଧତି ଓ ଧର୍ମ-ଧାରଣା ବିଷୟକ ସାମ୍ୟ କଥା ଟିକିନିଖି ଆଲୋଚନା କରିଅଛନ୍ତି । (୨୨) ଏଥିରୁ ପ୍ରମାଣିତ ହେବ ଯେ ଏମାନେ ଅଗ୍ନିପୂଜକ ଥିଲେ । ଗୋଟିଏ ମୃଣ୍ମୟ ମୋହରରେ ପଶୁପରିବେଷ୍ଟିତ ଯେଉଁ ଦେବତାଙ୍କର ଚିହ୍ନ ବାହାରିଛି, ଏବଂ ଯାହାକୁ କି ବହୁ ଗବେଷକ 'ପଶୁପତି ଶିବ' ବୋଲି କୁହନ୍ତି, ତାହା ପ୍ରକୃତରେ 'ଶିବ' ନୁହନ୍ତି । ଅନ୍ୟ ପକ୍ଷରେ ତାହା ହେଉଛନ୍ତି ଅଗ୍ନିଦେବ । କାରଣ 'ଶତପଥ ବ୍ରାହ୍ମଣ' ମତରେ ଅଗ୍ନିଙ୍କର ନାମମାନଙ୍କ ମଧ୍ୟରୁ 'ପଶୁପତି' ନାମଟି ମଧ୍ୟ ଅନ୍ୟତମ ।

ଅଗ୍ନିଦେବଙ୍କ ଛଡ଼ା ଏମାନେ ମଧ୍ୟ ଏକ 'ମହାନାରୀଶକ୍ତି' ବା 'ପ୍ରଜନନଶକ୍ତି'ର ଆରାଧନା କରୁଥିଲେ । ଏହି ଶକ୍ତିକୁ ଆମେ 'ଆଦ୍ୟମାତା' ବା 'ଦେବୀ' ବା ସେହି ଅର୍ଥରେ ଯାହା ବି କହିପାରୁଁ । ଏହି ମହାଶକ୍ତିର ସଙ୍କେତ ମଧ୍ୟ ଋଗ୍‌ବେଦୋକ୍ତ 'ଦେବୀସୂକ୍ତ'ରେ ଆମେ ଦେଖିବାକୁ ପାଇଥାଉଁ, ଯହିଁରେ ଏହି ମହାଶକ୍ତିର ଆଧାର ଦେବୀ କହୁଛନ୍ତି "ଅହଂ ରୁଦ୍ରେଭିଃ ବସୁଭିଃ ଚରାମି" ଅର୍ଥାତ୍ "ମୁଁ ସକଳ ରୁଦ୍ର, ସକଳ ବସୁ ବା ଧନ ମଧ୍ୟରେ ବିଦ୍ୟମାନ" । ମହେଞ୍ଜୋଦାରୋରୁ ମିଳିଥିବା ଏକ ବିରାଟ ପୁଷ୍କରିଣୀର (୨୩' × ୩୯' × ୮') ଧ୍ୱଂସାବଶେଷରୁ ଏ ପ୍ରକାର ମହାନାରୀଶକ୍ତିର ଆରାଧନା ବିଷୟରେ ସୂଚନା ମିଳୁଛି ବୋଲି କୋଶାମ୍ବୀ ମହାଶୟ ମତ ଦେଇଛନ୍ତି । (୨୩) ଏହି ପୋଖରୀଟି ପୋଡ଼ା ଇଟାରେ ତିଆରି । ଏହାକୁ କେହି କେହି ଗବେଷକ ସର୍ବସାଧାରଣ ପୁଷ୍କରିଣୀ ବୋଲି କହିଥାନ୍ତି । ସେମାନଙ୍କ ମତରେ ନଗରବାସୀ ସମସ୍ତେ ଏଠାରେ ସ୍ନାନ କରୁଥିଲେ । ପୋଖରୀ ବୁଢ଼ାରେ ଯେଉଁ ଛୋଟ ଛୋଟ ଘରଟିମାନ ଅଛି, ତାକୁ ସେମାନେ ସ୍ନାନାଗାର ( Bath room ) ବୋଲି କହନ୍ତି । ପୂର୍ବ କଥିତ ମତେ କୋଶାମ୍ବୀ ମହାଶୟ କିନ୍ତୁ ଭିନ୍ନ ମତ ପୋଷଣ କରନ୍ତି । ତାଙ୍କ ମତରେ ଏହା ଥିଲା 'ମହାନାରୀଶକ୍ତି' ବା 'ପ୍ରଜନନ-ଶକ୍ତି'ର ଆରାଧନା-ସ୍ଥଳୀ । ଏଠାରେ କେତେକ ସୁନ୍ଦରୀନାରୀ ରହୁଥିଲେ, ଯେଉଁମାନେ କି ଏହି 'ମହାନାରୀ ଶକ୍ତି'ର ପ୍ରତୀକ ବୋଲି ଗଣ୍ୟା ହେଉଥିଲେ । ଏମାନଙ୍କର ବିଚରଣ କ୍ଷେତ୍ର ଥିଲା ପୁଷ୍କରିଣୀ

ଜଳ ବା ଅପ; ଏଣୁ ଏମାନଙ୍କୁ କୁହାଯାଉଥିଲା 'ଅପ୍‌ସରା' । ବାସ୍ତବିକ, ଭାରତୀୟ ସଂସ୍କୃତି ଓ ସାହିତ୍ୟରେ 'ଅପ୍‌ସରା' ଶବ୍ଦର ଭିତ୍ତିଭୂମି ଅଛି ଏଇଠି । ଧର୍ମପ୍ରାଣ ଜନତା ପୁଷ୍କରଣୀଟିରେ ସ୍ନାନ କରି ଏହି ରମଣୀମାନଙ୍କ ସହିତ ପବିତ୍ର ପ୍ରଜନନ ପ୍ରକ୍ରିୟାରେ ଲିପ୍ତ ରହୁଥିଲେ । ଏହା ଥିଲା ସେମାନଙ୍କ ଲାଗି ଏକ ଧାର୍ମିକ କର୍ମବିଧି । ବାସ୍ତବିକ, କହିବାକୁ ଗଲେ ଏହି ପ୍ରକାର ଧାର୍ମିକ କର୍ମବିଧି ହିଁ ପରବର୍ତ୍ତୀ କାଳରେ 'ଦେବଦାସୀ ପ୍ରଥା'କୁ ଜନ୍ମ ଦେଇଥିଲା । ଏ ପ୍ରକାର ଧାର୍ମିକ ପ୍ରଜନନ କର୍ମବିଧି ଦାକ୍ଷିଣାତ୍ୟରେ ଦେବାଳୟ-ମାନଙ୍କରେ ଖ୍ରୀଷ୍ଟପର ବହୁ ଶତାବ୍ଦୀଯାଏ ମଧ୍ୟ ଚାଲିଥିଲା । (୨୪) କୋଶାମ୍ବୀ ଏହାକୁ "ପୁଷ୍କର" ବୋଲି କହିଛନ୍ତି ଏବଂ ଏହି 'ପୁଷ୍କର' ଶବ୍ଦରୁ ପରେ 'ପୁଷ୍କରଣୀ' ଶବ୍ଦର ଉଦ୍ଭବ ହୋଇଛି ବୋଲି ମତ ଦେଇଛନ୍ତି । ଆହୁ ସେ ମତ ଦେଇଛନ୍ତି ଯେ ଏହି ପରମ୍ପରାକୁ ପୃଷ୍ଠଭୂମିରେ ରଖି ପରବର୍ତ୍ତୀ କାଳରେ ଦେବାଳୟମାନଙ୍କ ପାଖେ ପାଖେ ପୁଷ୍କରଣୀମାନ ଖନନ କରା-ଯାଇଥିଲା । ଏହି 'ମହାନାସା ଶକ୍ତି'ର ଆରାଧନା ବାସ୍ତବିକ ପରବର୍ତ୍ତୀ ଯୁଗରେ ଭାରତୀୟ ତନ୍ତ୍ର-ଚର୍ଯ୍ୟା, ବିଶେଷ କରି ବୌଦ୍ଧ ତନ୍ତ୍ରଚର୍ଯ୍ୟା ଉପରେ ଖୁବ୍ ପ୍ରଭାବ ପକାଇ ଥିବାର ମନେହୁଏ । ବାସ୍ତବିକ, ବୌଦ୍ଧତନ୍ତ୍ରରେ ସ୍ତ୍ରୀ ଜନନେନ୍ଦ୍ରିୟକୁ ଯେଉଁ 'ପଦ୍ମ' ଆଖ୍ୟା ଦିଆଯାଇଅଛି ତାହା ଏ ସମ୍ପର୍କରେ ବିଶେଷ ପ୍ରଣିଧାନଯୋଗ୍ୟ ।

ଏହି ଅପ୍‌ସରା-ସେବିତ 'ପୁଷ୍କର' ତୀର୍ଥ ସହିତ ଋଗ୍‌ବେଦ ବର୍ଣ୍ଣିତ ଗୋଟିଏ କାହାଣୀର ସମ୍ପର୍କ ଥିବାର ମନେହୁଏ । ତାହା ହେଉଛି ପୁରୁରବା-ଉର୍ବଶୀ କାହାଣୀ ଯାହା ଉପରେ ଭିତ୍ତି କରି ପରବର୍ତ୍ତୀ କାଳରେ ମହାକବି କାଳିଦାସ 'ବିକ୍ରମୋର୍ବଶୀୟମ୍' ନାଟକ ରଚନା କରିଥିଲେ । ଋଗ୍‌ବେଦ ବର୍ଣ୍ଣିତ କଥା ଅନୁଯାୟୀ ପୁରୁବଂଶର ରାଜା ପୁରୁରବା ଉର୍ବଶୀ ନାମ୍ନୀ ଅପସରାଙ୍କ ପ୍ରେମରେ ପଡ଼ିଗଲେ ଏବଂ ତାଙ୍କୁ ପରେ ବିବାହ କଲେ । ଉର୍ବଶୀ କିନ୍ତୁ ଏଥିରେ ଗୋଟିଏ ସର୍ତ୍ତ ରଖିଲେ । ସର୍ତ୍ତଟି ହେଲା, ତାଙ୍କର ପ୍ରିୟ ମେଷ ଶାବକଟିକୁ ସେ ରାଜାଙ୍କ ଶୟନାଗାରରେ ବାନ୍ଧି କରି ରଖିବେ ଏବଂ ଏଥିରେ ପୁରୁରବା ପ୍ରତିବାଦ କରିବେ ନାହିଁ । ଯେଉଁଦିନ ସେ ଏହାର ପ୍ରତିବାଦ କରିବେ, ସେହି ଦିନ ଉର୍ବଶୀ ତାଙ୍କୁ ଛାଡ଼ିଯିବେ । କାମାନ୍ଧ ପୁରୁରବା ଏଥିରେ ହଁ ଭରିଥିଲେ । କିନ୍ତୁ କିଛିକାଳ ପରେ ସେ ଏଥିରେ ପ୍ରତିବାଦ କରିବାରୁ ଉର୍ବଶୀ ତାଙ୍କୁ ପରିତ୍ୟାଗ କରିଥିଲେ । ପୁରୁବଂଶର ଜଣେ ରାଜା (ପୁରୁରବା ହୋଇପାରନ୍ତି) ଆଧୁନିକ ରାଭି ନଦୀର ତୀରବର୍ତ୍ତୀ 'ହରିୟୁପିଆ' ( ଆଧୁନିକ ହରପ୍ପା ) ନଗରୀଟିକୁ ଧ୍ୱଂସ କରିଦେଇଥିଲେ ଏବଂ ସେ ଧ୍ୱଂସ ସାଧନରେ 'ଅଗ୍ନିଦେବ' ତାଙ୍କୁ ସାହାଯ୍ୟ କରିଥିଲେ ବୋଲି ଋଗ୍‌ବେଦରେ ବର୍ଣ୍ଣନା ରହିଅଛି । 'ହରିୟୁପିଆ'ଠାରେ ମଧ୍ୟ ମହେଞ୍ଜୋଦାରୋ ଭଳି ସେତେବେଳେ ପୁଷ୍କର ତୀର୍ଥରେ ମହାନାସା ଶକ୍ତିର ଆରାଧନା କରାଯାଉଥିବ ଏବଂ ସେଠାରେ ମଧ୍ୟ ବହୁ ସୁନ୍ଦରୀ ଅପ୍‌ସରାମାନେ ଥିବେ । ବିଜୟୀ ରାଜା ପୁରୁରବା ହୁଏତ ସେହି ସୁନ୍ଦରୀ ଅପ୍‌ସରା-

ମାନଙ୍କ ମଧ୍ୟରୁ ଉର୍ବଶୀନାମ୍ନୀ ଜନୈକା ଅପସରାଙ୍କୁ ନିଜର ଅଙ୍କଶାୟିନୀ ହେବାକୁ ଚାହିଁଥିବେ । ଉର୍ବଶୀ ହୁଏତ ଯେଉଁ ଗୋଷ୍ଠୀରେ ଜନ୍ମ ନେଇଥିବେ, ସେ ଗୋଷ୍ଠୀ ମେଷ-ସଙ୍କେତ ମାଧ୍ୟମରେ ଗୋଷ୍ଠୀ-ଦେବତାଙ୍କୁ ଆରାଧନା କରୁଥିବେ । କାମାନ୍ଧ ପୁରୂରବାଙ୍କର ଦୁର୍ବଳତାର ସୁଯୋଗ ନେଇ ହୁଏତ ଉର୍ବଶୀ ସ୍ୱଧର୍ମର ରକ୍ଷା ତଥା ସାର୍ଥକତା ପ୍ରତିପାଦନ ଲାଗି ରାଜଭବନରେ ମେଷ-ଦେବତାଙ୍କର ଆରାଧନା ଲାଗି ରାଜାଙ୍କୁ ରାଜି କରାଇ ଦେଇଥିବେ । ପରେ ହୁଏତ କିଛି ସାମାଜିକ ଅଥବା ଧାର୍ମିକ ଦ୍ୱନ୍ଦ୍ୱ ଉପୁଜିଥିବ, ଯାହା ଫଳରେ କି ପୁରୂରବା ବାଧ୍ୟ ହୋଇଥିବେ ଏ ପ୍ରକାର ଆରାଧନାର ପ୍ରତିବାଦ କରିବାକୁ ଏବଂ ଏହି ପ୍ରତିବାଦ ଫଳରେ ଉର୍ବଶୀ ରାଜ-ଭବନ ଛାଡ଼ି ଚାଲି ଯାଇଥିବେ । ଅତଏବ, ଉପରୋକ୍ତ ତଥ୍ୟଗୁଡ଼ିକରୁ ଏହି ପ୍ରମାଣ ମିଳୁଛି ଯେ ସିନ୍ଧୁ ସଂସ୍କୃତିର ଅଧିବାସୀମାନେ 'ମହାନାରୀ ଶକ୍ତି' ବା 'ପ୍ରଜନନ ଶକ୍ତି'ର ଆରାଧନା କରୁଥିଲେ ଏବଂ ଏ ପ୍ରକାର ଆରାଧନା ପଦ୍ଧତି 'ପୁଷ୍କର' ଅର୍ଥରେ କରାଯାଉଥିଲା । ଏ ପ୍ରକାର ସମ୍ଭୋଗନିଷ୍ଠ ଧାର୍ମିକ କର୍ମବିଧିର ସ୍ରଷ୍ଟା ଥିଲେ ପୂର୍ବକଥିତ ଚନ୍ଦ୍ରର ପୁରୋହିତ ଗୋଷ୍ଠୀ । ଏହି ଚନ୍ଦ୍ରର ଗୋଷ୍ଠୀର ତୁଷ୍ଟି ସାଧନ ଲାଗି ଏହି ଅନୁଷ୍ଠାନଟିର ଉଦ୍ଭବ ହୁଏତ ହୋଇଥାଇ ପାରେ ।

ହରପ୍ପାରେ ୯.୩ ସେ.ମି ଉଚ୍ଚର ଗୋଟିଏ ଛିନ୍ନମସ୍ତା ଅର୍ଦ୍ଧଭଗ୍ନ ଉଲଗ୍ନ ପ୍ରସ୍ତର ମୂର୍ତ୍ତି ବାହାରିଛି, ଯାହାକୁ ନେଇ ଗବେଷକମାନେ ସିନ୍ଧୁ-ସଂସ୍କୃତିର ଅଧିବାସୀ-ମାନଙ୍କ ଧର୍ମଧାରଣା ସମ୍ପର୍କରେ କେତେକ କୌତୂହଳପୂର୍ଣ୍ଣ ମତପୋଷଣ କରିଥାନ୍ତି । ସେମାନଙ୍କ ମତରେ, ଭାରତର ପ୍ରାଚୀନତମ ଜୈନଧର୍ମର ଅଭ୍ୟୁଦ୍‌ଗମ ହୋଇଥିଲା ଏହି ସିନ୍ଧୁ ସଭ୍ୟତାରେ । ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥାର ଟି. ଏମ୍ ରାମଚନ୍ଦ୍ରନଙ୍କ ମତରେ ଏହି ମୂର୍ତ୍ତିଟି ହେଉଛି ଏକ ଜୈନ ତୀର୍ଥଙ୍କରଙ୍କ ମୂର୍ତ୍ତି ଏବଂ ସେ କାୟୋତ୍ସର୍ଗ ଭଙ୍ଗୀରେ ଠିଆ ହୋଇଛନ୍ତି । (୨୫) ଜୈନମାନଙ୍କର ପ୍ରଥମ ତୀର୍ଥଙ୍କର ଋଷଭନାଥ (ବା ବୃଷଭ) ଓ ସିନ୍ଧୁ-ସଂସ୍କୃତିର ଧ୍ୱଂସାବଶେଷମାନଙ୍କରୁ ପୁଷ୍କଳ ବୃଷଭ ଚିତ୍ରର ଆବିଷ୍କାର ଏ ପ୍ରକାର ମତକୁ ଦୃଢ଼ୀଭୂତ କରୁଥିବା ପରି ମନେହୁଏ । ଏହି ଉଲଗ୍ନ ମୂର୍ତ୍ତିଟିର ପାଟନାସ୍ଥ ଲୋହାନୀପୁରଠାରେ ମିଳିଥିବା ଜୈନ ତୀର୍ଥଙ୍କର ମୂର୍ତ୍ତି ସହିତ ସାମ୍ୟ ରହିଛି ବୋଲି ଭି.ଜି. ନାୟାର ଦେଇଥିବା ମତ ମଧ୍ୟ ଏ ସମ୍ପର୍କରେ ବିଶେଷ ପ୍ରଣିଧାନଯୋଗ୍ୟ । ସେ ହରପ୍ପାର ଏହି ମୂର୍ତ୍ତିଟିକୁ ଜୈନ ତୀର୍ଥଙ୍କରଙ୍କର ମୂର୍ତ୍ତି ବୋଲି ପରିଷ୍କାର ଭାବରେ ମତ ପ୍ରକାଶ କରିଛନ୍ତି । (୨୬) ଯଦି ଏହି ମତକୁ ଗ୍ରହଣ କରାଯାଏ, ତେବେ ସିନ୍ଧୁ-ସଂସ୍କୃତିରେ ଆଦି ଜୈନଧର୍ମର ସବିଶେଷ ପ୍ରଭାବ ପଡ଼ିଥିଲା ବୋଲି ଗ୍ରହଣ କରିବାକୁ ହେବ । ତା'ହେଲେ ଏ ସଂସ୍କୃତିର ଅଧିବାସୀମାନେ ନିଶ୍ଚିତ ଭାବରେ ଅହିଂସାବାଦୀ ଥିବେ । ବେଦରେ

ବର୍ଣ୍ଣିତ "ଅଜୈକପାଦ" ଯଜ୍ଞମନ୍ତ୍ରର ଅର୍ଥ ସମ୍ପର୍କରେ ଦିଆଯାଇଥିବା କାହାଣୀରୁ ଅହିଂସ ଯଜ୍ଞ ଯେ ପ୍ରକୃତ ବେଦ-ନିର୍ଦ୍ଦିଷ୍ଟ ଯଜ୍ଞ ତାହାର ସୂଚନା ମିଳେ । ଅନ୍ୟ ପକ୍ଷରେ ପଶୁ-ବଳି ଦେଇ ଯଜ୍ଞ ସାଧନ କରିବା ଯଜ୍ଞର ତାତ୍ତ୍ୱିକ ଅର୍ଥ ଓ ଉଦ୍ଦେଶ୍ୟର ପରିପନ୍ଥୀ ଅଟେ । (୨୭) ଛାନ୍ଦୋଗ୍ୟ ଉପନିଷଦରେ ଘୋର ଅଙ୍ଗୀରସ ମୁନି ଦେବକୀ-ନନ୍ଦନ କୃଷ୍ଣଙ୍କୁ ଯେଉଁ ଅହିଂସ-ଯଜ୍ଞ କଥା ଶିକ୍ଷା ଦେଇଥିଲେ ଏବଂ ଶ୍ରୀକୃଷ୍ଣ ଭଗବଦ୍‌ଗୀତାରେ ଯେଉଁ ଅହିଂସ-ଯଜ୍ଞ କଥା ଅର୍ଜ୍ଜୁନଙ୍କୁ ଶିକ୍ଷା ଦେଇଥିଲେ ଏହା ପାରମ୍ପରିକ ବୈଦିକ ଅହିଂସ ଯୁକ୍ତ ସହିତ ତୁଳନୀୟ ଅଟେ । (୨୮) ଏହିସବୁ ଅହିଂସାତତ୍ତ୍ୱର ଜନନୀ ଯେ ସିନ୍ଧୁ-ସଂସ୍କୃତି ହୋଇ ନଥିବ ଏକଥା କୁହାଯାଇ ପାରିବ ନାହିଁ । ସିନ୍ଧୁ-ସଂସ୍କୃତିର ଅଧିବାସୀ ଯିଏ ହୋଇଥା'ନ୍ତୁ ନା କାହିଁକି, ସେମାନେ ଯେ ମୁଖ୍ୟତଃ ଏକ ଶାନ୍ତିପୂର୍ଣ୍ଣ ଅହିଂସ ଜୀବନଯାପନ କରୁଥିଲେ ଏକଥା ଉକ୍ତ ସଭ୍ୟତାର ଧ୍ୱଂସାବଶେଷରେ ଶତ୍ରୁ-ମାରଣ କିମ୍ବା ଜୀବ-ମାରଣ ପାଇଁ ଫଳପ୍ରଦ ଅସ୍ତ୍ରଶସ୍ତ୍ରର ଅଭାବ ସମ୍ୟକ୍ ସୂଚନା ଦେଉଛି ।

କେବଳ ଅହିଂସା ନୁହେଁ, ଜୈନ-ଧର୍ମର ଅନ୍ୟ ଏକ ପ୍ରଧାନ ଉପାଦାନ 'ଅସ୍ତେୟ' ମଧ୍ୟ ସେମାନେ ଅଭ୍ୟାସ କରୁଥିଲେ । ହରପ୍ପା ନଗର-ଗୃହଗୁଡ଼ିକର ଧ୍ୱଂସାବଶେଷରୁ ଜଣାଯାଏ ଯେ ସେଗୁଡ଼ିକରେ କବାଟ ଲାଗିନଥିଲା । ଏଥିରୁ ଅନୁମାନ କରାଯାଏ ଯେ ଚୋରଙ୍କର ଭୟ ସେ ସମାଜ ମଧ୍ୟରେ ବୋଧହୁଏ ନଥିଲା । ଚୋର ଯେତେବେଳେ ନଥିଲେ, ସେତେବେଳେ ସେମାନଙ୍କୁ ଦମନ କରିବା ପାଇଁ ହିଂସାତ୍ମକ ପୋଲିସ-ଶାସନ ମଧ୍ୟ ନଥିବ । ଲୋକମାନେ ସମ୍ଭବତଃ ଅପରାଧବର୍ଜିତ, ନିରୁପଦ୍ରବ ଓ ଶାନ୍ତିପୂର୍ଣ୍ଣ ଜୀବନଯାପନ କରୁଥିବେ ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ଜଣାପଡ଼ୁଛି ଯେ ଏ ସଂସ୍କୃତିର ଅଧିବାସୀମାନେ ଅଗ୍ନିଦେବ, ମହାନାରୀଶକ୍ତି ତଥା ବିଭିନ୍ନ ଦେବଦେବୀମାନଙ୍କର ପ୍ରତୀକ ପଶୁମାନଙ୍କୁ ଆରାଧନା କରୁଥିଲେ । ଏମାନଙ୍କର ନିର୍ଦ୍ଦିଷ୍ଟ ଦେବତା ତେବେ କିଏ ଥିଲେ ? ଏକ ଥିଲେ ନା ବହୁ ଥିଲେ ? ଏ ନିଶ୍ଚିତ ଭାବରେ ଏକ କୌତୂହଳୋଦ୍ଦୀପକ ପ୍ରଶ୍ନ । ବୈଦିକ ଆର୍ଯ୍ୟମାନଙ୍କ ବିଷୟରେ ମଧ୍ୟ ଠିକ୍ ଅନୁରୂପ ପ୍ରଶ୍ନ ଉଠିଥାଏ । ତାହାର ସମୁଚିତ ଉତ୍ତର ଆମେ ପାଇପାରିବା ଋଗ୍‌ବେଦୀୟ ଋଷିଙ୍କର ନିମ୍ନୋକ୍ତ ପଙ୍‌କ୍ତିରୁ :

ଏକଂ ସଦ୍‌ବିପ୍ରାଃ ବହୁଧା ବଦନ୍ତି
ଅଗ୍ନିଂ ବରୁଣଂ ମାତରିଶ୍ୱାନମାହୁ ।

ଅର୍ଥାତ୍ ସେହି ଏକଙ୍କୁ ପଣ୍ଡିତମାନେ ବହୁପ୍ରକାର କହୁଥା'ନ୍ତି । କିଏ କହନ୍ତି

ଅଗ୍ନି, କିଏ କହନ୍ତି ବରୁଣ; ଆଉ କିଏ ବା କହନ୍ତି ମାତରିଶ୍ୱା । ବହୁତ୍ୱରେ ଏକତ୍ୱର ସନ୍ଧାନ ବିଷୟକ ଏହି ଯେଉଁ ବୈଦିକ ଚିନ୍ତାଧାରା, ଏହା ସମଧିକ ଭାବରେ ସୈନ୍ଧବ ସଂସ୍କୃତିର ଧାର୍ମିକ ଚିନ୍ତାଧାରା ପାଇଁ ପ୍ରଯୁଜ୍ୟ । ବାସ୍ତବିକ, ସିନ୍ଧୁ-ସଂସ୍କୃତିର ଏହି ଦେବତାତତ୍ତ୍ୱ ବୈଦିକ ତଥା ବେଦୋତ୍ତର ଦେବତାତତ୍ତ୍ୱ ଉପରେ ଯଥେଷ୍ଟ ପ୍ରଭାବ ପକାଇଛି ।

ମୃତ ବ୍ୟକ୍ତିମାନଙ୍କୁ କବର ଦେବା କିମ୍ବା ଦାହ କରିବା ବିଷୟରେ ମଧ୍ୟ ସିନ୍ଧୁ-ସଂସ୍କୃତିର ଅଧିବାସୀମାନଙ୍କ ବିଷୟରେ ସମଧିକ କୌତୂହଳପୂର୍ଣ୍ଣ ତଥ୍ୟମାନ ମିଳିଥାଏ । ଏକ ଅନୁଷ୍ଠାନିକ ଉତ୍ସବ ମାଧ୍ୟମରେ ଶବକୁ କବର ଦେଇ ମୃତ ଆତ୍ମାପ୍ରତି ସମ୍ମାନ ପ୍ରଦର୍ଶନ କରିବା ପ୍ରାଗୈତିହାସିକ କାଳରୁ ମାନବ-ସମାଜରେ ଚଳିଆସୁଅଛି । ସିନ୍ଧୁ-ସଂସ୍କୃତିରେ ତେଣୁ ଏହି ପରମ୍ପରାର ଅନୁକରଣ କରାଯାଇଥିବା କଥା ସ୍ୱାଭାବିକ । ମହେଞ୍ଜୋଦାରୋ, ହରପ୍ପା, କାଲିବଙ୍ଗା, ଲୋଠାଲ ଆଦି ପ୍ରାୟ ସବୁ ସହରମାନଙ୍କର ପ୍ରଧାନ ବସ୍ତିର ଦକ୍ଷିଣ ଦିଗରେ ଏ ପ୍ରକାର କବର ସ୍ଥାନମାନଙ୍କର ସନ୍ଧାନ ମିଳିଅଛି । ଆର୍ଯ୍ୟମତରେ ମୃତ୍ୟୁ-ରାଜା ଯମଙ୍କର ଗୃହ ଦକ୍ଷିଣ ଦିଗରେ । ଏଣୁ ଦକ୍ଷିଣ ଦିଗରେ କବରସ୍ଥାନର ଅବସ୍ଥିତି ଏଥିରେ ପଡ଼ିଥିବା ଆର୍ଯ୍ୟ ପ୍ରଭାବକୁ ଅଧିକତର ଦୃଢ଼ୀଭୂତ କରାଏ । ପ୍ରତ୍ନତାତ୍ତ୍ୱିକମାନେ ହରପ୍ପାର ପଚାଶଟି କବରର ଖନନ କରିବା ଫଳରେ ତହିଁରୁ ପ୍ରାୟ ସମାନ ପ୍ରକାରର ଜିନିଷ ପାଇଛନ୍ତି । ଖାତଗୁଡ଼ିକ ପ୍ରାୟ ୧୦ ଫୁଟରୁ ୧୨ ଫୁଟ ଲମ୍ବ, ୨½ ଫୁଟରୁ ୫ଫୁଟ ଓସାର ଏବଂ ୨½ ଫୁଟରୁ ୩ଫୁଟ ଗଭୀର । ନର-କଙ୍କାଳର ଅବସ୍ଥିତିରୁ ଜଣାଯାଏ ଯେ ଶବକୁ ଉତ୍ତର-ଦକ୍ଷିଣ ଭାବରେ ଶୁଆଇ ଦିଆଯାଉଥିଲା । ମୁହଁକୁ ପୂର୍ବ କିମ୍ବା ପଶ୍ଚିମକୁ କରାଇ ଦିଆ-ଯାଉଥିଲା । ଉତ୍ତର-ଦକ୍ଷିଣ ଭାବରେ ଶାୟିତ ଶବର ମୁଣ୍ଡଟି ପ୍ରାୟ ଉତ୍ତର ଦିଗକୁ ରହୁଥିଲା । ଆର୍ଯ୍ୟମାନଙ୍କ ମତରେ ଉତ୍ତର ଦିଗ ହେଉଛି ଦେବତାମାନଙ୍କର ବାସସ୍ଥଳ । ଏହା ସ୍ୱର୍ଗର ଦିଗ । ମୃତ୍ୟୁପରେ ଆତ୍ମାର ସ୍ୱର୍ଗଗତି ହୋଇଛି ବୋଲି ପ୍ରତିପାଦିତ କରାଇବାକୁ ହୁଏତ ଶବମାନଙ୍କୁ ଉତ୍ତର ଦିଗକୁ ମୁଣ୍ଡକରି ଶୁଆଇ ଦିଆଯାଇଥିବ । ଅବଶ୍ୟ ଗୋଟିଏ କ୍ଷେତ୍ରରେ ଶବର ମୁଣ୍ଡଟିକୁ ଦକ୍ଷିଣ ଦିଗକୁ ରଖାଯାଇଥିବାର ପ୍ରମାଣ ମିଳେ । ଏହି ମୃତ ବ୍ୟକ୍ତିଙ୍କର ଆତ୍ମାଟି କୌଣସି କାରଣରୁ ସ୍ୱର୍ଗ-ଗତିରୁ ବଞ୍ଚିତ ହୋଇଥିବାର ଭାବଟି ହୋଇପାରେ ହୁଏତ ଏଠାରେ ବ୍ୟକ୍ତ । ମଞ୍ଜୁଷାବୃତ କବର ଦେବା ପ୍ରଣାଳୀ (Coffin burial) ପ୍ରାୟ ଏଠାରେ ନାହିଁ କହିଲେ ଚଳେ । ଏ ପ୍ରକାର ମଞ୍ଜୁଷାବୃତ କବରର ସଙ୍କେତ କେବଳ ଗୋଟିଏ ସ୍ଥାନରେ ମିଳିଛି । ଏହି ଶବ-ମଞ୍ଜୁଷାଟିରେ ଜଣେ ୧୮ ବର୍ଷରୁ ୨୫ ବର୍ଷ ବୟସ୍କା ମହିଳାଙ୍କର କଙ୍କାଳ ଦେଖିବାକୁ ମିଳୁଛି । ଏହାଙ୍କୁ ମଧ୍ୟ ଉତ୍ତର ଦକ୍ଷିଣ କରି ଶୁଆଇ ଦିଆଯାଇଛି । ପ୍ରାଚୀନ ସୁମେରରେ କବର ଦେବାପାଇଁ ଶବ-ମଞ୍ଜୁଷାର ବ୍ୟବହାର ଥିଲା ଏବଂ ଏହି ସୁମେର ସହିତ ସିନ୍ଧୁ-ସଂସ୍କୃତିର ଅଧିବାସୀମାନଙ୍କର ବ୍ୟବସାୟ-

ଗତ ଓ ବାଣିଜ୍ୟିକ ସମ୍ପର୍କ ରହିଥିଲା । ଏହି ସମ୍ପର୍କରୁ ସେମାନଙ୍କର ପାରସ୍ପରିକ ସାମାଜିକ ସମ୍ପର୍କ ମଧ୍ୟ ଘନିଷ୍ଠ ହୋଇଥିବା ସ୍ୱାଭାବିକ । ଏହାର ନିଦର୍ଶନ ସ୍ୱରୂପ ଶଂସିତ କବରଟି ହୁଏତ କୌଣସି ବିଦେଶିନୀ ମହିଳାଙ୍କର ହୋଇଥାଇପାରେ । (୨୯) ମହେଞ୍ଜୋଦାରୋ, ରୂପର, କାଲିବଙ୍ଗା, ଲୋଥାଲ୍ ଆଦି ଅଞ୍ଚଳରୁ ମିଳୁଥିବା କବରର ଧ୍ୱଂସାବଶେଷରୁ ଠିକ୍ ଅନୁରୂପ ନର-କଙ୍କାଳମାନ ମିଳୁଛି । ଲୋଥାଲ୍‌ଠାରେ ଥିବା ଗୋଟିଏ କବରରୁ ଦୁଇଟି ନର-କଙ୍କାଳ ମିଳୁଛି । ପରୀକ୍ଷା ପରେ ଜଣାଯାଇଛି ଯେ ଏଥିରୁ ଗୋଟିଏ ପୁରୁଷର କଙ୍କାଳ ଓ ଅପରଟି ନାରୀର କଙ୍କାଳ । ସ୍ୱାମୀର ମୃତ୍ୟୁରେ ସ୍ତ୍ରୀ ସ୍ୱାମୀର ସହଗମନ କରିବାର ଅର୍ଯ୍ୟ ପାରମ୍ପରିକ ପ୍ରଥାଟିର ସୂଚନା କହେଉଛି ଏ ପ୍ରକାର ଯୁଗ୍ମ କଙ୍କାଳର ଅବସ୍ଥିତିରୁ ମିଳୁଛି । କିନ୍ତୁ ଏ ପ୍ରକାର କବର ଗୋଟିଏ ମାତ୍ର ମିଳିଥିବାରୁ ଉପର୍ଯ୍ୟୁକ୍ତ ଧାରଣାକୁ ଦୃଢ଼ ଓ ନିର୍ବିବାଦ ଭାବରେ ପ୍ରମାଣିତ କରିବାରେ ଅସୁବିଧା ରହିଅଛି । ଏ ସମ୍ପର୍କରେ ଅଧିକତର ଗବେଷଣା ହେଲେ ଯାଇ ଭବିଷ୍ୟତରେ ପ୍ରକୃତ ତଥ୍ୟର ଦ୍ୱାର ଉଦ୍‌ଘାଟିତ ହୋଇପାରିବ ।

ମୃତ ବ୍ୟକ୍ତିର ବ୍ୟକ୍ତିଗତ ଗହଣାଗୁଡ଼ିକୁ ତା' ସହିତ କବର ଦିଆଯାଉଥିଲା । ସେଗୁଡ଼ିକ ହେଲା ତମ୍ବାର ମୁଦି ଓ କାଚର ଚଙ୍ଗ, ପୋହଳାର ମାଳି ଇତ୍ୟାଦି । ଏଥିରୁ କେତେକ ଗହଣା ମୃତବ୍ୟକ୍ତି ପିନ୍ଧିଥିବାର ମଧ୍ୟ ଦେଖାଯାଏ । ହରପ୍ପା ଓ କାଲିବଙ୍ଗାରୁ ଯଥାକ୍ରମେ ୧୩ଟି ଓ ଗୋଟିଏ ତମ୍ବାର ଦର୍ପଣ ମିଳିଛି । ଘରକରଣା ଜିନିଷମାନ ଯଥା, ମାଟିର ହାଣ୍ଡି, ମାଠିଆ ଆଦି ପ୍ରଚୁର ପରିମାଣରେ ପ୍ରତିଟି କବର ପାଖରେ ରଖାଯାଇଅଛି । ମୃତବ୍ୟକ୍ତିର ଭୋଜନ ଲାଗି ଅନ୍ୟ ଖାଦ୍ୟ ସହ ମାଂସ ମଧ୍ୟ ଦିଆଯାଉଥିଲା । ଗୋଟିଏ କବରରୁ କୁକୁଡ଼ା ହାଡ଼ ମିଳିବା ଏହାର ପ୍ରମାଣ ଅଟେ । ଅନ୍ୟ ଗୋଟିଏ କବରରୁ ଅନ୍ୟ ପଶୁମାନଙ୍କର ହାଡ ମଧ୍ୟ ମିଳିଛି । (୩୦) ଏବକାର ଭଳି ମୃତ ବ୍ୟକ୍ତିକୁ ସମ୍ମାନ ପ୍ରଦର୍ଶନ କରି ପରଲୋକରେ ତା'ର ବ୍ୟବହାର ଲାଗି ଏ ସବୁ ବସ୍ତୁକୁ ଅର୍ପଣ କରାଯାଇଥିବାର ଅନୁମାନ କରାଯାଏ ।

ଆମ୍ଭେମାନେ ଆଜକାଲିକାର ସହରମାନଙ୍କ ଭିତରେ ଏବଂ ଜନବସତିର ମଝିରେ ବେଳେ ବେଳେ କବରଖାନା ଓ ଶ୍ମଶାନ ଭୂମି ଦେଖିବାକୁ ପାଉଁଥାଉଁ । ହୁଏତ ପ୍ରାଥମିକ ଅବସ୍ଥାରେ ଏଗୁଡ଼ିକ ସହରର ଶେଷ ଭାଗରେ ରହିଥିବ । କିନ୍ତୁ ପରବର୍ତ୍ତୀ କାଳରେ ଜନବସତିର ପ୍ରସାରଣ ସହିତ ସମତାଳ ରକ୍ଷା କରି ଏଗୁଡ଼ିକୁ ସ୍ଥାନାନ୍ତରିତ କରାଯାଇ ନାହିଁ । ଏହା ନିଶ୍ଚିତ ଭାବରେ ଉତ୍ତମ ଓ ସୁସ୍ଥ ନଗର ନିର୍ମାଣ ଯୋଜନା ନିୟମାବଳୀର ପରିପନ୍ଥୀ ଅଟେ । କିନ୍ତୁ ଏଭଳି ଅବସ୍ଥା ସିନ୍ଧୁ ସଂସ୍କୃତିର କୌଣସି ସହରରେ ଆମେ ଦେଖିବାକୁ ପାଉନାହିଁ । ସେଠି କବରଖାନାଟି ଜନବସତିର

ଗୋଟିଏ କୋଣରେ କିଛି ଦୂର ଗ୍ରୁଡ଼କରି ରହିଅଛି । ଇଟାର କାନ୍ଥବାଡ଼ ଦ୍ୱାରା ପୁଣି ଜନବସତିଟିକୁ କବର-ଭୂମିଠାରୁ ପୃଥକ୍ କରି ଦିଆଯାଇଅଛି । ଶହ ଶହ ବର୍ଷ ବିତିଗଲେ ମଧ୍ୟ ଲୋକସଂଖ୍ୟା ବୃଦ୍ଧି ସତ୍ତ୍ୱେ ଏ ପ୍ରକାର ବାସଗୃହ ଓ କବରସ୍ଥାନର ବିନ୍ୟାସକୁ ଭାଙ୍ଗି ଦିଆ ଯାଇନାହିଁ । ଏଥିରୁ ସିନ୍ଧୁ ସଂସ୍କୃତିର ଅଧିବାସୀମାନଙ୍କର ନଗର-ଯୋଜନା ସହିତ ସାଧାରଣ ସ୍ୱାସ୍ଥ୍ୟ ବିଷୟରେ ଥିବା ସଚେତନତାର ସମ୍ୟକ୍ ପ୍ରମାଣ ମିଳୁଅଛି ।

ପରିଶେଷରେ ଉପସଂହାର ସ୍ୱରୂପ ଏତିକି କୁହାଯାଇପାରିବ ଯେ ସିନ୍ଧୁ-ସଂସ୍କୃତିର ଅଧିକାରୀ ଦ୍ରାବିଡ଼, ଆର୍ଯ୍ୟ ବା ଆନ୍ ଯିଏ ହୋଇଥାଆନ୍ତୁ ନା କାହିଁକି, ଏମାନେ ଏକ ସଂସ୍କୃତ ସମ୍ପନ୍ନ ଓ ସଭ୍ୟ ସମାଜର ଲୋକ ଥିଲେ । ଉଭୟ ବସ୍ତୁଗତ ଓ ଆତ୍ମିକ ପ୍ରଗତିରେ ଏମାନେ ଥିଲେ ବ୍ରତୀ । ଏମାନେ ଏକ ପ୍ରକାର ଗଣରାଜ୍ୟର ଅଧିବାସୀ ଥିଲେ ଯେଉଁଥିରେ କି ପୁରୋହିତମାନଙ୍କର କର୍ତ୍ତୃତ୍ୱ ଥିଲା ସର୍ବାଧିକ । ଏମାନଙ୍କର ସମାଜ ଓ ପରିବାର ଥିଲା ପିତୃତାନ୍ତ୍ରିକ ଯାହାକି ପରମ୍ପରା କ୍ରମେ ଭାରତଭୂମିରେ ଏ ପର୍ଯ୍ୟନ୍ତ ମଧ୍ୟ ଗଢ଼ି ଆସିଅଛି । ଏମାନେ ଶାନ୍ତିପୂର୍ଣ୍ଣ ଜୀବନଯାପନ କରୁଥିଲେ । ସମାଜରେ ସ୍ଥାୟୀ ଶାନ୍ତି ନଥିଲେ, ଦେଶ ଓ ଜାତି ସମୃଦ୍ଧ ନଥିଲେ ଏତେ ଏତେ ବୃହତ୍ତ୍ର ନଗର ନିର୍ମାଣ ଯୋଜନା କଦାପି କାର୍ଯ୍ୟକାରୀ ହୋଇପାରି ନଥାନ୍ତା । ସହସ୍ର ସହସ୍ର ବର୍ଷ ଧରି ଯେଉଁ ଅବିଚ୍ଛିନ୍ନ ଭାରତୀୟ ସଂସ୍କୃତିର ମୁକ୍ତା-ମାଳା ଦୀପ୍ତ-ଭାସ୍ୱର ହୋଇ ରହି ଆସିଅଛି, ଏହି ସିନ୍ଧୁ ସଂସ୍କୃତି ଯେ ସେଥିରେ ଗୋଟିଏ ଉଜ୍ଜ୍ୱଳ ମୁକ୍ତକା, ଏକଥା କହିଲେ ଅତ୍ୟୁକ୍ତି ହେବନାହିଁ ।

## ଗ୍ରନ୍ଥସୂଚୀ

(୧) ସୁରେନ୍ଦ୍ରନାଥ ଶତପଥୀ : "ସିନ୍ଧୁ ସଂସ୍କୃତି ଆର୍ଯ୍ୟ ନା ଦ୍ରାବିଡ଼ ?" ଝଙ୍କାର-୩୮ଶ ବର୍ଷ ୩ୟ ସଂଖ୍ୟା ପୃ-୨୭୬-୨୮୫ ।

(୨) Bridget and Raymond Allchin : The Birth of Indian Civilization. p. 140.

(୩) Ibid. p. 133.

(୪) ଆଲଚିନ୍ ଦମ୍ପତି କହିଛନ୍ତି—"The unburied skeletons lying in the streets of Mahenjodaro are very suggestive." Ibid : p. 144.

(୫) ଆଲଚିନ୍ ଦମ୍ପତି ଏ ସମ୍ପର୍କରେ କହନ୍ତି :—

"The extension of the civilization eastward towards the Ganges—Yamuna Doab raises various interesting possibilities which must await the research of coming years." Ibid : p. 131.

ଡଃ ପୁରୁଷୋତ୍ତମ ସିଂହ ଏ ସମ୍ପର୍କରେ କହନ୍ତି :—

"Nevertheless several problems like the origin, the epicentre, diffusion and the sudden end of this powerful civilization remain unsolved."

Purusottam Singh : Burial Practices in Ancient India : Prithvi Prakashan (1976) : p. 33.

(୬) Bridget and Raymond Allchin : op. cit. p. 168.

(୭) S. R. Rao— (1982) : The Decipherment of the Indus Script : Asia Publishing House, Bombay and S. H. Ritti (1985) : The Decipherment of the Indus Script— The State of the Art' published in 'Manjusha' (ed) Satyavrata Sastri, Bangalore.

(୭-କ) D. D. Kosambi—The Culture and Civilisation of Ancient India in Historical Line : Vikash Publishing House (1977) : p. 58.

(୮) Ibid : p. 58.

(୯) Ibid : p. 70.

(୧୦) S. R. Rao : Key-note Address on the topic "Sacrifice in India" delivered at a Bombay University Seminar held from the 3rd to 5th March, 1986.

(୧୧) ଋଗ୍‌ବେଦ : ୨ । ୨୩ । ୧ ।

(୧୨) ସଚ୍ଚି ରାଉତରାୟ : ସାହିତ୍ୟରେ ମୂଲ୍ୟବୋଧ ( ୧୯୭୪) ପୃ-୩ ।

(୧୩-କ) D. D. Kosambi quoted in Bridget and Raymond Allchin ; op. cit : p. 260.

(୧୩-କ) ପ୍ରତ୍ନତାତ୍ତ୍ୱିକ ଆଲ୍‌ଚିନ୍ ଦମ୍ପତିଙ୍କର ନିମ୍ନଲିଖିତ ମନ୍ତବ୍ୟ ଏ ସମ୍ପର୍କରେ ଦ୍ରଷ୍ଟବ୍ୟ :

"There are some barrack-like groups of single-roomed tenements at Mohenjodaro which possibly recall the rows of tenements at Harappa." Ibid : p. 242.

(୧୪) D. D. Kosambi : op cit . p. 70.

(୧୫) Purusottam Singh : op. cit : p. 33.

(୧୬) ବିଶେଷ ବିବରଣୀ ଲାଗି ଦେଖନ୍ତୁ—ସୁରେନ୍ଦ୍ର ନାଥ ଶତପଥୀ : 'ସିନ୍ଧୁ ସଂସ୍କୃତି ଆର୍ଯ୍ୟ ନା ଦ୍ରାବିଡ଼ ?' ଝଙ୍କାର ୩୮ଶ ବର୍ଷ ୩ୟ ସଂଖ୍ୟା : ପୃ ୨୨୭-୨୮୫ ।

(୧୭) D. D. Kosambi : op. cit : p. 70.

(୧୮) Bridget and Raymond Allchin : op. cit ; p. 274.

(୧୯) ଏଠାରେ ତିଆରି ହେଉଥିବା ସୁନାର ଅଳଙ୍କାର ଓ ଅନ୍ୟାନ୍ୟ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟମାନ ବାହାର ଦେଶମାନଙ୍କୁ ଜଳ ପଥରେ ରପ୍ତାନି କରାଯାଉଥିଲା । ଏଥି ସହିତ ମଧ୍ୟ ତମ୍ବା, ମୟୂର, ହାତୀଦାନ୍ତ ଓ ହାତୀଦାନ୍ତ ତିଆରି କଙ୍କଣ, ଶିଙ୍ଗ ଓ ବୃକ୍ଷର ପାନିଆ, ଲୁଗା ଇତ୍ୟାଦି ମଧ୍ୟ ରପ୍ତାନି କରାଯାଉଥିଲା । ଏ ସମ୍ପର୍କରେ ଦେଖନ୍ତୁ :—

Bridget and Allchin : op. cit : p. 258 and D. D. Kosambi : op. cit : p. 59.

(୨୦) ବାସ୍ତବିକ, ଅର୍ଦ୍ଧ ମୂଲ୍ୟବାନ ପଥରରେ ପୋହଳାର ମାଳି ତିଆରି କରିବା ଥିଲା ସୈନ୍ଧବ ସଭ୍ୟତାର ଏକ ବିଶେଷତ୍ୱ । ଏହି ପ୍ରସ୍ତୁତି-କୌଶଳଟି ବହୁ ବର୍ଷ ଧରି ଭାରତବର୍ଷରେ ପ୍ରୟୋଗ କରାହୋଇ ଆସିଥିଲା । ଏ ସମ୍ପର୍କରେ ଆଲ୍‌ଚିନ୍ ଦମ୍ପତିଙ୍କର ନିମ୍ନୋକ୍ତ ମନ୍ତବ୍ୟ ଦ୍ରଷ୍ଟବ୍ୟ :—

"The technique of making beads with semiprecious stones must long have remained a special feature of Indian craftsmanship. Archaeology is able to supply a mass of evidence from the sites from the earliest Neolithic and Chalcolithic settlements in many regions to testify to its longevity." Bridget and Raymond Allchin : op. cit ; p. 295

(୧୧) S. R. Rao : Key-note Address on the topic : "Sacrifice in India—Concept and Evolution". delivered at a Bombay University Seminar held from the 3rd to the 5th March, 1986.

(୧୨) ସୁରେନ୍ଦ୍ରନାଥ ଶତପଥୀ : "ସିନ୍ଧୁ ସଭ୍ୟତା ଅର୍ଯ୍ୟ ନା ଦ୍ରାବିଡ ?" ଝଙ୍କାର : ୩୮ଶ ବର୍ଷ ୩ୟ ସଂଖ୍ୟା : ପୃ. ୨୭୬-୨୮୫ ।

(୧୩) D. D. Kosambi. : op. cit : p. 68

(୧୪) D. D. Kosambi. op. cit : p. 68-69

(୧୫) ଟି. ଏନ୍ ରାମଚନ୍ଦ୍ରନ କହନ୍ତି :—

We are perhaps recognising in Harappa statuette a full-fledged Jaina Tirthankar in a characteristic pose of physical abandon (Kayotsarga pose). The statuette under description is therefore a splendid representative specimen of the thought of Jainism at perhaps its very inception."

ଦେଖନ୍ତୁ ରାମଚନ୍ଦ୍ରନ୍ଙ୍କ ସଂସ୍କୃତି : ଜୈନ ସାହିତ୍ୟ : ସାହିତ୍ୟର ମୂଲ୍ୟବୋଧ : ପୃ-୭୮ ।

(୧୬) ଉ. ଜ. ନାସ୍ୱାର କହନ୍ତି :—

"It is a fact that the Jains are the first Indian peole who took iconism in their religious worship and made images of their Tirthankars which resembled those found in Harappa and Mahenjodaro. The Harappan statuette is a male torso in nude form which resembles the torsos found in Lochanpur (Patna). (Jaina Journal. ଏପ୍ରିଲ ୧୯୭୨ ସଂଖ୍ୟାରେ ପ୍ରକାଶିତ ପ୍ରବନ୍ଧ "Indus Valley Civilisation" ଦ୍ରଷ୍ଟବ୍ୟ)

(୧୭ ବେଦୋକ୍ତ କାଣ୍ଡାଶୀତି କହନ୍ତେ ବ୍ୟାପକ .—

'ଅନୈସର୍ଗିକଜତ' ଶବ୍ଦର ପ୍ରକୃତ ଅର୍ଥ କ'ଣ ସେ ବିଷୟ ନେଇ ଦେବତା ଓ ଋଷିମାନଙ୍କ ମଧ୍ୟରେ ମତଭେଦ ହେଲା । ଦେବତାମାନେ 'ଅଜ' ଅର୍ଥ ଛେଳି ବୋଲି ନେଲେ । ଛେଳି ବା ସେହିଭଳି ପଶୁକୁ ବଳି ଦେଇ ଯଜ୍ଞ କରିବାକୁ ହେବ ବୋଲି ସେମାନେ ଦାବୀ କଲେ । ଋଷିମାନେ କିନ୍ତୁ 'ଅଜ' ଅର୍ଥ ପ୍ରଜନନକ୍ଷମ ହୋଇନଥିବା ଶସ୍ୟକୁ ଅର୍ଥ କଲେ ଏବଂ ସେଥିରେ ଯଜ୍ଞ କରିବାକୁ ହେବ ବୋଲି କହିଲେ । "ଉପରିଚର ବସୁ" ବା ଭଗବାନ ଆସି ଏ ବିବାଦର ସମାଧାନ କରିଦେଲେ । ସେ ଋଷିମାନଙ୍କ ଅର୍ଥକୁ ଠିକ୍ ବୋଲି କହିଲେ । ଏହାର ତାତ୍ତ୍ୱିକ ଅର୍ଥ ହେଉଛି ଆର୍ଯ୍ୟମାନଙ୍କ ମଧ୍ୟରେ ଯେ ପ୍ରକୃତ ଦ୍ରଷ୍ଟା (ଆର୍ଷ ଦର୍ଶନେ) ସେ ଯଜ୍ଞର ଠିକ୍ ଅର୍ଥଟି ଗ୍ରହଣ କରି ପାରିଥିଲେ ଏବଂ ଏହାକୁ ଅହିଂସା-ମାର୍ଗରେ ନେଇଥିଲେ ।

(୨୮) ଘୋର ଅଙ୍ଗୀରସ ମୁନି ଶ୍ରୀକୃଷ୍ଣଙ୍କର ଗୁରୁ ହିସାବରେ ଶିକ୍ଷା ଦେଉଥିଲେ : "ଅଥ ଯତ୍ତପୋଦାନମାର୍ଜବମହିଂସା ସତ୍ୟବଚନମିତି ତା ଅସ୍ୟ ଦକ୍ଷିଣା" (ଛା : ଉ : ୩ । ୧୭-୪-୬)

ଅର୍ଥାତ୍ ଏ ଯଜ୍ଞର ଦକ୍ଷିଣା ହେଉଛି ତପସ୍ୟା, ଦାନ, ଆର୍ଜବ (ସରଳତା), ଅହିଂସା ଓ ସତ କଥା କହିବା ।

(୨୯) Mortimer Wheeler : The Indus Civilisation (1958) pp. 53-54.

ଏ ସମ୍ପର୍କରେ ପୁରୁଷୋତ୍ତମ ସିଂହଙ୍କର ନିମ୍ନୋକ୍ତ ମନ୍ତବ୍ୟ ମଧ୍ୟ ଦ୍ରଷ୍ଟବ୍ୟ :—

"The dead body was oriented in north-south direction with the head usually to the north. The face was turned either towards the west or the east. In the case of a coffin-burial the face was found to be up wards. In one case, however, the head was found towards the south." Purusottam Singh : op. cit p. 35.

(୩୦) K. N. Sastri : New Light on the Indus Civilisation, Vol. II (1965). p. 42.

## ସପ୍ତମ ପରିଚ୍ଛେଦ

# ହିନ୍ଦୁ ସଂସ୍କୃତିରେ ଶବସତ୍କାର

ଶବସତ୍କାର କର୍ମଟି ଆଦିମତମ କାଳରୁ ସାରା ମାନବ ଜାତିର ମାନସପଟ୍ଟରକୁ ଆନ୍ଦୋଳିତ କରି ଆସିଛି । ଆଦିମାନବ ମୃତ୍ୟୁର ଆବିର୍ଭାବରେ ଭୟ ଓ ବିସ୍ମୟରେ ବିମୂଢ଼ ହୋଇଯାଉଥିଲା । କିନ୍ତୁ କାଳକ୍ରମେ ଚିନ୍ତାର ବିକାଶ ହେବାରେ ତା'ର ଧାରଣା ହେଲା ଯେ ମୃତବ୍ୟକ୍ତିର ଗୋଟିଏ ଆତ୍ମା ଅଛି ଏବଂ ଇହଜଗତ ଭଳି ପରଜଗତରେ ମଧ୍ୟ ସେ ଆତ୍ମା ଚଳ ପ୍ରଚଳ କରୁଥାଏ । ତା'ର ଚଳଣା ଲାଗି ତେଣୁ ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁମାନ ଆବଶ୍ୟକ । ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ସେ ମୃତବ୍ୟକ୍ତିକୁ କବର ଦେବାର ବ୍ୟବସ୍ଥା କଲା ଏବଂ ସେହି କବର ମଧ୍ୟରେ ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁମାନ ରଖିଲା । ପ୍ରାଚୀନପ୍ରସ୍ତର ଯୁଗରୁ ସ୍ଥୂଳତଃ 'ମୃତ୍ୟୁପରେ ଆତ୍ମାର ସ୍ଥିତି' କିମ୍ବା 'ମୃତ୍ୟୁ ପରେ ପୁନର୍ଜୀବନ'ର ବିଶ୍ୱାସଟି ମୃତବ୍ୟକ୍ତିଙ୍କ ଶବସତ୍କାର କରିବାର ବିଭିନ୍ନ ପ୍ରଣାଳୀକୁ ପ୍ରଭାବିତ କରିଆସିଅଛି । ସିନ୍ଧୁ ସଂସ୍କୃତିର ଅଧିବାସୀମାନେ ତେଣୁ ଏହି ବିଶ୍ୱାସର ଅନୁବର୍ତ୍ତୀ ହେବା କିଛି ଅସ୍ୱାଭାବିକ ନୁହେଁ । ପୁରୁଷୋତ୍ତମ ସିଂହଙ୍କ ଭଳି ଗବେଷକ ଅନ୍ୟାନ୍ୟ ବହୁ ଗବେଷକଙ୍କ ସହିତ ସହମତ ହୋଇ ସ୍ପଷ୍ଟ ଭାବରେ ସ୍ୱୀକାର କରିଛନ୍ତି ଏବଂ ଯଥାର୍ଥରେ କହିଛନ୍ତି :

"That the people believed in the continuance of life after death is clear by the complete inhumations of the body in grave is as early as the date of Stone Age. Funerary offerings provided in the graves are indications of the belief that the deceased would require tools, weapons, objects of daily use and even his personal ornaments in his next life." (୧)

ସାର୍ ମର୍ଟିମର ହୁଇଲର ୧୯୪୬ ମସିହାରେ ହରପ୍ପାରେ ଭୂଖୋଦନ ନ କରିବା ପୂର୍ବରୁ ସିନ୍ଧୁ ସଭ୍ୟତାର ଅଧିବାସୀମାନେ କିଭଳି ଭାବେ ଶବସତ୍କାର କରୁଥିଲେ, ସେ ବିଷୟରେ କିଛି ସଠିକ୍ ଧାରଣା କରିହୋଇ ପାରୁନଥିଲା । ସେ ସେଠାରେ ଗୋଟାଏ

କବରଖାନା ଏବଂ ଅନ୍ତତଃ ୫୭ଟି ପର୍ଯ୍ୟନ୍ତ କବର ଆବିଷ୍କାର କରିଥିଲେ । ଏହି କବର ଗୁଡ଼ିକର ଖନନ ଫଳରେ ପ୍ରମାଣ ମିଳିଛି ଯେ ମୃତବ୍ୟକ୍ତିଙ୍କୁ ପ୍ରାୟ ଶାୟିତ ଅବସ୍ଥାରେ କବର ଦିଆଯାଉଥିଲା ଏବଂ ଶବ ପାଖରେ ମୃତବ୍ୟକ୍ତିଙ୍କ ପରଲୋକରେ ବ୍ୟବହାର ଲାଗି ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁମାନ ରଖାଯାଉଥିଲା । (୨) ଏହା ପରେ ପରେ ଅବଶ୍ୟ ଅନ୍ୟାନ୍ୟ ସିନ୍ଧୁ ସଭ୍ୟତାର ସ୍ଥାନମାନଙ୍କରୁ ଏ ପ୍ରକାର ଅନେକ କବରଖାନାର ଆବିଷ୍କାର ହେଲାଣି । ସେହି ସ୍ଥାନମାନ ହେଲେ ସୌରାଷ୍ଟ୍ର ଗାଙ୍ଗେୟ ଉପତ୍ୟକାସ୍ଥ ରୂପାର, ବାଗ, ଆଲମଗିର-ପୁର, ରାଜସ୍ଥାନର କାଲିବଙ୍ଗା, ଗୁଜୁରାଟର ରଙ୍ଗପୁର, ଲୋଥାଲ୍, ରୋଜଡ଼ି, ଦେଶଲପୁର ଏବଂ ପାକିସ୍ଥାନର କୋଟ୍‌ଡିଜି, ଆମ୍ରି ଓ ସୁତ୍‌କା-ଜୋ । ମହେଞ୍ଜୋଦାରୋରେ ଏଭଳି କବରଖାନା ମିଳିଯାରେ ବୋଲି ହୁଇଲର ମତ ପୋଷଣ କରିଛନ୍ତି ଏବଂ ମ୍ୟାକେ ମଧ୍ୟ ତାଙ୍କ ସହିତ ସହମତ । (୩) ହୁଏତ ମହେଞ୍ଜୋଦାରସ୍ଥ ଏହି କବରଖାନା ସିନ୍ଧୁନଦୀକୁ ଲାଗି ରହିଥିବାରୁ କ୍ରମାଗତ ପ୍ରଖର ବନ୍ୟା-ସ୍ରୋତରେ ଧୋଇ ହୋଇଯାଇ ଥାଇପାରେ, କିମ୍ବା ସିନ୍ଧୁନଦୀର ପ୍ରଚୁର ପାଣି ଝରୁଥିବାରୁ ଏ ପର୍ଯ୍ୟନ୍ତ ମହେଞ୍ଜୋଦାରୋର ନିମ୍ନତମ ସ୍ତର ପର୍ଯ୍ୟନ୍ତ ଖନନକାର୍ଯ୍ୟ ସମ୍ଭବ ହୋଇ ପାରିନାହିଁ; ଏଣୁ ପରେ ହୁଏତ ଏଭଳି କବର-ଖାନାର ସନ୍ଧାନ ମିଳିପାରେ ! ସ୍ଥୂଳତଃ ଏ ସମ୍ପର୍କରେ ଯାହାସବୁ ପ୍ରମାଣମାନ ଏପର୍ଯ୍ୟନ୍ତ ମିଳିଛି, ସେଥିରୁ ନିଃସନ୍ଦେହ ଭାବରେ ଏହି ଧାରଣା କରି ହେବ ଯେ ସିନ୍ଧୁ-ସଭ୍ୟତାର ଅଧିବାସୀମାନେ ମୃତବ୍ୟକ୍ତିଙ୍କୁ କବର ଦେଉଥିଲେ ।

ପୂର୍ବ କଥିତ ମତେ ମୃତବ୍ୟକ୍ତିଙ୍କୁ ସାଧାରଣତଃ ଉତ୍ତାନ ଭାବରେ ଶାୟିତ କରି ତାଙ୍କ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁଗୁଡ଼ିକ ସହିତ ଗାତ ଖୋଳି କବର ଦିଆଯାଉଥିଲା । ସ୍ଥଳ ବିଶେଷରେ ଏହାର ବ୍ୟତିକ୍ରମ ମଧ୍ୟ କରାଯାଉଥିଲା । ହରପ୍ପା ଓ କାଲିବଙ୍ଗାରୁ ଗୋଟିଏ ଲେଖାଏଁ କବର ଆବିଷ୍କୃତ ହୋଇଛି, ଯେଉଁଥିରେ କି ମାଟି ଖାତଟିର ଚାରିପଟେ କଞ୍ଚା ଇଟାର କାନ୍ଥ ବିଦ୍ୟମାନ । ଏହା ଏକ ବିରାଟ ବାକ୍ସ ଆକୃତି ବିଶିଷ୍ଟ । ମାଟି ପଲସ୍ତରା ଦିଆଯାଇ ଇଟାଗୁଡ଼ିକୁ ଯୋଡ଼ା ଯାଇଛି । (୪) କାଲିବଙ୍ଗାରେ ମଧ୍ୟ ଏହିଭଳି ଇଟାକାନ୍ଥ ଦିଆ କବର ଦେଖିବାକୁ ମିଳିଥାଏ । ହୁଏତ ଏହା କୌଣସି ବିଶିଷ୍ଟ ଗଣ୍ୟମାନ୍ୟ ବ୍ୟକ୍ତିଙ୍କର କବର ହୋଇପାରେ, ଯେଉଁଥି ପାଇଁକି ସାଧାରଣ କବରଠାରୁ ଏହାର ସ୍ୱାତନ୍ତ୍ର୍ୟ ରଖା-ଯାଇଅଛି କିମ୍ବା ସିନ୍ଧୁ ଉପତ୍ୟକାରେ ବହୁଜାତୀୟ ଓ ବହୁଧର୍ମାବଲମ୍ବୀ ଲୋକ ଏକତ୍ର ସହାବସ୍ଥାନ ନୀତି ଅବଲମ୍ବନ କରି ବାସ କରୁଥିବାରୁ, ଉପରୋକ୍ତ କବରଦ୍ୱୟ ହୁଏତ କୌଣସି ଏକ ନିର୍ଦ୍ଦିଷ୍ଟ ଧର୍ମଗୋଷ୍ଠୀ କିମ୍ବା ଜାତିଗୋଷ୍ଠୀର ହୋଇଥିବ ଏବଂ ସେମାନଙ୍କ ପ୍ରଚଳିତ ସାମାଜିକ ପ୍ରଥା ଅନୁସାରେ ମୃତବ୍ୟକ୍ତିଙ୍କୁ କବର ଦିଆଯାଇଥିବ । ସିନ୍ଧୁ ଉପତ୍ୟକାର ସମକାଳୀନ ଯେଉଁ ବିଭିନ୍ନ ଜାତିସ୍ଥ ଲୋକଙ୍କର ନରକଙ୍କାଳମାନ ବାହାରିଛି,

ତାହା ଏ ପ୍ରକାର ବହୁ ଜାତିର ସହାବସ୍ଥାନ ସମ୍ଭାବନାକୁ ଏଡ଼େଇ ଦେଇ ପାରିବ-ନାହିଁ । (୫)

ଏ ପର୍ଯ୍ୟନ୍ତ କବରଖୋଳାମାନଙ୍କର ପରୀକ୍ଷା ନିରୀକ୍ଷା ପରେ ଶବସତ୍କାର ସମ୍ପର୍କରେ ଯାହା କିଛି ତଥ୍ୟ ମିଳୁଛି, ତାହା ଅନୁଧ୍ୟାନ କଲେ କବର ଦେବାର ବିଭିନ୍ନ ପଦ୍ଧତି ବିଷୟରେ ଏକ ସ୍ଥୂଳଧାରଣା କରିହେବ । ଏହି ଯେଉଁ ତଥ୍ୟମାନ ମିଳିଛି ତାହା ସାମାନ୍ୟମାତ୍ର । କାରଣ ଅବିଷ୍କୃତ ହୋଇଥିବା ସମସ୍ତ କବରମାନଙ୍କର ଏ ପର୍ଯ୍ୟନ୍ତ ଖନନୋତ୍ତର ପରୀକ୍ଷା କରାଯାଇ ପାରିନାହିଁ । ତାହାଛଡ଼ା ଆହୁରି ଅନେକ ଗୁପ୍ତ କବରସ୍ଥାନ ଏ ପର୍ଯ୍ୟନ୍ତ ମଧ୍ୟ ଅବିଷ୍କୃତ ହୋଇନାହିଁ । ସେଥିପାଇଁ ୧୯୪୭ ମସିହାରେ ପ୍ରଥମ କରି ହରପ୍ପାଠାରେ କବରସ୍ଥାନ ଆବିଷ୍କାର କରିଥିବା ସାର୍ ମର୍ଟିମର ହୁଇଲର ଯଥାର୍ଥରେ କହିଛନ୍ତି :

"A dozen years ago it could not have been written; a dozen years hence it will have to be rewritten."

'ଅର୍ଥାତ୍ ବାରବର୍ଷତଳେ ଏକଥା ଲେଖାଯାଇ ପାରିନଥାନ୍ତା ଏବଂ ଆଜିଠାରୁ ବାରବର୍ଷପରେ ଏ ବିଷୟ ପୁଣି ଥରେ ଲେଖିବାକୁ ପଡ଼ିବ ।' (୬) ସେ ଯାହାହେଉ, ସିନ୍ଧୁ ସଂସ୍କୃତିରେ ମୃତବ୍ୟକ୍ତିଙ୍କୁ ପୂର୍ଣ୍ଣଭାବରେ କିମ୍ବା ତାଙ୍କ ଶରୀରର ଭଗ୍ନାବଶେଷକୁ ଆଂଶିକ ଭାବରେ କବର ଦେବାରେ ସ୍ଥୂଳତଃ ନିମ୍ନଲିଖିତ ପଦ୍ଧତିମାନ ଅନୁସୃତ ହେଉଥିଲା ।

(କ) ମାଟି ଖାତ ଖୋଳି ଶବକୁ ଲମ୍ବଭାବରେ ଉତ୍ତର-ଦକ୍ଷିଣ ଭାବରେ ମୁଣ୍ଡ ଉତ୍ତରକୁ କରି ଶୁଆଇ ଦିଆଯାଉଥିଲା ।

(ଖ) କେତେବେଳେ କେମିତି ମାଟିଖାତ ଚାରିପଟେ ଇଟାର କାନ୍ଥ ଦିଆଯାଉଥିଲା ।

(ଗ) କେତେକ କ୍ଷେତ୍ରରେ କାଠର ଶବାଧାର ତିଆରି କରାଯାଇ ଶବାଧାରକୁ କବର ଦିଆଯାଉଥିଲା ।

(ଘ) ଆଉ କେତେକ କ୍ଷେତ୍ରରେ ଅସ୍ଥିର ଅଂଶକୁ ପାତ୍ର ମଧ୍ୟରେ ରଖାଯାଇ ତାହାକୁ କବର ଦିଆଯାଉଥିଲା ।

(ଙ) ପ୍ରାୟ ପ୍ରତି କ୍ଷେତ୍ରରେ ଶବ ସହିତ ମୃତବ୍ୟକ୍ତିଙ୍କ ପରଜନ୍ମରେ ବ୍ୟବହାର ଲାଗି ନିତ୍ୟ-ନୈମିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନ କବର ମଧ୍ୟରେ ରଖାଯାଉଥିଲା ।

ବର୍ତ୍ତମାନ ବିଭିନ୍ନ କବର ସ୍ଥାନମାନଙ୍କରୁ ମିଳୁଥିବା ତଥ୍ୟମାନଙ୍କୁ ପୃଥକ୍ ପୃଥକ୍ ଭାବରେ ବିସ୍ତୃତ ଆଲୋଚନା କରିବା ଯଥାର୍ଥ ହେବ; କାରଣ ଏହି ତଥ୍ୟମାନଙ୍କ ମଧ୍ୟରେ ସ୍ଥୂଳତଃ କେତେକ ମୌଳିକ ସାମ୍ୟ ରହିଥିଲେ ହେଁ ଅନେକାଂଶ ସ୍ୱାତନ୍ତ୍ର୍ୟ ମଧ୍ୟ ରହିଅଛି ।

ହରପ୍ପାର ଦୁଇଟି ସ୍ଥଳରେ କବରସ୍ଥାନର ସନ୍ଧାନ ମିଳିଛି । ପ୍ରଥମଟିର ସନ୍ଧାନ ଓ ସେଠାରେ ଥିବା କବରଗୁଡ଼ିକର ଖନନକାର୍ଯ୍ୟ ୧୯୩୭ରୁ ୧୯୪୬ ମସିହା ମଧ୍ୟରେ ହୋଇଥିଲା । ଏହି କାର୍ଯ୍ୟକୁ ବିଶେଷ ଭାବରେ ତ୍ୱରାନ୍ୱିତ କରାଯାଇଥିଲା ୧୯୪୬ ମସିହାରେ, ଯେତେବେଳେ କି ସାର୍ ମର୍ଟିମର ହୁଇଲର ଏହାର ନେତୃତ୍ୱ ନେଇଥିଲେ । ଏହିଭଳି ଭାବରେ ୫୭ଟି କବରର ଖନନ ହୋଇସାରିଛି । ଏହାର ଅବସ୍ଥିତି ପ୍ରଧାନ ସ୍ତୂପ (Citadel mound)ର ଦକ୍ଷିଣକୁ । ଅନେକ ଗବେଷକଙ୍କ ମତରେ ଏହାକୁ ଦକ୍ଷିଣରେ ରଖିବାର ତାତ୍ପର୍ଯ୍ୟ ହେଉଛି, ମୃତ୍ୟୁର ରାଜା ଯମଙ୍କର ନିଳୟ ଦକ୍ଷିଣରେ ବୋଲି ବୈଦିକ ଆର୍ଯ୍ୟମାନଙ୍କର ଧାରଣା । ସେହି ଧାରଣାର ପ୍ରଭାବ ଏଥିରେ ପଡ଼ିଛି ବୋଲି ସେମାନଙ୍କର ମତ । ଏହି କବରସ୍ଥାନଟି ପ୍ରତ୍ନତାତ୍ତ୍ୱିକମାନଙ୍କ ଦ୍ୱାରା Cemetery R-37 ନାମରେ ଚିହ୍ନିତ । ୧୯୩୮ ମସିହାରେ ହରପ୍ପାର ଖନନକାର୍ଯ୍ୟ ଚାଲିଥିବା ସମୟରେ ମାଧୋ ସରୂପ ଭାଟ୍ସ୍ ପ୍ରଧାନ ସ୍ତୂପ ଓ ପୂର୍ବବର୍ତ୍ତୀ R-37 କବରସ୍ଥାନର ଏକ ମଧ୍ୟବର୍ତ୍ତୀ ସ୍ଥାନରେ ଦୈବାତ୍ କେତେଗୁଡ଼ିଏ ପାତ୍ର-କବର ଆବିଷ୍କାର କରିଥିଲେ । ସେହି କବରସ୍ଥାନଟିର ନାମ ପ୍ରତ୍ନତାତ୍ତ୍ୱିକମାନେ ଦେଇଛନ୍ତି cemetery H ବୋଲି । ରେଡ଼ିଓ ଅଙ୍ଗାର ପରୀକ୍ଷା ଫଳରେ ଜଣାପଡ଼ିଛି ଯେ cemetery Hର କାଳ Cemetery R-37 କାଳର ପରବର୍ତ୍ତୀ । ସେତେବେଳକୁ କୌଣସି କାରଣରୁ ହରପ୍ପା ସହର ଧ୍ୱଂସ ପ୍ରାପ୍ତ ହୋଇଯାଇଥିଲା ।

ହରପ୍ପାସ୍ଥ R-37 କବରସ୍ଥାନର ପ୍ରାୟ ସବୁଯାକ ଶବକୁ ଲମ୍ବ ଭାବରେ ଉତ୍ତର ଦକ୍ଷିଣ କରି ଶାୟିତ କରାଯାଉଥିଲା ଏବଂ ମସ୍ତକକୁ ଉତ୍ତରାଭିମୁଖୀ କରି ରଖା ଯାଉଥିଲା । ମୃତକୁ ପୂର୍ବାଭିମୁଖୀ କିମ୍ବା ପଶ୍ଚିମାଭିମୁଖୀ କରାଯାଉଥିଲା । ଆର୍ଯ୍ୟ ଚିନ୍ତାଧାରାରେ ଉତ୍ତରଦିଗ ହେଉଛି ଦେବତାମାନଙ୍କର ସ୍ଥାନ ବା ସ୍ୱର୍ଗଭୂମି । ଏଠାରେ ମୃତବ୍ୟକ୍ତିଙ୍କର ସ୍ୱର୍ଗ ପ୍ରାପ୍ତି ହେବା କଥାଟି କଳ୍ପନା କରି ଶବର ମସ୍ତକକୁ ଏଭଳି ଭାବରେ ଉତ୍ତରାଭିମୁଖୀ କରାଯାଉଥିବାର ମନେହୁଏ । ଶବ ସହିତ ବିଭିନ୍ନ ଚିତ୍ରିତ ମୃଣ୍ମୟ ପାତ୍ରମାନଙ୍କୁ ଏବଂ ମୃତବ୍ୟକ୍ତିଙ୍କ ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁମାନଙ୍କୁ ମଧ୍ୟ କବର ଦିଆଯାଇଥିବାର ଦେଖାଯାଏ ।(୭) ବାସମ୍ ମଧ୍ୟ ଏଥିରେ ସହମତ ପ୍ରକାଶ କରି କହନ୍ତି :

"It is clear that the dead were buried in an extended

posture with pottery vessels and personal ornaments." । (୮)

ଏହି କବର-ଖନନ ଫଳରେ ମିଳିଥିବା ବିଭିନ୍ନ ବସ୍ତୁମାନଙ୍କ ଉପରେ ବିସ୍ତୃତ ଆଲୋଚନା କେ. ଏନ୍. ଶାସ୍ତ୍ରୀ କରିଛନ୍ତି । (୯) ଏଥିରୁ ଜଣାଯାଏ ଯେ କବରର ଦୈର୍ଘ୍ୟ ସାଧାରଣତଃ ଥିଲା ୧୦ଫୁଟରୁ ୧୨ଫୁଟ ମଧ୍ୟରେ ଏବଂ ପ୍ରସ୍ଥ ଥିଲା ୨½ ଫୁଟରୁ ୫ଫୁଟ ମଧ୍ୟରେ ଗଭୀରତା ଥିଲା ୨½ ଫୁଟରୁ ୩ଫୁଟ ମଧ୍ୟରେ । ଏହି ଆକାର ବିଶିଷ୍ଟ କବରରେ ସୁବିଧାରେ ମୃତବ୍ୟକ୍ତିର ପୂର୍ଣ୍ଣାବୟବଟିକୁ ଶାୟିତ ଭାବରେ କବର ଦିଆଯାଇ ପାରୁଥିଲା । କିନ୍ତୁ ୧୯୪୭ ମସିହାରେ ଆଉ ଗୋଟିଏ କବର ( ସଂଖ୍ୟା-୧୦ ) ଆବିଷ୍କୃତ ହୋଇଛି ଯାହାର ଆକାର ଅନ୍ୟ ସମସ୍ତ କବରଠାରୁ ଯଥେଷ୍ଟ ବଡ଼ । ଏହା ହେଉଛି ୧୫ ଫୁଟ ଲମ୍ବ, ୧୦ ଫୁଟ ଓସାର ଏବଂ ୩ଫୁଟ ଗଭୀର । ଏହି ବୃହଦାକୃତି କବର ହୁଏତ ମୃତବ୍ୟକ୍ତିଙ୍କର ସାମାଜିକ ପ୍ରତିଷ୍ଠାର ପ୍ରତୀକ ହୋଇପାରେ । ଏହା କୌଣସି ରାଜା ବା ପୁରୋହିତ ବା ଅନ୍ୟ କୌଣସି ବିଶିଷ୍ଟ ବ୍ୟକ୍ତିଙ୍କର କବର ହୋଇ ଥାଇପାରେ । ଏଥିରୁ ହିନ୍ଦୁ-ସଂସ୍କୃତିରେ ପ୍ରଚଳିତ ଥିବା ଏକ ପ୍ରକାର ଶ୍ରେଣୀ-ବିଭାଗର ସୂଚନା ମିଳେ ।

କିନ୍ତୁ ଗୋଟିଏ କ୍ଷେତ୍ରରେ ମୃତବ୍ୟକ୍ତିଙ୍କର ମସ୍ତକକୁ ଦକ୍ଷିଣାଭିମୁଖୀ କରି ରଖା ଯାଇଅଛି । ଏହା କବର ଦେଉଥିବା ବ୍ୟକ୍ତିଙ୍କର ଭ୍ରମବଶତଃ ଘଟିଛି ବୋଲି କୁହାଯାଇ ନପାରେ । କେତେକ ଗବେଷକ କୁହନ୍ତି ଯେ ହରପ୍ପାବାସୀ ସମ୍ଭବତଃ କୌଣସି ପ୍ରଳୟଙ୍କରୀ ଯୁଦ୍ଧବିଗ୍ରହ କିମ୍ବା ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ଥିବା ସମୟରେ ଏହି ଶବଟିକୁ ଖୁବ୍ ତରତରରେ କବର ଦେଇଥିଲେ । ଏଣୁ ଏଭଳି ଦିଗଗତ ଭ୍ରମ ଉପୁଜିଛି । ଏହା ମଧ୍ୟ ବିଶ୍ୱାସଯୋଗ୍ୟ ନୁହେଁ । ଆମ୍ଭ ମତରେ ଶବର ମସ୍ତକଟିକୁ ସଜ୍ଞାନରେ ଦକ୍ଷିଣାଭିମୁଖୀ କରି ରଖାଯାଇଅଛି । ଏ ବ୍ୟକ୍ତି ହୁଏତ କୌଣସି ଗୁରୁତର ପାପୀ କିମ୍ବା ଗୁରୁତର ଦଣ୍ଡରେ ଦଣ୍ଡିତ ଏବଂ ସେଥିପାଇଁ ଏହାଙ୍କର ଗତି ହୋଇଛି ନରକକୁ, ସ୍ୱର୍ଗକୁ ନୁହେଁ । ଏଣୁ ତତ୍କାଳୀନ ସାମାଜିକ ବ୍ୟବସ୍ଥାନୁଯାୟୀ ଯମଙ୍କ ନିଳୟଥିବା ଦକ୍ଷିଣ ଦିଗକୁ ମୁଣ୍ଡ କରାଇ ଦେଇ ଏହାଙ୍କୁ କବର ଦିଆଯାଇଅଛି । କୁକର୍ମ କରୁଥିବା ବ୍ୟକ୍ତିଙ୍କର ଗତି ନରକକୁ ବୋଲି ଋଗ୍‌ବେଦରେ ( ୧୦ । ୧୨୫ । ୪ ) କୁହାଯାଇଅଛି । ଏହି ଭାବଧାରାର ପ୍ରଭାବ ଉପରୋକ୍ତ କବର ଦେବା ପଦ୍ଧତି ଉପରେ ପଡ଼ି ଯେ ନଥିବ, ସେ କଥା କିଏ କହିବ ?

ଏଠାରୁ ଆଉ ଗୋଟିଏ ପ୍ରକାର କବର ଦେବା ପ୍ରଥାର ମଧ୍ୟ ସନ୍ଧାନ ମିଳିଛି । ସେଥିରେ କାଷ୍ଠର ଶବାଧାର ବ୍ୟବହୃତ ହୋଇଛି ; ଆଉ ମଧ୍ୟ

ଶବକୁ ଏକ କାର୍ପାସ ବସ୍ତ୍ରରେ ଆବୃତ କରାଯାଇଛି । ଏ ପ୍ରକାର କବର ଦେବା ପ୍ରଥା ସେତେବେଳେ ସମକାଳୀନ ସୁମେରରେ ପ୍ରଚଳିତ ଥିଲା । ଏଥିରୁ ପ୍ରମାଣ ମିଳୁଛି ଯେ ସିନ୍ଧୁ-ସଭ୍ୟତାର ଅଧିବାସୀମାନେ କାର୍ପାସ ବସ୍ତ୍ରର ବ୍ୟବହାର ଜାଣିଥିଲେ ଏବଂ ସେମାନଙ୍କ ସହିତ ସୁମେରର ବାଣିଜ୍ୟିକ ତଥା ସାଂସ୍କୃତିକ ସମ୍ପର୍କ ସ୍ଥାପିତ ହୋଇଥିଲା । କେବଳ ତ ସୁମେର ନୁହେଁ, ନୀଳନଦୀ ଓ ଟାଇଗ୍ରିସ୍-ଇଉଫ୍ରେଟିସ୍ ଅବବାହିକାରେ ଥିବା ଅନ୍ୟାନ୍ୟ ଦେଶମାନଙ୍କ ସହିତ ମଧ୍ୟ ସେମାନଙ୍କର ବାଣିଜ୍ୟିକ ଓ ସାଂସ୍କୃତିକ ସମ୍ପର୍କ ଥିବାର ବହୁ ପ୍ରମାଣ ମିଳୁଛି । ଏବଂବିଧ ସମ୍ପର୍କ ଫଳରେ ହରପ୍ପାରେ ବହୁ ବିଦେଶୀୟମାନେ ଅବସ୍ଥାନ କରୁଥିବେ ଏବଂ ସେମାନଙ୍କ ମୃତ୍ୟୁପରେ ନିଜ ନିଜର ପ୍ରଥା ଅନୁଯାୟୀ ସେମାନଙ୍କୁ କବର ଦିଆଯାଉଥିବ । ଉପରୋକ୍ତ କବରଟି ବୋଧହୁଏ ସେହିଭଳି କୌଣସି ଜଣେ ସୁମେରୀୟ ବ୍ୟକ୍ତିଙ୍କର ହୋଇଥିବ । (୧୦) ଏଠାରେ ଗୋଟିଏ ବିଷୟ ଲକ୍ଷ୍ୟ କରିବାର କଥା ଏହି ଯେ ଆଜିକାଲି ଭଳି ବିଭିନ୍ନ ଧର୍ମାବଲମ୍ବୀ ଓ ବିଭିନ୍ନ ଗୋଷ୍ଠୀର ଲୋକଙ୍କ ଲାଗି ସ୍ୱତନ୍ତ୍ର ଶ୍ମଶାନ ବା କବରସ୍ଥାନମାନ ସେତେବେଳେ ନ ଥିଲା । ଗୋଟିଏ କବରସ୍ଥାନରେ ସମସ୍ତେ ନିଜନିଜର ସାମାଜିକ ପ୍ରଥାନୁଯାୟୀ କବର ପାଉଥିଲେ । ଏହା ସିନ୍ଧୁ-ସଂସ୍କୃତିରେ ପ୍ରଚଳିତ ଥିବା ଧର୍ମନିରପେକ୍ଷତାର ଏକ ବଳିଷ୍ଠ ପ୍ରମାଣର ସୂଚନା ଦିଏ ।

ଅସ୍ଥି ପରୀକ୍ଷା ଫଳରେ ଜଣା ପଡ଼ୁଛି ଯେ ଏହି ଶବଟି ହେଉଛି ୧୮-୨୫ ବର୍ଷ ବୟସ୍କା ଜଣେ ନାରୀଙ୍କର । ଶବାଧାରର ତଳପଟ ଚନ୍ଦନ କାଠରେ ନିର୍ମିତ ଓ ଉପର ଆବରଣଟି ଦେବଦାରୁ କାଠରେ ନିର୍ମିତ । ଶବାଧାରର ଭିତର ପଟେ ଓ ଶବ ଉପରେ କୌଣସି ତରଳ ସବୁଜ ରଙ୍ଗର ପ୍ରଲେପ ଦିଆଯାଇଥିବା ଦୃଷ୍ଟ ହୁଏ । ଏହା ଶବକୁ ପଚନ ପ୍ରକ୍ରିୟାରୁ ରକ୍ଷା କରିବା ଲାଗି ବ୍ୟବହୃତ ହୋଇଥିବା କୌଣସି ପ୍ରଲେପ ହୋଇଥିବାର ସମ୍ଭାବନା । ଏହାର ଅବଶ୍ୟ ରାସାୟନିକ ପରୀକ୍ଷା ଏ ପର୍ଯ୍ୟନ୍ତ କରାଯାଇନାହିଁ । ଏହା କରାଯାଇଥିଲେ ଯାହା କିଛି ସତ୍ୟାସତ୍ୟ ହୁଏତ ଜଣାପଡ଼ିଥାନ୍ତା । (୧୧) ଏହି ନାରୀଙ୍କର ଯେଉଁ ବ୍ୟକ୍ତିଗତ ଅଳଙ୍କାରମାନ ଓ ଅନ୍ୟାନ୍ୟ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନ କବର ମଧ୍ୟରେ ରଖାଯାଇଛି, ତନ୍ମଧ୍ୟରୁ ଦକ୍ଷିଣ ହସ୍ତର ମଧ୍ୟାଙ୍ଗୁଳିରେ ଥିବା ଏକ ତାମ୍ର ମୁଦ୍ରିକା ଏବଂ ଶଙ୍ଖ-ନିର୍ମିତ କାନର ରିଙ୍ଗ୍ ଅନ୍ୟତମ । (୧୨)

ଏହି କବରଖାନା ଅଞ୍ଚଳରୁ ଯେଉଁଗୁଡ଼ିକ କବର ଖନନ କରାଯାଇଛି, ତନ୍ମଧ୍ୟରୁ ପ୍ରତ୍ୟେକ କବରରୁ ମୃଣ୍ମୟ ପାତ୍ର, ବ୍ୟକ୍ତିଗତ ଅଳଙ୍କାର, ପ୍ରସାଧନ ସାମଗ୍ରୀ ଓ ଅନ୍ୟାନ୍ୟ ନିତ୍ୟ-ବ୍ୟବହାର୍ଯ୍ୟ ବସ୍ତୁମାନ ମିଳିଛି । ହରପ୍ପାର ବସ୍ତି ଅଞ୍ଚଳରୁ ଯେତେ ପ୍ରକାର ପାତ୍ରର ସନ୍ଧାନ ମିଳିଛି, ସେହି ସମସ୍ତ ପାତ୍ର ପ୍ରାୟ କବରମାନଙ୍କରେ ବ୍ୟବହୃତ । ପୋହଳାର ମାଳି, ଶଙ୍ଖ,କାଚ, ଶଙ୍ଖ ତିଆରି କାନର ରିଙ୍ଗ୍, ତାମ୍ର ମୁଦ୍ରିକା, ତାମ୍ର ଦର୍ପଣ, ଆଦି

ଏହାର ଅନ୍ତର୍ଗତ । ୧୬ଟି କବର ମଧ୍ୟରୁ ପ୍ରତ୍ୟେକରୁ ଗୋଟିଏ ଲେଖାଏଁ ତାମ୍ର ଦର୍ପଣ ମିଳିଥିବା କଥା ଶାସ୍ତ୍ରୀ କହିଛନ୍ତି । (୧୩)

କବରମାନଙ୍କରୁ ମାନବାସ୍ଥି ସହିତ ପଶୁପକ୍ଷୀମାନଙ୍କର ଅସ୍ଥି ମଧ୍ୟ ମିଳୁଛି । ବୋଧହୁଏ ମୃତବ୍ୟକ୍ତିଙ୍କର ଖାଦ୍ୟଲାଗି ଏହି ପଶୁପକ୍ଷୀଙ୍କୁ ଜୀବନ୍ତ କିମ୍ବା ମୃତ ଅବସ୍ଥାରେ କବର ଦିଆ-ଯାଉଥିଲା । ଗୋଟିଏ କବରରୁ କୁକ୍କୁରାସ୍ଥି ମିଳିଛି । ସେଠାରେ ମୃତବ୍ୟକ୍ତିଙ୍କ ହାତରେ ଗୋଟିଏ ହାତଲଗା ମୃଣ୍ମୟ ପ୍ରଦୀପ ଧରାଇ ଦିଆଯାଇଅଛି । ମୃତ୍ୟୁ ପରେ ପଡ଼ିଥିବା ଅନ୍ଧକାରମୟ ପଥକୁ ଏହି ପ୍ରଦୀପ ସାହାଯ୍ୟରେ ମୃତବ୍ୟକ୍ତିଙ୍କ ଆତ୍ମା ଅତିକ୍ରମ କରି-ପାରିବାର କଳ୍ପନା ଏ ପ୍ରକାର ବିଧିର ପୃଷ୍ଠଭୂମିରେ ଥିବା ପରି ମନେହୁଏ ।

ଏ ତ ଗଲା ହରପ୍ପାସ୍ଥ R-37 କବରଖାନାର ସ୍ଥୂଳଚିତ୍ର । ଏ ପ୍ରକାର କବର-ଖାନା H (Cemetery H) ର ଚିତ୍ର ସାମାନ୍ୟ ଭିନ୍ନ ଧରଣର । ଏହି କବର-ଖାନାରେ ବ୍ୟବହୃତ ହୋଇଥିବା ଚିତ୍ରିତ ମୃଣ୍ମୟ ପାତ୍ରମାନ ନଗର ମଧ୍ୟରେ ବ୍ୟବହୃତ ହେଉଥିବା ଧର୍ମନିରପେକ୍ଷ ପାତ୍ରମାନଙ୍କ ଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଡକ୍ଟର୍ଭେଲର୍ ଲ୍ୟାଟ୍ସ ଏହି ପାର୍ଥକ୍ୟ ଉପରେ ଯଥାର୍ଥରେ ଯଥେଷ୍ଟ ଗୁରୁତ୍ୱ ଆରୋପ କରିଛନ୍ତି । (୧୪) ଏଠାରେ ଲାଲ୍ ରଙ୍ଗର ମୃଣ୍ମୟ ପାତ୍ରମାନଙ୍କରେ କଳା ରଙ୍ଗର ଯେଉଁ ଚିତ୍ରମାନ ଅଙ୍କିତ ହୋଇଛି, ତାହା ବାସ୍ତବିକ ଅନନ୍ୟ । ଗାଈ, ଛେଳି, ମୟୂର, ମାଛ ଆଦିଙ୍କର ଚିତ୍ର ସେମାନଙ୍କର ଅନ୍ତର୍ଭୁକ୍ତ । ପିଗଟ୍ଙ୍କ ମତରେ ସାରା ପ୍ରାଚୀନ ପ୍ରାଚ୍ୟ ଜଗତରେ ଏଭଳି ଚିତ୍ରିତ ମୃଣ୍ମୟ ପାତ୍ରର ତୁଳନା ଆଦୌ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । (୧୫) ଏଠାକାର କବରମାନ ଦୁଇଟି ସ୍ତରରେ ରହିଛି । ଗୋଟିଏ ସ୍ତରର କବର ଦେବା ପ୍ରଣାଳୀ ଅନ୍ୟ ସ୍ତରର କବର ଦେବା ପ୍ରଣାଳୀ ଠାରୁ ପୃଥକ୍ । ନିମ୍ନସ୍ତରରେ ଥିବା କବରମାନଙ୍କରେ ଶବମାନଙ୍କୁ ଉତ୍ତର-ଦକ୍ଷିଣ ଭାବରେ ଶାୟିତ କରାଯାଇ କବର ଦିଆଯାଇଛି । ନିମ୍ନ ସ୍ତରରେ ଥିବା ୨୫ ଗୋଟି ଓ ଉପର ସ୍ତରରେ ଥିବା ୧୪୦ ଗୋଟି କବର ଖୋଳି ସେଗୁଡ଼ିକର ଅଭ୍ୟନ୍ତର ପରୀକ୍ଷା କରାଯାଇଛି । ସେହି ପରୀକ୍ଷାରୁ ନିମ୍ନଲିଖିତ ଫଳାଫଳ ଜଣାପଡ଼େ ।

ନିମ୍ନ ସ୍ତରର କବରମାନଙ୍କରୁ ଜଣାଯାଏ ଯେ ଏଠାରେ ମଧ୍ୟ ମୃତବ୍ୟକ୍ତିଙ୍କୁ ଲମ୍ବ-ଭାବରେ ଶାୟିତ କରାଯାଇ କବର ଦେବା ବିଧି ପ୍ରଚଳିତ ଥିଲା । ଯେତୋଟି କବର ଏଠାରୁ ବାହାରିଛି, ସେହି ସବୁଗୁଡ଼ିକ ହେଉଛି ବୟସ୍କ ବ୍ୟକ୍ତିଙ୍କର । ଶିଶୁମାନଙ୍କୁ କବର ଦେବାର ପ୍ରମାଣ ଏ ପର୍ଯ୍ୟନ୍ତ ମିଳିନାହିଁ । ବୋଧହୁଏ ଶିଶୁମାନଙ୍କୁ କବର ଦିଆଯାଉ ନଥିଲା । ସେମାନଙ୍କୁ ବୋଧହୁଏ ଶ୍ମଶାନଭୂମିର ନରମାଂସାହାରୀ ଜନ୍ତୁମାନଙ୍କର ଆହାର ଦେବା ଲାଗି ଫିଙ୍ଗି ଦିଆଯାଉଥିଲା । ଅବଶ୍ୟ ଶିଶୁମାନଙ୍କୁ କବର ଦେବାର ପ୍ରମାଣ ଉପର ସ୍ତରରେ

ଥିବା କବରମାନଙ୍କରୁ ମିଳୁଛି, ଯାହା ଉପରେ କ ପରେ ଆଲୋଚନା କରାଯିବ । ଏଠାରେ ମୃତବ୍ୟକ୍ତିମାନଙ୍କୁ କବର ଲାଗି ଶାୟିତ କରିବାରେ ବିଭିନ୍ନ ଦିଗ ଅନୁସରଣ କରାଯାଇଛି । କବରଖାନା R-37 ରେ ଉତ୍ତର-ଦକ୍ଷିଣ କରି ମୃତବ୍ୟକ୍ତିମାନଙ୍କୁ ଶାୟିତ କରାଇବାର ପଦ୍ଧତି ଏଠାରେ ଅନୁସୃତ ହୋଇନାହିଁ । କେତେବେଳେ ଏମାନଙ୍କୁ ପୂର୍ବ-ପଶ୍ଚିମ କରି ଓ ଆଉ କେତେବେଳେ ଉତ୍ତର-ପୂର୍ବରୁ ଦକ୍ଷିଣ ପଶ୍ଚିମ କରି ଶୁଆଇ ଦିଆଯାଇଛି ।-ପ୍ରଥମୋକ୍ତ କବର-ମାନଙ୍କରେ ମସ୍ତକ ଅଛି ପୂର୍ବାଭିମୁଖୀ ଓ ଦ୍ୱିତୀୟୋକ୍ତ କବରମାନଙ୍କରେ ଏହା ଅଛି ଉତ୍ତର-ପୂର୍ବାଭିମୁଖୀ । ଗୋଟିଏ କ୍ଷେତ୍ରରେ (କବର ସଂଖ୍ୟା ୭୧୮) ଶବକୁ ପଶ୍ଚିମ ପୂର୍ବ କରି ଶାୟିତ କରାଯାଇ ମସ୍ତକକୁ ପଶ୍ଚିମାଭିମୁଖୀ କରାଯାଇଛି । ଆମର ଗୋଟିଏ କଥା ଅଛି, ମଲା-ମୁଣ୍ଡ ପଶ୍ଚିମକୁ ନ ହେଲେ ପୂର୍ବକୁ । ହିନ୍ଦୁମାନଙ୍କର ଏହି ଧାରଣା ଏଠାରେ ଅନୁସୃତ ହୋଇ ଥିବା ପରି ମନେହୁଏ । ଏହି ଧାରଣାର ଭିତ୍ତିଭୂମି କେତେ ପ୍ରାଚୀନ ତାହା ଏଥିରୁ ସୁସ୍ପଷ୍ଟ । ମୃତବ୍ୟକ୍ତିଙ୍କୁ ଶାୟିତ କରିବାରେ ଦିଗର ବିଭିନ୍ନତା ଥିବା ସଙ୍ଗେ ସଙ୍ଗେ ଶୟନ ଭଙ୍ଗୀରେ ମଧ୍ୟ ବିଭିନ୍ନତା ଦେଖାଯାଏ । କେତେ ଲୋକଙ୍କୁ ମୁହଁ ମାଡ଼କରି ଶୁଆଇ ଦିଆଯାଇଛି, ହାତ ଦୁଇଟିକୁ ଶରୀର ସହିତ ସମାନ୍ତରାଳ ଭାବରେ ରଖାଯାଇଛି କିମ୍ବା ଗ୍ରୀବା ଉପରେ ଛନ୍ଦି ଦିଆଯାଇଛି । କେତେକ କ୍ଷେତ୍ରରେ ଗୋଡ ଦୁଇଟିକୁ ଭାଙ୍ଗି ଦିଆଯାଇଛି ଏବଂ ଆଉ କେତେକ କ୍ଷେତ୍ରରେ ସିଧା ଲମ୍ବ ଭାବରେ ରଖାଯାଇଛି । କେତେକ କ୍ଷେତ୍ରରେ ମୃତବ୍ୟକ୍ତି ବାମ ପାର୍ଶ୍ୱ ଅବଲମ୍ବନ କରି ଶୟନ ଏବଂ ଆଉ କେତେକ କ୍ଷେତ୍ରରେ ଦକ୍ଷିଣ ପାର୍ଶ୍ୱ ଅବଲମ୍ବନ କରି ଶୟାନ । କବର ଦେବା ପ୍ରଥାର ଏହି ବିଭିନ୍ନତା ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ଥିବା ପରଲୋକ ସମ୍ପର୍କୀୟ ଧର୍ମଧାରଣାର ବିଭିନ୍ନତା ବିଷୟରେ ସୂଚନା ଦେଇଥାଏ ।

ଏଠାରେ ମଧ୍ୟ ପ୍ରସାଧନ-ସାମଗ୍ରୀ, ମୃଣ୍ମୟ ପାତ୍ର, ନିତ୍ୟବ୍ୟବହାର୍ଯ୍ୟ ବସ୍ତୁ, ଗ୍ରୀବା, ମେଷ ଆଦି ପଶୁମାନଙ୍କର ମାଂସ ଆଦିକୁ ମୃତବ୍ୟକ୍ତିଙ୍କ ସହିତ କବର ଦିଆଯାଇଥିବା ପରିଦୃଷ୍ଟ । ଏହାଛଡ଼ା ଏଠାରେ ଆବରଣ ଥିବା କଳସ ମଧ୍ୟ ଦୃଷ୍ଟିଗୋଚର ହୁଏ, ଯହିଁରୁ ପ୍ରମାଣ ମିଳେ ଯେ, ଏଥିରେ ମୃତବ୍ୟକ୍ତିର ଆତ୍ମା ଲାଗି କିଛି ପାନୀୟର ବ୍ୟବସ୍ଥା ବୋଧହୁଏ କରାଯାଇଥିବ । ସର୍ବାକୃତିର ମୃଣ୍ମୟ ପାତ୍ରରେ ବୋଧହୁଏ ଖାଦ୍ୟର ବ୍ୟବସ୍ଥା କରାଯାଇଥିବ । ଏହି ପାତ୍ର ଗୁଡ଼ିକୁ ସହଜରେ ବ୍ୟବହାରୋପଯୋଗୀ କରିବା ପାଇଁ ମୃତବ୍ୟକ୍ତିଙ୍କ ହାତପାହାନ୍ତା ସ୍ଥାନ-ମାନଙ୍କରେ ସଜ୍ଜିତ କରି ରଖାଯାଇଛି । ଯେଉଁ ପଶୁ-ଅସ୍ଥିମାନ ମିଳୁଛି, ତହିଁରୁ ଅନୁମିତ ଯେ ଏଗୁଡ଼ିକ ପୂଜ୍ୟାବସ୍ଥିବ ପଶୁ-ଅସ୍ଥି ନୁହେଁ ; ଅନ୍ୟ ପକ୍ଷରେ ଏଗୁଡ଼ିକ ହେଉଛି ଶରୀରର ଆଂଶିକ ଅସ୍ଥି । ଏଥିରୁ ଜଣାଯାଏ ଯେ ମୃତବ୍ୟକ୍ତିଙ୍କ ପରଲୋକର ଖାଦ୍ୟ ଲାଗି କଟା ମାଂସ ବୋଧହୁଏ ସମର୍ପଣ କରାଯାଉଥିଲା । ଏହା ହୁଏତ ଯଜ୍ଞାର୍ପିତ ପବିତ୍ର ମାଂସ ହୋଇ ଥାଇପାରେ ; କାରଣ ସିନ୍ଧୁ-ସଂସ୍କୃତିର ଅଧିବାସୀମାନଙ୍କ ମଧ୍ୟରେ ଯଜ୍ଞାନୁଷ୍ଠାନ ଓ ଅଗ୍ନି-

ଦେବଙ୍କ ପୂଜା ଯେ ବହୁଳ ଭାବରେ ପ୍ରଚଳିତ ଥିଲା, ତାହାର ଭୂରି ଭୂରି ପ୍ରମାଣ ମିଳୁଛି । କେବଳ ତ ହରପ୍ପା ସଂସ୍କୃତିରେ ନୁହେଁ, ଆଧୁନିକ ପ୍ରସ୍ତରଯୁଗୀୟ ସଂସ୍କୃତି କାଳରୁ ମଧ୍ୟ ମୃତବ୍ୟକ୍ତିଙ୍କ କବରରେ ପଶୁମାଂସ ଅର୍ପଣ କରିବାର ପ୍ରଥା ପ୍ରଚଳିତ ହୋଇଆସିଛି । ଏ ସମ୍ପର୍କରେ ପୁରୁଷୋତ୍ତମ ସିଂହ ଯଥାର୍ଥରେ କହିଛନ୍ତି :

> "The offering of animal flesh was a common feature in the burials of neolithic cultures of South India, in the Harappa Culture and in the megalithic culture of the Vindhyan ranges" । (୧୬)

ଏ ତ ଗଲା ନିମ୍ନ ସ୍ତରରେ ଥିବା କବରଗୁଡ଼ିକରେ ଅନୁସୃତ ହୋଇଥିବା ପଦ୍ଧତି କଥା । ଉପର ସ୍ତରରେ ଥିବା କବର ଗୁଡ଼ିକରେ ସମ୍ପୂର୍ଣ୍ଣ ଭାବରେ ଭିନ୍ନ ପଦ୍ଧତିମାନ ଅନୁସୃତ, ଏଥିରେ ପୂର୍ଣ୍ଣାବୟବ ପରିବର୍ତ୍ତେ ଶରୀରରେ ଆଂଶିକ ଅସ୍ଥି ସଂଗୃହୀତ କରିଯାଇ ତାହାକୁ କବର ଦିଆଯାଉଥିଲା । ଏ ପ୍ରକାର ଅସ୍ଥି ସଂଗ୍ରହର ପଦ୍ଧତି ଥିଲା ଦୁଇ ପ୍ରକାର । ପ୍ରଥମ ପ୍ରକାର ପଦ୍ଧତିରେ ଶବକୁ ସଂସ୍କାର କରିଯାଇ ଚିତା-ଭସ୍ମରୁ ଅସ୍ଥି ସଂଗ୍ରହ କରି-ଯାଉଥିଲା । ଦ୍ୱିତୀୟ ପ୍ରକାର ପଦ୍ଧତିରେ ଶବକୁ ଜନ୍ତୁମାନଙ୍କ ଆହାର ଲାଗି ଶ୍ମଶାନ ଭୂମିରେ ଫିଙ୍ଗି ଦିଆଯାଉଥିଲା ଏବଂ ପରେ ସେଥିରୁ ଅସ୍ଥି ସଂଗ୍ରହ କରି ତାହାକୁ କବର ଦିଆଯାଉଥିଲା । (୧୭) ଏହି ସଂଗୃହୀତ ଅସ୍ଥିକୁ ଏକ ଅପେକ୍ଷାକୃତ ବୃହଦାକାର ମୃଣ୍ମୟ ପାତ୍ର ମଧ୍ୟରେ ରଖାଯାଇ ପାତ୍ରଟିକୁ କବର ଦିଆଯାଉଥିଲା । ଏହି ପାତ୍ର କବର ପାର୍ଶ୍ୱରେ ମୃତବ୍ୟକ୍ତିଙ୍କ ବ୍ୟବହାର ଲାଗି ନିତ୍ୟବ୍ୟବହାର୍ଯ୍ୟ ବସ୍ତୁ ପ୍ରସାଧାନ ସାମଗ୍ରୀ ଆଦିକୁ ମଧ୍ୟ କବର ଦିଆଯାଉଥିଲା । ଏଠାରେ ବୟସ୍କମାନଙ୍କ ସହିତ ଶିଶୁମାନଙ୍କର କବର ମଧ୍ୟ ଦେଖିବାକୁ ମିଳିଥାଏ । ବୟସ୍କଙ୍କ କବର ଲାଗି ମୁଣ୍ଡର ଖପୁରୀ ଓ ଲମ୍ବା ଅସ୍ଥିମାନ ସଂଗୃହୀତ କରି-ଯାଉଥିଲା । ଶିଶୁକୁ କିନ୍ତୁ ପୂର୍ଣ୍ଣାବୟବ ଭାବରେ ମୃଣ୍ମୟ ପାତ୍ର ମଧ୍ୟରେ କବର ଦିଆ-ଯାଉଥିଲା । ଏପରି ସ୍ଥଳରେ ଜନ୍ମର ଠିକ୍ ଅବ୍ୟବହିତ ପୂର୍ବରୁ ଶିଶୁ ଜରାୟୁ ମଧ୍ୟରେ ଯେଉଁ ଅବସ୍ଥାରେ ଥାଏ, ସେହି ଅବସ୍ଥାରେ ମୃତଶିଶୁର ଶବଟିକୁ ପାତ୍ର ମଧ୍ୟରେ ରଖା-ଯାଉଥିଲା । ସତେ ଯେପରି ତାକୁ ପୁନର୍ଜନ୍ମ ଲାଗି ପ୍ରସ୍ତୁତ କରି ରଖି ଦିଆଯାଉଥିଲା । ଏଥିରୁ ଅନୁମିତ ହୁଏ ଯେ ମୃତ୍ୟୁ ପରେ ଆତ୍ମାର ସ୍ଥିତି, ପୁନର୍ଜନ୍ମ ଆଦି ସମ୍ପର୍କରେ ବିଶ୍ୱାସ ସିନ୍ଧୁ-ସଂସ୍କୃତିର ଅଧିବାସୀଙ୍କୁ ଅଜ୍ଞାତ ନ ଥିଲା ।

କବରଖାନାରୁ ମିଳିଥିବା ସମସ୍ତ ପାତ୍ର ହେଉଛି ଲାଲ୍ ରଙ୍ଗର ଓ ସେଗୁଡ଼ିକ କୃଷ୍ଣ ରଙ୍ଗର ବିଭିନ୍ନ ଚିତ୍ରରେ ଶୋଭିତ । ଏହି ଚିତ୍ରଗୁଡ଼ିକ ଉପରେ ବୈଦିକ ଆର୍ଯ୍ୟମାନଙ୍କର

ଧର୍ମ-ଧାରଣା ଓ ପରଲୋକ-ସମ୍ପର୍କୀୟ ଧାରଣାର ପ୍ରଭାବ ପଡ଼ିଥିବା ଭଳି ମନେହୁଏ । କେତୋଟି ପ୍ରମାଣ ଏଥିପାଇଁ ଯଥେଷ୍ଟ ହେବ । ଗୋଟିଏ ମୃଣ୍ମୟ ପାତ୍ରରେ ତିନୋଟି ଉଡ଼୍ଡୀୟମାନ ମୟୂରର ଚିତ୍ର ଅଙ୍କିତ । ମୟୂରମାନଙ୍କ ମଧ୍ୟବର୍ତ୍ତୀ ସ୍ଥାନରେ ଆକାଶର ତାରାମାନେ ଅଙ୍କିତ । ପ୍ରତ୍ୟେକ ମୟୂର ଉପରେ ଗୋଟିଏ ଗୋଟିଏ କ୍ଷୁଦ୍ରାକାର ବ୍ୟକ୍ତି ଆସୀନ । ଏହି କ୍ଷୁଦ୍ରାକାର ବ୍ୟକ୍ତି ବୋଧହୁଏ ମୃତବ୍ୟକ୍ତିଙ୍କର ଆତ୍ମା ଓ ମୟୂର ସାହାଯ୍ୟରେ ସ୍ୱର୍ଗଭୂମିକୁ ଯାଉଛନ୍ତି । ବାସ୍ତବିକ 'ମୟୂର' ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ମଧ୍ୟ ଏହି ଭାବକୁ ସୂଚିତ କରିଥାଏ । 'ମୟୂଃ' ଅର୍ଥ ହେଲା 'ଗତି' ବା ମୁକ୍ତି । (୯୮) ଏହାଙ୍କୁ ଯେ, 'ଗତି' ବା 'ଦଦାତି' ବା ଦିଏ, ସେ ହେଲା ମୟୂର । ଏହି ପକ୍ଷୀ ଗତି ବା ମୁକ୍ତି ଦିଏ ବା ସ୍ୱର୍ଗ ଭୂମିରେ ଆତ୍ମାକୁ ନେଇ ପହଞ୍ଚାଇ ଦିଏ ବୋଲି ତାକୁ କୁହାଯାଏ ମୟୂର । ଆଜିକାଲି ହିନ୍ଦୁମାନଙ୍କ ମଧ୍ୟରେ ମୃତବ୍ୟକ୍ତିଙ୍କ ଦଶାହ ଶୁଦ୍ଧିକ୍ରିୟାରେ କାକ ଲାଗି ପିଣ୍ଡ ଅନ୍ନ ଅର୍ପଣ କରିବାର ଏକ ପ୍ରଥା ଚଳୁଛି । ସେଠାରେ ଉଚ୍ଚାରଣ କରାଯାଉଥିବା ମନ୍ତ୍ରରେ କାକକୁ ଯମପୁରକୁ ଯାଇ ଏହି ଶୁଦ୍ଧିକ୍ରିୟାର ସମ୍ବାଦ ପହଞ୍ଚାଇ ଦେବାପାଇଁ ଅନୁରୋଧ କରାଯାଉଛି ଏବଂ ପୁଣି କୁହାଯାଉଛି ଯେ ଯମରାଜା ମୃତବ୍ୟକ୍ତିଙ୍କ ଆତ୍ମା ଲାଗି ସ୍ୱର୍ଗଦ୍ୱାର ଯେପରି ଉନ୍ମୁକ୍ତ କରିଦିଅନ୍ତି ସେ କଥା ପ୍ରତି ସେ (କାକ) ଯେପରି ଦୃଷ୍ଟି ଦେବ । ହରପ୍ପୀୟ ସଂସ୍କୃତିର ଭାବଧାରା ସହିତ ଉପରୋକ୍ତ ଶୁଦ୍ଧିମନ୍ତ୍ରର ଭାବଧାରାର ସାମ୍ୟ ଥିବାର ମନେହୁଏ । କେବଳ ପକ୍ଷୀରେ ଯାହା ତାରତମ୍ୟ ରହୁଛି । ଗୋଟିକରେ ମୟୂର ହେଲେ ଅପରଟିରେ ହେଉଛି କାକ । କାଳକ୍ରମେ ଭାରତଭୂମିରେ ଆରଣ୍ୟକ ପରିବେଶର ବିଲୋପ ସାଧନ ଫଳରେ ଲୋକାଳୟ ନିକଟରୁ ମୟୂର ଧୂଏତ ଲୋପ ପାଇ ଯାଇଥିବେ ; ଏବଂ ସେଥିପାଇଁ ମୟୂର ପରିବର୍ତ୍ତେ କାକ ଲାଗି ଏହି ଅନ୍ନ ଦେବାର ବ୍ୟବସ୍ଥା କରାଯାଇଥିବ ।

ଆଉ ଏକ ମୃଣ୍ମୟ ପାତ୍ରସ୍ଥ ଚିତ୍ରରେ ଆର୍ଯ୍ୟ ସଂସ୍କୃତିର ପ୍ରଭାବ ସ୍ପଷ୍ଟତର । ଏଥିରେ ଦୀର୍ଘ ଓ ବକ୍ର ଶୃଙ୍ଗଯୁକ୍ତ ଦୁଇଟି ଗାଈ (ବା ବଳଦ) ଅଙ୍କିତ । ସେମାନଙ୍କୁ ଜଣେ ବ୍ୟକ୍ତି ଟାଣି ଟାଣି ନେଉଛନ୍ତି । ଅବଶ୍ୟ ଏ ବ୍ୟକ୍ତିଙ୍କର ରୂପ ବିଚିତ୍ର । ଏହାଙ୍କର ଗୋଟିଏ ଚଞ୍ଚୁ ଅଛି । ସେ ମଧ୍ୟ ଧନୁର୍ବାଣ ହସ୍ତରେ ବିଦ୍ୟମାନ । ଗୋଟିଏ ଗାଈ ଶ୍ୱାନ ଦ୍ୱାରା ଆକ୍ରାନ୍ତ । ଏହି ଶ୍ୱାନର ପୃଷ୍ଠ ଦେଶରେ ଉଡ଼୍ଡୀୟମାନ ଦୁଇଟି ମୟୂର । ଏହି ଶ୍ୱାନ ମୃତ୍ୟୁର ରାଜା ଯମଙ୍କର ଶ୍ୱାନ ବୋଲି ମନେହୁଏ । ଶ୍ୱାନଦ୍ୱାରା ଗାଈଟି ଆକ୍ରାନ୍ତ ହୋଇଥିବା ଚିତ୍ର ମୃତ୍ୟୁଭୟର ସଙ୍କେତ ଦିଏ । ଅପର ଗାଈଟି ମୃତ୍ୟୁପରେ ଆତ୍ମାର ତପ୍ତ-ବୈତରଣୀ ପାର ହେବା ଲାଗି ଗୃହୋହିତଙ୍କୁ ଦାନ ଦିଆଯାଉଥିବା ଗାଈର ସଙ୍କେତ ଦେଲା ଭଳି ମନେ ହୁଏ । ଏହିଭଳି ଭାବରେ ସୁବିଧାରେ ତପ୍ତ-ବୈତରଣୀ ପାର ହୋଇ ଆତ୍ମା ମୟୂର ସାହାଯ୍ୟରେ ସ୍ୱର୍ଗଭୂମିକୁ ଯିବା କଥାଟି ଏଠାରେ ଚିତ୍ର ମାଧ୍ୟମରେ ସୂଚାଇ ଦିଆଯାଇଛି । ଉପରୋକ୍ତ ଚିତ୍ରରେ ଗୋଟିଏ ବୃହଦାକାର ଛାଗର ଚିତ୍ର ମଧ୍ୟ ଅଛି । ଏହି ଛାଗ ବୋଧହୁଏ

ଯଜ୍ଞ ଲାଗି ଅଭିପ୍ରେତ ପଶୁ । ଶବସଂସ୍କାର ସମୟରେ ଅଗ୍ନିଦେବଙ୍କୁ ଆବାହନ କରି ଋଗ୍‌ବେଦରେ ତାଙ୍କ ଲାଗି ବଳି ଦିଆଯାଇଥିବା ଛାଗର ମାଂସ ବା 'ଅଜଭାଗ' ଗ୍ରହଣ କରିବା ପାଇଁ ଅନୁରୋଧ କରାଯାଇ ମୃତବ୍ୟକ୍ତିଙ୍କ ଆତ୍ମାକୁ ସ୍ୱର୍ଗଭୂମିକୁ ନେଇଯିବା ପାଇଁ ପ୍ରାର୍ଥନା କରାଯାଇଛି । (୧୯) ଏହାକୁ ଆଉ ଏକ ପ୍ରକାର ମଧ୍ୟ ଅର୍ଥ କରାଯାଇପାରେ । ସେହି ଅର୍ଥରେ ଏଠାରେ ବଳଦ ଦାଗଟି ଅଙ୍କିତ ହୋଇଛନ୍ତି ବୋଲି ଗ୍ରହଣ କରିବାକୁ ହେବ । ବହୁ ପ୍ରାଚୀନ କାଳରୁ ବୈଦିକ ଯୁଗରୁ ଆର୍ଯ୍ୟମାନଙ୍କ ମଧ୍ୟରେ ଅତିଥି-ସେବାର ମାହାତ୍ମ୍ୟ ଉପରେ ଗୁରୁତ୍ୱ ଦିଆଯାଉଥିଲା । ବ୍ରାହ୍ମଣ କିମ୍ବା ରାଜା ଯଦି ଗୃହକୁ ଅତିଥି ହୋଇ ଆସନ୍ତି, ତେବେ ତାଙ୍କ ପାଇଁ ବଡ଼ ବଳଦ କିମ୍ବା ବଡ଼ ଛେଳିଟିଏ କାଟି ତା'ର ମାଂସ ରାନ୍ଧିବା ପାଇଁ ଶାସ୍ତ୍ରୀୟ ପରାମର୍ଶ ଦିଆଯାଉଥିଲା । ଏପରିକି ବହୁ ବର୍ଷ ଅତୀତ ହେବାପରେ ମଧ୍ୟ ବ୍ରାହ୍ମଣ ଯୁଗରେ ଏହି ପ୍ରଥା ଚାଲୁଥିଲା । ସେଥିପାଇଁ 'ଶତପଥ ବ୍ରାହ୍ମଣ' ରେ (୩ । ୪ । ୧ । ୨) ସ୍ପଷ୍ଟ ଭାବରେ ଉଲ୍ଲେଖ କରାଯାଇଛି : ରାଜ୍ଞେ ବା ବ୍ରାହ୍ମଣାୟ ବା ମହୋକ୍ଷଂ ବା ମହାଜଂ ବା ପଚେତ୍ ।

ଅର୍ଥାତ୍ ରାଜା କିମ୍ବା ବ୍ରାହ୍ମଣଙ୍କ ଆତିଥେୟତା ପାଇଁ ବଡ଼ ବଳଦ କିମ୍ବା ବଡ଼ ଛେଳି ମାରି ତା'ର ମାଂସ ରାନ୍ଧିବା ଉଚିତ । ଯମଙ୍କୁ ଏଠାରେ ମୃତ୍ୟୁର ରାଜା ବୋଲି କଳ୍ପନା କରାଯାଇଛି । ତାଙ୍କ ଆଗମନରେ ତାଙ୍କୁ ତ ପୁଣି ଆତିଥେୟତା ଦେଇ ତୁଷ୍ଟ କରିବାକୁ ହେବ । ଏଣୁ ତାଙ୍କ ପାଇଁ ବୃହଦାକାର ବଳଦ ଓ ଛାଗ ସମର୍ପିତ ହୋଇଛନ୍ତି । ସେ ତୁଷ୍ଟ ହେଲେ ମୃତବ୍ୟକ୍ତିଙ୍କ ଆତ୍ମାର ସଦ୍‌ଗତି ହେବା ସମ୍ଭବ ହେବ । ଏହି ଦୁଇଟିରୁ ଯେଉଁ ଅର୍ଥଟିକୁ ଗ୍ରହଣ କଲେ ମଧ୍ୟ ଶଂସିତ ଚିତ୍ରରେ ବୈଦିକ ପ୍ରଭାବ ପଡ଼ିଥିବାର ପ୍ରମାଣ ମିଳିବ । ଏହି Cemetery H. ର ଅନେକ କବର ମଧ୍ୟରୁ ଛାଗ ଓ ମେଷର ଅସ୍ଥି ମିଳିଥିବା କଥା ପୂର୍ବରୁ କୁହାଯାଇଛି । ଏହା ବ୍ୟତୀତ ଋଗ୍‌ବେଦରେ ମଧ୍ୟ ମୃତବ୍ୟକ୍ତିଙ୍କ ନିକଟରେ ତାଙ୍କ ବ୍ୟବହୃତ ଧନୁର୍ବାଣ ରଖାଯାଇ ତାଙ୍କର ଅନ୍ତ୍ୟେଷ୍ଟି କରାଯାଉଥିବା କଥାର ଉଲ୍ଲେଖ ଅଛି । (୨୦) ମୂଳତଃ ଋଗ୍‌ବେଦର ଦଶମ ମଣ୍ଡଳସ୍ଥ ୧୪ଶ, ୧୬ଶ, ଓ ୧୮ଶ ମନ୍ତ୍ରମାନଙ୍କରେ ଅନ୍ତ୍ୟେଷ୍ଟି ସମ୍ପର୍କରେ ଯେଉଁସବୁ ବର୍ଣ୍ଣନାମାନ ରହିଛି, ତାହାର ସାମ୍ୟ କବରମାନଙ୍କରୁ ମିଳୁଥିବା ମୃଣ୍ମୟ ପାତ୍ରସ୍ଥ ଚିତ୍ରରେ ବିଦ୍ୟମାନ । ବୈଦିକ ଆର୍ଯ୍ୟମାନେ ଯେହେତୁ ଉଭୟ ଶବ-ସଂସ୍କାର ଓ ଶବକୁ କବର ଦେବା ପଦ୍ଧତି ଅବଲମ୍ବନ କରୁଥିଲେ, ତେଣୁ ଏ ପ୍ରକାର ସୌସାଦୃଶ୍ୟ ନିଶ୍ଚିତ ଭାବରେ ସୂଚନା ଦିଏ ଯେ ଉପରୋକ୍ତ କବର ଦେବା ପଦ୍ଧତିରେ ବୈଦିକ ଆର୍ଯ୍ୟ ସଂସ୍କୃତିର ପ୍ରଭାବ ପଡ଼ିଛି । ଅଥର୍ବ ବେଦରେ (୧୮ । ୨ । ୩୪ ) ଯେଉଁମାନଙ୍କୁ ଦାହ କରି ନଯାଇ ଭୂମିତଳେ କବର ଦିଆଯାଉଥିଲା, ସେମାନଙ୍କୁ କୁହାଯାଉ ଥିଲା 'ଅନାଗ୍ନିଦଗ୍ଧାଃ' । ବାସ୍ତବିକ ରାଖାଲ୍‌ଦାସଙ୍କର ଏହା ହିଁ ମତ । (୨୧) ପ୍ରତ୍ନତତ୍ତ୍ୱବିତ୍ ଡ. ଡ଼. କୋସାମ୍ବି ଓ ଆଲ୍‌ଚିନ୍ ଦମ୍ପତି ମଧ୍ୟ ଏଥିରେ ସହମତ । (୨୨)

ସିନ୍ଧୁ ନଦୀକୁ ଲାଗି କରି ରହିଥିବା ମହେଞ୍ଜୋଦାରୋ ନଗରଟି କିପରି କ୍ରମାଗତ ଭାବରେ ନଦୀର ବନ୍ୟା ଫଳରେ ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଇଛି, ତାହାର ସୂଚନା ପୂର୍ବରୁ ଦିଆଯାଇଛି । ଆହୁରିମଧ୍ୟ ସୂଚନା ଦିଆଯାଇଛି ଯେ ଏହି ବନ୍ୟାରେ କବରଖାନାଟି ନଦୀ ଓ ନଗରର ବସ୍ତିର ମଧ୍ୟାଞ୍ଚଳରେ ଅବସ୍ଥିତ ଥିବା ହେତୁରୁ ବିଶେଷ ଭାବରେ କ୍ଷତଗ୍ରସ୍ତ ହୋଇଛି । ଅନେକ କବର ଏହି ପ୍ରକ୍ରିୟାରେ ସମ୍ପୂର୍ଣ୍ଣ ଭାବରେ ଲୁପ୍ତ ହୋଇ ଯାଇଥିବାର ସମ୍ଭାବନା କିଛି ବିଚିତ୍ର ନୁହେଁ । ଏହି ପ୍ରଳୟଙ୍କରୀ ବନ୍ୟାରେ ମହେଞ୍ଜୋଦାରୋ ନଗର ଧ୍ୱସ୍ତ ବିଧ୍ୱସ୍ତ ହୋଇଥିବାର ସମ୍ଭାବନା ଉପରେ ଗୁରୁତ୍ୱ ଆରୋପ କରି ପ୍ରତ୍ନତତ୍ତ୍ୱବିତ୍ ଆଲଚିନ୍ ଦମ୍ପତି ଯଥାର୍ଥରେ କହିଛନ୍ତି :

> "Another theory that has been advanced for the end of Mahenjodaro is that it was engulfed in a great flood affecting a wide area of the plains over a long period" (୨୩)

ଏହା ବ୍ୟତୀତ ସିନ୍ଧୁ ନଦୀର ପାଣି ସ୍ତରର ପରିମାଣରେ ବଢ଼ିବା ହେତୁରୁ ଏଠାକାର ନିମ୍ନତମ ସ୍ତର ପର୍ଯ୍ୟନ୍ତ ଆଜି ସୁଦ୍ଧା ଖନନକାର୍ଯ୍ୟ ସମ୍ଭବପର ହୋଇ ପାରିନାହିଁ । ଏଣୁ ମହେଞ୍ଜୋ-ଦାରୋର ପ୍ରାଥମିକ କାଳମାନଙ୍କରେ କିଭଳି ଭାବରେ ମୃତବ୍ୟକ୍ତିଙ୍କୁ କବର ଦିଆଯାଉଥିଲା, ତା'ର ପ୍ରତ୍ୟକ୍ଷ ପ୍ରମାଣ ଏ ପର୍ଯ୍ୟନ୍ତ ମିଳିନାହିଁ । ପରୋକ୍ଷ ପ୍ରମାଣ ସ୍ୱରୂପ ହରପ୍ପା, କାଲିବଙ୍ଗା ଆଦି ସ୍ଥାନମାନଙ୍କରେ ସମସାମୟିକ କବର ଦେବା ପଦ୍ଧତିରୁ ଯାହା କିଛି ଏ ସମ୍ପର୍କରେ ପ୍ରମାଣ ଆମେ ପାଇପାରୁଛୁ । ସେ ଯାହା ହେଉ, ମହେଞ୍ଜୋଦାରୋସ୍ଥ କବର-ଖାନାର ଉପର ସ୍ତରରେ ଥିବା କବରମାନଙ୍କର ଖନନ ଫଳରେ ଏ ବିଷୟରେ ଯେଉଁ ତଥ୍ୟ-ମାନ ଆବିଷ୍କୃତ ହୋଇଛି, ସେ ସମ୍ପର୍କରେ ଆଲୋଚନା କରିବା ନିଶ୍ଚିତ ଭାବରେ କୌତୂ-ହଳୋଦ୍ଦୀପକ ।

ମାଟି ଖାତ ଖୋଳି ପୂର୍ଣ୍ଣାବୟବ ମୃତବ୍ୟକ୍ତିଙ୍କୁ କବର ଦେବାର ପ୍ରମାଣ ଏଠାରେ ମିଳୁଥିଲେ ମଧ୍ୟ ଅନେକ ସ୍ଥଳରେ ଅସ୍ଥିଂଶକୁ କବର ଦେଉଥିବାର ପ୍ରମାଣ ପରିଦୃଷ୍ଟ ହୁଏ । ଏଥିରୁ ବିଶ୍ୱାସ ହୁଏ ଯେ କେତେକ ସ୍ଥଳରେ ଶବକୁ ସଂସ୍କାର କରି ସାରିବା ପରେ ଚିତାଗ୍ନିରୁ ଅସ୍ଥି ସଂଗ୍ରହ କରାଯାଇ ତାହାକୁ କବର ଦିଆଯାଇଛି ଏବଂ ଆଉ କେତେକ ସ୍ଥଳରେ ଶବକୁ ପଶୁପକ୍ଷୀଙ୍କ ଆହାର ଲାଗି କିଛି ଦିନ ପାଇଁ ଛାଡ଼ିଦେବା ପରେ ତହିଁରୁ କେତେକ ପ୍ରଧାନ ପ୍ରଧାନ ଅସ୍ଥି ସଂଗ୍ରହ କରାଯାଇ ତାହାକୁ କବର ଦିଆଯାଇଛି । ଏହି ଅସ୍ଥିଂଶକୁ କେତେ-ବେଳେ ମୃଣ୍ମୟ ପାତ୍ର ମଧ୍ୟରେ ରଖି କବର ଦିଆଯାଇଛି ତ ଆଉ କେତେବେଳେ ସେମିତି ମାଟି ଖାତରେ କବର ଦିଆଯାଇଛି ।

ରୂପାରଠାରେ ମଧ୍ୟ ଆଉ କେତେକ କବରଖାନାର ସନ୍ଧାନ ମିଳିଛି । ଏହାର ଅବସ୍ଥିତି ହେଉଛି ଅମ୍ବାଲା ଜିଲ୍ଲାର ଶତଦ୍ରୁ ନଦୀ କୂଳରେ । ଏଠାରେ ଥିବା ବିରାଟ ସ୍ତୂପର ଖନନକାର୍ଯ୍ୟ ୧୯୫୩-୫୫ ମସିହାରେ ହେବା ବେଳେ ଭୂମିତଳୁ ବିଭିନ୍ନ କବରମାନ ଆବିଷ୍କୃତ ହୋଇଥିଲା । ଏହା ମଧ୍ୟ ହରପ୍ପୀୟ ସଂସ୍କୃତିର ସମକାଳୀନ । ୱାଇ. ଡ଼ି. ଶର୍ମାଙ୍କ ନେତୃତ୍ୱରେ ଏହି ଖନନକାର୍ଯ୍ୟ ସମାହିତ ହୋଇଥିଲା । (୨୪) ଏଠାକାର କବରଖାନାର ଅବସ୍ଥିତି ପ୍ରାୟ ପ୍ରଧାନ ବସ୍ତି ଅଞ୍ଚଳଠାରୁ ୧୭୦ ଫୁଟ ପଶ୍ଚିମକୁ । ହରପ୍ପାସ୍ଥ R-37 କବରଖାନା ଭଳି ଏହି କବରଖାନା ମଧ୍ୟ ନଦୀଠାରୁ ବହୁତ ଦୂରରେ ଅବସ୍ଥିତ । ଏହା ଫଳରେ ବନ୍ୟା ବିପର୍ଯ୍ୟୟରେ କବରଖାନାର କ୍ଷୟକ୍ଷତିର ପରିମାଣ ଏଠାରେ ଅପେକ୍ଷାକୃତ କମ୍ । ପ୍ରତି କବରର ଦୈର୍ଘ୍ୟ ହେଉଛି ୮ ଫୁଟ, ପ୍ରସ୍ଥ ୩ ଫୁଟ ଏବଂ ଗଭୀରତା ହେଉଛି ୨ ଫୁଟ । ଶବଗୁଡ଼ିକର ମସ୍ତକମାନ ଉତ୍ତର-ପଶ୍ଚିମ ଦିଗାଭିମୁଖୀ । କେବଳ ଗୋଟିଏ କ୍ଷେତ୍ରରେ ମସ୍ତକଟି ଅଛି ଉତ୍ତରାଭିମୁଖୀ । ଏଠାରେ ମଧ୍ୟ ହରପ୍ପାସ୍ଥ କବର ଭଳି ମୃଣ୍ମୟ ପାତ୍ରମାନଙ୍କରେ ମୃତବ୍ୟକ୍ତିର ପରଲୋକରେ ବ୍ୟବହାର ଲାଗି ବିଭିନ୍ନ ପ୍ରସାଧନ ସାମଗ୍ରୀ, ଖାଦ୍ୟଦ୍ରବ୍ୟ ଓ ଅନ୍ୟାନ୍ୟ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନ ସଜ୍ଜିତ କରାଯାଇ କବର ଦିଆଯାଇଥିବାର ପରିଦୃଷ୍ଟ ହୁଏ । ଏହି ପାତ୍ରଗୁଡ଼ିକ ମୃତବ୍ୟକ୍ତିଙ୍କ ବ୍ୟବହାରୋପଯୋଗୀ ହେବା ଉଦ୍ଦେଶ୍ୟରେ ହାତ ପାହାନ୍ତାରେ ସଜ୍ଜିତ । କବରଗୁଡ଼ିକ ମଧ୍ୟରୁ ମିଳିଥିବା ଜିନିଷ ମଧ୍ୟରେ ଶଙ୍ଖର କାଚ, ପୋହଳା, ତମ୍ବା ମୁଦି ଆଦି ଅନ୍ତର୍ଗତ । ଗୋଟିଏ ନରକଙ୍କାଳର ଦକ୍ଷିଣ ହସ୍ତସ୍ଥ ଅନାମିକାଙ୍ଗୁଳିରେ ତାମ୍ର ମୁଦ୍ରିକାଟିଏ ପିନ୍ଧା ଯାଇଥିବାର ଦେଖାଯାଏ । ସ୍ଥୂଳତଃ ଏଠାକାର କବର ଦେବା ଓ ହରପ୍ପାର କବର ଦେବା ପଦ୍ଧତି ମଧ୍ୟରେ ପ୍ରାୟ ସାମ୍ୟ ରହିଥିବାର ପରିଲକ୍ଷିତ ହୁଏ ।

ବିଂଶ ଶତାବ୍ଦୀର ପଞ୍ଚଦଶକରେ (୧୯୫୧-୫୨) ରାଜସ୍ଥାନର କାଲିବଙ୍ଗା ଠାରେ ଯେଉଁ ଖନନକାର୍ଯ୍ୟ ଏ. ଘୋଷଙ୍କ ଦ୍ୱାରା ସମାହିତ ହୋଇଥିଲା, ତାହା ଫଳରେ ପୂର୍ବରୁ ଥିବା ସିନ୍ଧୁ-ସଂସ୍କୃତିର କେନ୍ଦ୍ରବିନ୍ଦୁ ସମ୍ପର୍କୀୟ ଧାରଣା ଅପସାରିତ ହୋଇଗଲା । କେବଳ ସିନ୍ଧୁ ନଦୀର ଅବବାହିକା ନୁହେଁ; ତା' ଠାରୁ ବହୁ ଦୂରରେ ରାଜସ୍ଥାନର ମରୁ ଅଞ୍ଚଳର ଭୂଗର୍ଭରୁ ମଧ୍ୟ ଅନୁରୂପ ସଭ୍ୟତାର ଧ୍ୱଂସାବଶେଷ ଆବିଷ୍କୃତ ହେଲା । କାଲିବଙ୍ଗା ହେଉଛି ଘଗ୍‌ଗର ନଦୀର (ପ୍ରାଚୀନ ସରସ୍ୱତୀ ନଦୀ) ଦକ୍ଷିଣ ତଟରେ ଅବସ୍ଥିତ । ଏହା ପରେ ପରେ ଷଷ୍ଠ ଦଶକରେ ଯେଉଁ ଅଧିକ ଖନନକାର୍ଯ୍ୟ ଚାଲିଲା, ତାହା ଫଳରେ ଆହୁରି ବହୁମୂଲ୍ୟ ତଥ୍ୟମାନ ସେଠାରୁ ଆବିଷ୍କୃତ ହେଲା । ଏଥିରୁ ପ୍ରମାଣ ମିଳେ ଯେ ଏହି ଅଞ୍ଚଳରେ ହରପ୍ପା-ସଭ୍ୟତାରୁ ପୂର୍ବରୁ ମଧ୍ୟ ଆଉ ଏକ ସଭ୍ୟତା ଥିଲା ଏବଂ ତାହା ମଧ୍ୟ ଥିଲା ସମଧିକ ଉନ୍ନତ ଓ ନଗରନିଷ୍ଠ । (୨୫)

ଏଠାରେ ମଧ୍ୟ ମୃତବ୍ୟକ୍ତିଙ୍କ ପୂର୍ଣ୍ଣାବୟବକୁ ଶାୟିତ ଭାବରେ କବର ଦେବାର ପ୍ରମାଣ ବହୁ ସ୍ଥଳରେ ଦେଖାଯାଏ । କେତେକ ସ୍ଥଳରେ ମଧ୍ୟ ବଡ଼ଆକାରର ମୃଣ୍ମୟ ପାତ୍ର-ମାନଙ୍କରେ ଅସ୍ଥ୍ୟଂଶକୁ କବର ଦେଇଥିବାର ପ୍ରମାଣ ପରିଦୃଷ୍ଟ । ଅନ୍ୟ ସ୍ଥାନମାନଙ୍କରେ କବରରେ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନ ରଖିବାର ପଦ୍ଧତି ଏଠାରେ ମଧ୍ୟ ଅନୁସୃତ ।

ଏଠାକାର ଆଉ ଏକ ବିସ୍ମୟକର ତଥ୍ୟ ହେଉଛି ଛିଦ୍ରଯୁକ୍ତ ନରକରୋଟିର ଆବିଷ୍କାର । ଗୋଟିଏ ଶିଶୁର ଖପୁରିରେ ଛଅଟି କୃତ୍ରିମ ଛିଦ୍ର କରାଯାଇଥିବାର ପରିଦୃଷ୍ଟ ହୁଏ । ସମାଜତାତ୍ତ୍ୱିକ ଦୃଷ୍ଟିକୋଣରୁ ଏ ପ୍ରକାର ଆବିଷ୍କାରର ନିଶ୍ଚୟ ଗୁରୁତ୍ୱ ରହିଛି । ଏ ପ୍ରକାର କବର ଦେବା ପ୍ରଣାଳୀ ବୋଧହୁଏ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ମଧ୍ୟରେ ପ୍ରଚଳିତ ଥିଲା । ଏହି ଗୋଷ୍ଠୀର ଧର୍ମଧାରଣା, ପରଲୋକ ସମ୍ପର୍କୀୟ ଧାରଣା ବୋଧହୁଏ ଅନ୍ୟ ଗୋଷ୍ଠୀ-ମାନଙ୍କ ଠାରୁ ଥିଲା ପୃଥକ୍ । ସେଥିପାଇଁ ହରପ୍ପା ଭଳି ଏଠାରେ ମଧ୍ୟ କବର ଦେବାର ବିଭିନ୍ନ ପ୍ରଣାଳୀ ପରିଦୃଷ୍ଟ ।

ହରପ୍ପା ଭଳି ଏଠାରେ ମଧ୍ୟ ଗୋଟିଏ ୪ ମିଟର ଦୀର୍ଘ ଓ ୨ ମିଟର ପ୍ରସ୍ଥ ବିଶିଷ୍ଟ କକ୍ଷା ଇଟା କାନ୍ଥରେ ନିର୍ମିତ କବର ଆବିଷ୍କୃତ ହୋଇଛି । ଏହି କବରର ବିଶେଷତ୍ୱ ହେଉଛି ଏହି ଯେ ଏଠାରେ ସର୍ବମୋଟ ୭୦ ଗୋଟି ମୃଣ୍ମୟ ପାତ୍ରରେ ବିଭିନ୍ନ ବ୍ୟବହାର୍ଯ୍ୟ ବସ୍ତୁମାନଙ୍କୁ କବର ଦିଆଯାଇଛି । ଏତେ ସଂଖ୍ୟକ ପାତ୍ର ଗୋଟିଏ କବରରୁ ଆବିଷ୍କୃତ ହୋଇଥିବାର ପ୍ରମାଣ ଏପର୍ଯ୍ୟନ୍ତ ଅନ୍ୟ କୁତ୍ରାପି ପରିଦୃଷ୍ଟ ହୁଏ ନାହିଁ । ତିନି ସ୍ତରରେ ଏହି କବର କାର୍ଯ୍ୟଟିକୁ ସମ୍ପାଦନ କରାଯାଇଛି । ପ୍ରଥମ ସ୍ତରରେ ୩୨ ଟି ପାତ୍ରକୁ କବରର ଉତ୍ତର ଦିଗରେ ସ୍ଥାପିତ କରାଯାଇ ତା' ଉପରେ ମାଟି ଭରାଯାଇଛି । ଦ୍ୱିତୀୟ ସ୍ତରରେ କବରର ମଧ୍ୟଭାଗରେ ଆଉ ୩୩ଟି ପାତ୍ରକୁ ରଖାଯାଇ ତା' ଉପରେ ମାଟି ଭରା ଯାଇଛି । ତା' ଉପରେ ଯାଇ ମୃତବ୍ୟକ୍ତିଙ୍କୁ ଉତ୍ତର ଦକ୍ଷିଣ ଭାବରେ ଶାୟିତ କରାଯାଇ ନିମ୍ନମୁଖୀ ଭାବରେ ଉତ୍ତରକୁ ମସ୍ତକ ରଖାଯାଇ କବର ଦିଆଯାଇଅଛି । ହୁଇଲର୍ ଏହିଭଳି ଏକ କବରର ସନ୍ଧାନ ହରପ୍ପାରେ ପାଇଥିବାର ସୂଚନା ଆମ୍ଭେ ପୂର୍ବରୁ ଦେଇଛୁ ଏବଂ ମତ ପ୍ରକାଶ କରିଛୁ ଯେ ଏ କବରଟି ହୁଏତ କୌଣସି ବିଶିଷ୍ଟ ବ୍ୟକ୍ତିଙ୍କର (ରାଜା ବା ପୁରୋହିତ ବା ଆଉ କାହାର) ହୋଇଥିବ । ସେହି ମତ କାଲିବଙ୍ଗାଠାରେ ଆବିଷ୍କୃତ ହୋଇଥିବା ଏହି କବରଟି ପ୍ରତି ମଧ୍ୟ ସମଧିକ ପ୍ରଯୁଜ୍ୟ ।

ଏଠାରେ ଆଉ ଗୋଟିଏ ପ୍ରକାର ଅସ୍ଥିଶୂନ୍ୟ ବୃତ୍ତାକାର ବିଶିଷ୍ଟ କବରର ସନ୍ଧାନ ମିଳିଛି । ଏଠାରେ କେବଳ ବିଭିନ୍ନ ମୃଣ୍ମୟ ପାତ୍ର ମାନଙ୍କରେ ମୃତବ୍ୟକ୍ତିଙ୍କର ପର-ଲୋକରେ ବ୍ୟବହାର ଲାଗି ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନ କବରରେ ରଖାଯାଇଛି । ଏ

ପ୍ରକାର ଅସ୍ଥି ହୀନ କବର ଦୁଇ ପ୍ରକାର ପଦ୍ଧତିରେ ସମ୍ପାଦିତ କରାଯାଇଅଛି । ଗୋଟିଏ ହେଲା ମୃଣ୍ମୟ ପାତ୍ର କବର ପଦ୍ଧତି ଓ ଅପରଟି ହେଲା ମାଟି ଖାତ ଖୋଳି କେବଳ ନିତ୍ୟ-ବ୍ୟବହାର୍ଯ୍ୟ ବସ୍ତୁମାନଙ୍କୁ କବର ଦେବା ପଦ୍ଧତି । ମୃଣ୍ମୟ ପାତ୍ର କବର ପଦ୍ଧତିରେ କେବଳ ଶୂନ୍ୟ ପାତ୍ରଟିକୁ ଅନ୍ୟାନ୍ୟ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁଥିବା ପାତ୍ରମାନଙ୍କ ସହିତ କବର ଦିଆଯାଇଛି । ଏଠାରେ ଶୂନ୍ୟ ପାତ୍ରଟି ମୃତବ୍ୟକ୍ତିର ସଙ୍କେତ ରୂପରେ ବ୍ୟବହୃତ । ଅନୁମାନ କରାଯାଏ ଯେ ଯେଉଁ ବ୍ୟକ୍ତିମାନେ ଦୂର ଦେଶରେ ମୃତ ଓ ଯେଉଁମାନଙ୍କର ମୃତ ଦେହକୁ କବର ଦେବା ପାଇଁ ଅଣାଯାଇ ପାରିନାହିଁ, ସେହିମାନଙ୍କ ଲାଗି ଏ ପ୍ରକାର ଅସ୍ଥି ଶୂନ୍ୟ କବର ଉଦ୍ଦିଷ୍ଟ । ସିନ୍ଧୁ-ସଂସ୍କୃତିର ଅଧିବାସୀମାନେ ମିଶର, ମେସୋପଟାମିଆ ଆଦି ବହୁ ଦୂର ଦେଶ ସହିତ ବାଣିଜ୍ୟିକ ତଥା ସାଂସ୍କୃତିକ ସମ୍ପର୍କ ରଖିଥିଲେ । ସେହି ପୃଷ୍ଠଭୂମିରେ ବିଦେଶ ଭୂମିରେ ପ୍ରାଣତ୍ୟାଗ କରିଥିବା ବ୍ୟକ୍ତିମାନଙ୍କ ଲାଗି ଏହି କବରଗୁଡ଼ିକ ଅଭିପ୍ରେତ ଭଳି ମନେହୁଏ । ଅଥବା ଯୁଦ୍ଧଭୂମିରେ ଯେଉଁ ବ୍ୟକ୍ତିମାନେ ମୃତ ଓ ଯେଉଁମାନଙ୍କର ମୃତ-ଦେହକୁ କୌଣସି କାରଣରୁ ଉଦ୍ଧାର କରାଯାଇ ପାରିନାହିଁ, ସେହିମାନଙ୍କ ପାଇଁ ହୁଏତ ଏହି କବର ଗୁଡ଼ିକ ଉଦ୍ଦିଷ୍ଟ । ଏବେ ମଧ୍ୟ ମୃତବ୍ୟକ୍ତିଙ୍କ ଶବର ଅନୁପସ୍ଥିତିରେ ତାଙ୍କ ଲାଗି ପଳାଶ କାଷ୍ଠକୁ ଚିତାଗ୍ନିରେ ଦିଆଯାଇ ହିନ୍ଦୁ ସମାଜରେ ତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସମାହିତ ହେଉଛି । ଏହି ପ୍ରଥା ଭାରତ ଭୂମିରେ ଗଡ଼ି ଆସୁଥିବା ବହୁ ସହସ୍ରାବ୍ଦୀ ତଳର ଏକ ପରମ୍ପରାର ଅନୁବର୍ତ୍ତୀ ଭଳି ମନେହୁଏ ।

ଲୋଥାଲ୍‌ଠାରେ ମଧ୍ୟ କବରଖାନାର ସନ୍ଧାନ ମିଳିଛି । ଏହାର ଅବସ୍ଥିତି ହେଉଛି ଗୁଜୁରାଟର ଅହମଦାବାଦ୍ ଜିଲ୍ଲାରେ । ଏହା ସାବରମତୀ ନଦୀର ଏକ ଉପନଦୀ ଭୋଗବୋ (ଭୋଗବାର ଅପଭ୍ରଂଶ ?) ନଦୀ ତୀରରେ ଆରବ ସାଗରର ମାତ୍ର ୧୫ କିଲୋମିଟର ଦୂରରେ ଅବସ୍ଥିତ । ଏଠାରେ ଖନନକ୍ରିୟା ଫଳରେ ଯେଉଁ ତଥ୍ୟମାନ ଆବିଷ୍କୃତ ହୋଇଛି ତନ୍ମଧ୍ୟରେ ଏକ ପ୍ରାଚୀନ ପୋତାଶ୍ରୟ ଓ ପୋତନିର୍ମାଣ କାରଖାନା ଅନ୍ୟତମ । ପୋତର ଏକ ମୃଣ୍ମୟ ନମୁନା ଓ ପାରସ୍ୟ ଉପସାଗରୀୟ ମୋହର ଏଠାରେ ମିଳିଛି । ଏହି ସବୁ ତଥ୍ୟମାନଙ୍କରୁ ଏହା ସେତେବେଳେ ଦକ୍ଷିଆ ପାରି ବହିର୍ବାଣିଜ୍ୟର ଏକ ପ୍ରଖ୍ୟାତ କ୍ଷେତ୍ର ଥିବାର ଅନୁମାନ କରାଯାଏ । ମ୍ୟାକେଙ୍କ ମତରେ ଏଠାକାର ଅଧିବାସୀମାନଙ୍କର ସୁମେର ସହିତ ଏ ପ୍ରକାର ବାଣିଜ୍ୟ କାରବାର ସମୁଦ୍ର ପଥରେ ଚାଲୁଥିଲା । (୨୫-କ) ରେଡ଼ିଓ କାର୍ବନ୍ ପରୀକ୍ଷା ଫଳରେ ଏଠାକାର ସଭ୍ୟତାକୁ ଖ୍ରୀ ପୂ: ୨୪୫୦ରୁ ଖ୍ରୀ: ପୂ. ୧୯୦୦ ମଧ୍ୟରେ ସ୍ଥାପିତ କରାଯାଇଅଛି । ସିନ୍ଧୁ ସଭ୍ୟତାର ଅନ୍ୟାନ୍ୟ ସବୁ ସ୍ୱଭାବ ଲକ୍ଷଣମାନ ଏଠାରେ ମଧ୍ୟ ବିଦ୍ୟମାନ ; ଏବଂ ଏହା ମଧ୍ୟ ପ୍ରାୟ ସେହି ସଭ୍ୟତାର ସମକାଳୀନ । ଏଣୁ ଯଥାର୍ଥରେ ଏହି ସଭ୍ୟତାକୁ ସିନ୍ଧୁ-ସଭ୍ୟତାର ଏକ ଅଂଶବିଶେଷ ବୋଲି କୁହାଯାଇଥାଏ ।

ଏଠାକାର କବରଗୁଡ଼ିକର ଆକାର ପ୍ରକାର, କବର ଦେବାର ପଦ୍ଧତି ଇତ୍ୟାଦି

ପ୍ରାୟ ହରପ୍ପୀୟ ପଦ୍ଧତିର ଅନୁରୂପ । ଏଠାରେ ମଧ୍ୟ ଶବକୁ ଉତ୍ତର-ଦକ୍ଷିଣ କରି ଲମ୍ବ ଭାବରେ ଶାୟିତ କରାଯାଇଛି ଏବଂ ମସ୍ତକକୁ ଉତ୍ତରାଭିମୁଖୀ କରାଯାଇଛି । ଏଠାରେ ଖନନ କରାଯାଇଥିବା ୨୩ଟି କବର ମଧ୍ୟରୁ କେବଳ ଗୋଟିଏ କବରରେ ଶବକୁ ପୂର୍ବ-ପଶ୍ଚିମ ଭାବରେ ଶାୟିତ କରି ରଖାଯାଇଛି । ଏହି ବ୍ୟତିକ୍ରମରୁ ଅନୁମିତ ହୁଏ ଯେ ବୋଧହୁଏ ସଂପୃକ୍ତ ବ୍ୟକ୍ତି ଯେଉଁ ଗୋଷ୍ଠୀର ଅନ୍ତର୍ଭୁକ୍ତ, ତାଙ୍କର ଧର୍ମବିଶ୍ୱାସ ଓ ସାମାଜିକ ପ୍ରଥା ଅନୁଯାୟୀ ମୃତ-ବ୍ୟକ୍ତିଙ୍କୁ ପୂର୍ବ-ପଶ୍ଚିମ କରି ଶୁଆଇ କବର ଦିଆଯାଉଥିଲା ।

ଆଉ ଏକ ପ୍ରକାର କବରର ସନ୍ଧାନ ମିଳିଛି, ଯାହାକୁ କୁହାଯାଏ ଯୁଗ୍ମ-କବର, ଦୁଇଜଣ ବ୍ୟକ୍ତିଙ୍କୁ ଲମ୍ବଭାବରେ ଶୁଆଇ ଦେଇ ଏଥିରେ କବର ଦିଆଯାଇଛି । ଏହିଭଳି ତିନୋଟି କବର ଏଠାରେ ଆବିଷ୍କୃତ । ନରକଙ୍କାଳମାନଙ୍କୁ ପରୀକ୍ଷା କରିବା ପରେ ଜଣାପଡ଼ିଛି ଯେ ପ୍ରତ୍ୟେକଟି କବରର ଅଧିକାଂଶ ହେଉଛନ୍ତି ଗୋଟିଏ ପୁରୁଷ ଓ ଗୋଟିଏ ସ୍ତ୍ରୀ । ଏଭଳି ଯୁଗ୍ମ-କବର ହିନ୍ଦୁ-ସଂସ୍କୃତିର ଅନ୍ୟ କୌଣସି ସ୍ଥାନରେ ଦେଖିବାକୁ ମିଳେନାହିଁ । ଅନେକଙ୍କର ମତ ଯେ ଏହା ହେଉଛି ସ୍ୱାମୀ ଓ ସ୍ତ୍ରୀଙ୍କର ଏକତ୍ର ଦିଆ-ଯାଇଥିବା କବର । ସେମାନଙ୍କ ମତରେ ସ୍ୱାମୀଙ୍କ ମୃତ୍ୟୁରେ ସ୍ତ୍ରୀ ତାଙ୍କର ସହଯାତ୍ରିଣୀ ହୋଇ ଏଭଳି ଅବସ୍ଥା ପ୍ରାପ୍ତ ହୋଇଛନ୍ତି । କିନ୍ତୁ ଏଚ୍. ଡ଼ି. ସଙ୍କାଲିଆ ଏଥିରେ ସହମତ ନୁହଁନ୍ତି । ତାଙ୍କ କହିବା ଅନୁସାରେ ସତୀ ପ୍ରଥାର ଅର୍ଥ ହେଉଛି ପତ୍ନୀ ପତିଙ୍କ ଚିତାଗ୍ନିରେ ଝାସ ଦେବା । ଏଣୁ ଏହାକୁ କବର ଦେବା ପ୍ରଥାକୁ ଟାଣି ଆଣିହେବ ନାହିଁ । (୨୬) କିନ୍ତୁ ଏହି ଯୁକ୍ତି ସେତେ ସବଳ ଥିଲଭଳି ମନେ ହୁଏନାହିଁ । ପତିଙ୍କ ମୃତଦେହ ସହିତ ପତ୍ନୀର ସହଗମନ କରିବାକୁ 'ସତୀ' କୁହାଯାଏ । ଏହାର ଆବର୍ତ୍ତ କେବେଠାରୁ ସେ କଥା ଠିକ୍ ଭାବରେ କହି ହେବନାହିଁ । ଯଦି ଏହା ଏକ ଆର୍ଯ୍ୟ ଚିନ୍ତାଧାରା ବୋଲି ଧରାଯାଏ, ଯାହାକି ଠିକ୍, ତେବେ ଏହାର ସୃଷ୍ଟି କେବଳ ଶବ-ସଂସ୍କାର ବେଳରୁ ହୋଇ ନଥିବ । ପୂର୍ବରୁ କୁହାଯାଇଛି ଜୀପଣ ଋଗ୍‌ବେଦ କାଳରେ ଉଭୟ ଶବ-ସଂସ୍କାର ଓ ଶବକୁ କବର ଦେବା ପଦ୍ଧତି ଉଭୟ ବୈଦିକ ଆର୍ଯ୍ୟମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା । ଏ ସମ୍ପର୍କରେ ଋଗ୍‌ବେଦର ଶଂସିତ ମନ୍ତ୍ରଟିର ଉଦାହରଣ ମଧ୍ୟ ଦିଆଯାଇଛି, ଅତଏବ ଋଗ୍‌ବେଦ ସମୟରେ ଯେ କବର ଦିଆଯାଉଥିବା ପତିଙ୍କ ମୃତଦେହର ସହଗମନ ତାଙ୍କ ପତ୍ନୀ କରୁନଥିଲେ ସେ କଥା କୁହାଯାଇ ପାରିବ ନାହିଁ । ଏହି ଦୃଷ୍ଟିରୁ ବିଚାର କଲେ ସଂପୃକ୍ତ ଯୁଗ୍ମ-କବରଗୁଡ଼ିକ ସ୍ୱାମୀସ୍ତ୍ରୀଙ୍କ କବର ବୋଲି ଧରାଯାଇପାରେ । ଆଉ କେତେକ ଗବେଷକଙ୍କ ମତରେ ଏହି ଯୁଗ୍ମ-କବରଗୁଡ଼ିକ ବିଦେଶୀ ବ୍ୟକ୍ତିମାନଙ୍କର ହୋଇଥିବ । କୌଣସି କାରଣରୁ ସ୍ୱାମୀସ୍ତ୍ରୀଙ୍କର ଏକତ୍ର ମୃତ୍ୟୁ ହେବାପରେ ଉଭୟଙ୍କୁ ଏକତ୍ର କବର ଦିଆଯାଇଥିବ । ଏହାର କାରଣ ସ୍ୱରୂପ ସେମାନେ ଦର୍ଶାନ୍ତି ଯେ, ଏହି କବରମାନଙ୍କ ଭିତରେ ମୃଣ୍ମୟ ପାତ୍ରମାନଙ୍କରେ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନ ରଖା-

ଯାଇନାହିଁ । ସିନ୍ଧୁ-ସଂସ୍କୃତିର ସମସ୍ତ କବରରେ ଏଗୁଡ଼ିକ ରଖାଯାଇଥିବା ସତ୍ତ୍ୱେ ଏଠାରେ ତାହା ନ ଥିବାର କାରଣ କ'ଣ ? ସେମାନଙ୍କ ମତରେ ଯେହେତୁ ଏମାନେ ହେଲେ ବିଦେଶୀ, ସିନ୍ଧୁ-ସଂସ୍କୃତିରେ ପ୍ରଚଳିତ ପ୍ରଥା ଅନୁସାରେ ସେମାନଙ୍କୁ କବର ଦିଆଯାଇନାହିଁ । ଅନ୍ୟ ପକ୍ଷରେ ସେମାନଙ୍କର ନିଜ ନିଜ ଦେଶରେ ଚଳୁଥିବା ପ୍ରଥା ଅନୁସାରେ ସେମାନଙ୍କୁ କବର ଦିଆଯାଇଛି । ଏ ଯୁକ୍ତି ମଧ୍ୟ କିଛି କମ୍ ବଳିଷ୍ଠ ନୁହେଁ । ତେବେ ଏ ବିଷୟରେ ଅଧିକ ଗବେଷଣା ନ ହେବା ପର୍ଯ୍ୟନ୍ତ ସଠିକ୍ ଭାବରେ ଏହି ଯୁଗ୍ମ କବରଗୁଡ଼ିକର ଉଦ୍ଦେଶ୍ୟ ଉପରେ ମନ୍ତବ୍ୟ ଦେଇ ହେବନାହିଁ । ଏ ସମ୍ପର୍କରେ ଗୋଟିଏ କଥା ମନେ ରଖିବାକୁ ହେବ ଯେ, ବର୍ତ୍ତମାନ ଭଳି ସେତେବେଳେ ମଧ୍ୟ ଉତ୍ତର-ପଶ୍ଚିମ ଭାରତଭୂମି ବହୁଜାତି ଓ ବହୁ ଗୋଷ୍ଠୀର ଲୋକଙ୍କ ମିଳନସ୍ଥଳୀ ଥିଲା । ସିନ୍ଧୁ-ସଂସ୍କୃତିର ଏହି ବହୁ ଜାତିଙ୍କ ମିଳନ ଓ ବହୁ ସଂସ୍କୃତିର ମିଶ୍ରଣ ବିଷୟରେ ବାସମ୍ଙ୍କ ଭଳି ଅନେକ ପ୍ରାଚ୍ୟତତ୍ତ୍ୱବିଦ୍ ସହମତ । ବାସମ୍ ତେଣୁ ଯଥାର୍ଥରେ କହିଛନ୍ତି ;

> "Then as now, North-West India was the meeting point of many races." (୨୭)

ତେଣୁ ଏହି କବର କୌଣସି ବିଦେଶୀ ବ୍ୟକ୍ତି ଦ୍ୱୟଙ୍କର ହୋଇଥିବା ଅସମ୍ଭବ ନୁହେଁ ।

ସୁତ୍କଜେନ-ଡ଼ୋର ପାକିସ୍ଥାନ ଅନ୍ତର୍ଗତ ବେଲୁଚିସ୍ଥାନରେ ଅବସ୍ଥିତ । ଏଠାରେ ସିନ୍ଧୁ ସଂସ୍କୃତିର ଅନୁରୂପ ଏକ ସଂସ୍କୃତିର ପ୍ରାଥମିକ ଆବିଷ୍କାର ପ୍ରାୟ ଶହେ ବର୍ଷ ତଳେ (୧୮୭୫) ରେ ହୋଇଥିଲା ମେଜର୍ ଇ ମକ୍‌ଲର୍‌ଙ୍କ ଦ୍ୱାରା । ସେହି ବର୍ଷ ସେ ଏଠାରେ ଗୋଟିଏ ସ୍ତୂପର ଆବିଷ୍କାର କରିଥିଲେ ଏବଂ ତତ୍ପର ବର୍ଷ ଏହାକୁ ଖନନ କରିବା ଫଳରେ ସେ କବର ତଳୁ ଅଢ଼େଇ ଫୁଟ ଉଚ୍ଚର ଅନେକ ମୃଣ୍ମୟ ପାତ୍ରରେ ଭରି ରହିଥିବା ମୃତ୍ତିକା, ଶିଳାଖଣ୍ଡ, ମାନବାସ୍ଥିର ଭଗ୍ନାଂଶ ଏବଂ ଦାନ୍ତମାନ ଦେଖିବାକୁ ପାଇଥିଲେ । ତାଙ୍କ ଆବିଷ୍କୃତ ତଥ୍ୟମାନ Asiatic Society, Bengalର ୧୮୭୬ ପତ୍ରିକାର ବିବରଣୀରେ ଲିପିବଦ୍ଧ ହୋଇଛି । (୨୮) ପରବର୍ତ୍ତୀ କାଳରେ ଏ. ଷ୍ଟିନ୍ ମଧ୍ୟ ଏହି ସ୍ଥାନରୁ ୨ ଫୁଟ ବ୍ୟାସ ବିଶିଷ୍ଟ ଏକ ବିରାଟକାୟ ପାତ୍ର-କବର ଆବିଷ୍କାର କରିଥିଲେ । ଏଠାରୁ ମଧ୍ୟ ଅସ୍ଥ୍ୟଂଶ ସହିତ ମୃଣ୍ମୟ ପାତ୍ରମାନଙ୍କରେ ରଖାଯାଇଥିବା ବିଭିନ୍ନ ବ୍ୟବହାର୍ଯ୍ୟ ବସ୍ତୁମାନ ଆବିଷ୍କୃତ । ଆବିଷ୍କୃତ ଅଳଙ୍କାରମାନଙ୍କ ମଧ୍ୟରେ ଶଙ୍ଖାର କାଚ ଓ ଶଙ୍ଖାର ଇପର୍-ରିଙ୍ଗ୍ ଅନ୍ତର୍ଗତ । ସିନ୍ଧୁ-ସଂସ୍କୃତିର ଅନ୍ୟାନ୍ୟ ସ୍ଥାନମାନଙ୍କରୁ ଆବିଷ୍କୃତ ହୋଇଥିବା ଶବସତ୍କାରର ପଦ୍ଧତି ସ୍ଥୂଳତଃ ଏଠାରେ ମଧ୍ୟ ଅନୁସୃତ । କିନ୍ତୁ ଗୋଟିଏ ବିଶିଷ୍ଟ ପାର୍ଥକ୍ୟ ହେଉଛି ଏହି ଯେ ଏଠାରେ ମୃତ ବ୍ୟକ୍ତିଙ୍କ ପୂର୍ଣ୍ଣାବୟବକୁ ଶାୟିତ କିମ୍ବା ଅନ୍ୟ ଅବସ୍ଥାରେ କବର ଦିଆଯାଇ ନାହିଁ । ଅନ୍ୟ ପକ୍ଷରେ ତାଙ୍କ ଚିତା-ଭସ୍ମରୁ ଅସ୍ଥି ସଂଗ୍ରହ କରାଯାଇ ତାକୁ ହିଁ କବର

ଦିଆଯାଇଛି । ପୁରୁଷୋତ୍ତମ ସିଂହ ଏହି ପାର୍ଥକ୍ୟକୁ ଲକ୍ଷ୍ୟ କରି ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାହା ଯଥାର୍ଥରେ ପ୍ରଣିଧାନଯୋଗ୍ୟ । ସେ କହିଛନ୍ତି :

> "The evidence of post-cremation burials from Sutkagen-Dor is very significant as it marks a distinct departure from the common mode of the disposal of the dead in Harappa Culture, i. e. complete inhumation in regular cemeteries. । (୨୯)

ଏଠାକାର କବର ଦେବା ପଦ୍ଧତି ସହିତ ଅବଶ୍ୟ ହରପ୍ପାସ୍ଥ Cemetery-Hରେ ଅନୁସୃତ କବର ଦେବା ପଦ୍ଧତିର ଆଂଶିକ ସାମ୍ୟ ଥିବାର ପରିଦୃଷ୍ଟ ହୁଏ । ଏହି ପ୍ରକାର କବର ଦେବା ପଦ୍ଧତି ସିନ୍ଧୁ ପ୍ରଦେଶସ୍ଥ 'ଗ୍ରନ୍-ଦାଗ୍ରେ' ଠାରେ ଓ ବଲୁଚିସ୍ତାନସ୍ଥ 'ଡବରଗନ ଓ୍ୱାଇ ଡେରା' ଠାରେ ମଧ୍ୟ ଅନୁସୃତ ହୋଇଥିବାର ପ୍ରମାଣ ମିଳେ ।

ସ୍ୱାଧୀନତୋତ୍ତର କାଳରେ ହୋଇଥିବା ବିଭିନ୍ନ ସ୍ଥାନମାନଙ୍କରେ ପ୍ରତ୍ନତାତ୍ତ୍ୱିକ ଖନନ ଫଳରେ ଯେଉଁ ସବୁ ନୂତନ ନୂତନ ଦ୍ରବ୍ୟମାନ ଆବିଷ୍କୃତ ହୋଇଛି ତହିଁରୁ ପ୍ରମାଣ ମିଳେ ଯେ ତାମ୍ରପ୍ରସ୍ତରଯୁଗୀୟ (Chalcolithic) ସିନ୍ଧୁ-ସଭ୍ୟତାର ପ୍ରସାର ଭାରତର ପୂର୍ବାଞ୍ଚଳ, ମଧ୍ୟାଞ୍ଚଳ ଆଦି ସ୍ଥାନମାନଙ୍କରେ ମଧ୍ୟ ଘଟିଛି । ବୈଦିକ ଆର୍ଯ୍ୟମାନଙ୍କର 'ସପ୍ତସିନ୍ଧୁ' ଦେଶରୁ କ୍ରମଶଃ ପୂର୍ବ ଦିଗକୁ ହୋଇଥିବା ଗତି ସହିତ ସମତାଳ ରକ୍ଷାକରି ଏହି ସଭ୍ୟତା ଓ ସଂସ୍କୃତିର ବିସ୍ତାର ହୋଇଥିବାରୁ ସେମାନଙ୍କର (ଆର୍ଯ୍ୟମାନଙ୍କର) ସଂସ୍କୃତି ସହିତ ଏହାର ସମ୍ପର୍କ ରହିଛି ବୋଲି ଅନେକ ତତ୍ତ୍ୱବିଦ ମତ ଦିଅନ୍ତି । ଏହି ସ୍ଥାନମାନଙ୍କରେ ଥିବା କବର-ଗୁଡ଼ିକର ଖନନ ଫଳରେ ଯେଉଁ ତଥ୍ୟମାନ ମିଳିଛି, ସେଥିରୁ ଜଣାଯାଏ ଯେ, ସ୍ଥୂଳତଃ ହରପ୍ପୀୟ ଶବସତ୍କାର ପଦ୍ଧତିର ଅନୁରୂପ ପଦ୍ଧତିମାନ ହିଁ ଏହି ସ୍ଥାନମାନଙ୍କରେ ଅନୁସୃତ । ସେହି ସ୍ଥାନମାନଙ୍କର ନାମ ଓ କେଉଁ ସ୍ଥାନରେ କି ପ୍ରକାର ଶବସତ୍କାର ପଦ୍ଧତି ମୁଖ୍ୟତଃ ଅବଲମ୍ବନ କରାଯାଇଛି ତାହା କ୍ରମରେ ଦର୍ଶାଯାଉଛି ।

| କ୍ରମିକ ସଂଖ୍ୟା | ସ୍ଥାନର ନାମ | କବର ଦେବାର ମୁଖ୍ୟ ପଦ୍ଧତି |
|---|---|---|
| ୧- | ନେବାଓ୍ୱାଡ଼ା (ମହାରାଷ୍ଟ୍ର) | ପୂର୍ଣ୍ଣାବୟବ କବର ଉତ୍ତର-ଦକ୍ଷିଣ ଭାବରେ ; |
| ୨- | ଦାଇମାବାଦ (ମହାରାଷ୍ଟ୍ର) | ପୂର୍ଣ୍ଣାବୟବ କବର ଉତ୍ତର-ଦକ୍ଷିଣ ଭାବରେ, ଏବଂ ପାତ୍ର କବର : ଶିଶୁମାନଙ୍କ ଲାଗି କେବଳ ପାତ୍ର-କବର ; |

୩- ଅମରେଲି (ଗୁଜୁରାଟ) — ଶବସଂସ୍କାର ପରେ ବୃହତ୍ ପାତ୍ରସ୍ଥ ଅସ୍ଥ୍ୟଂଶର କବର ।

୪- ବାଗୋର୍ (ରାଜସ୍ଥାନ) — ପୂର୍ଣ୍ଣାବୟବ କବର ଦକ୍ଷିଣ-ପୂର୍ବ ଉତ୍ତର-ପଶ୍ଚିମ ଅଥବା ପୂର୍ବ-ପଶ୍ଚିମ ଭାବରେ ; ଏଠାରେ ପ୍ରଚୁର ପରିମାଣରେ ତାମ୍ର ଶରାଗ୍ର, ମୃଦ୍ଧିକା ଆଦି ମିଳିଛି ।

୫- ପାଣ୍ଡୁରାଜାର ଢିବି (ପଶ୍ଚିମ ବଙ୍ଗଳା) — ଉଭୟ ପୂର୍ଣ୍ଣାବୟବ ଓ ଆଂଶିକ କବର ; ଶବ ଉତ୍ତର-ଦକ୍ଷିଣ ଭାବରେ ଉତ୍ତରାଭିମୁଖୀ ହୋଇ ଶାୟିତ । କବର ଦେଲାବେଳେ ଗୋଡ଼କୁ ଆଣ୍ଠୁଠାରୁ କାଟି ଦିଆଯାଇଛି ।

ଉପର୍ଯୁକ୍ତ ଆଲୋଚନାରୁ ସିନ୍ଧୁ ସଂସ୍କୃତିର ଅଧିବାସୀମାନଙ୍କ ମଧ୍ୟରେ କିଭଳି ଭାବରେ ଶବସତ୍କାର ପଦ୍ଧତିମାନ ପ୍ରଚଳିତ ଥିଲା, ସେଗୁଡ଼ିକର ଉଦ୍ଦେଶ୍ୟ କ'ଣ ଥିଲା ଏବଂ କେଉଁ କେଉଁ ସଂସ୍କୃତି ଦ୍ୱାରା ସେଗୁଡ଼ିକ ପ୍ରଭାବାନ୍ୱିତ ହୋଇଥିଲା ସେ ବିଷୟରେ ଏକ ସ୍ଥୂଳ ଧାରଣା କରିହେବ । ଏହି ଆଲୋଚନାରୁ ନିମ୍ନଲିଖିତ ଉପସଂହାର ନିଷ୍କାସିତ ହେବ ।

୧- ସିନ୍ଧୁ ସଂସ୍କୃତିର ଅଧିବାସୀମାନଙ୍କ ମନରେ ପରଲୋକ ବିଷୟରେ ଏକ ସ୍ଥୂଳ ଧାରଣା ଥିଲା ଏବଂ ଏହି ଧାରଣାର ବଶବର୍ତ୍ତୀ ହୋଇ ସେମାନେ ମୃତବ୍ୟକ୍ତିଙ୍କ ପରଲୋକଗତ ଆତ୍ମାର ସୁଖ ଶାନ୍ତି ଲାଗି ଯାବତୀୟ ବ୍ୟବସ୍ଥାମାନ ଶବସତ୍କାର ବିଧି ସହିତ ଗଢ଼ିଥିଲେ ।

୨- ସାଧାରଣତଃ ମୃତବ୍ୟକ୍ତିଙ୍କ ଶବକୁ ଉତ୍ତର-ଦକ୍ଷିଣ ଦିଗ କରି ଶାୟିତ କରାଯାଇ ଏବଂ ମସ୍ତକକୁ ଉତ୍ତରାଭିମୁଖୀ ରଖାଯାଇ କବର ଦିଆଯାଉଥିଲା । ଦେବଯାନ ମାର୍ଗରେ ମୃତବ୍ୟକ୍ତିଙ୍କ ଆତ୍ମା ଉତ୍ତର ଦିଗରେ ଥିବା ଦେବଭୂମି ବା ସ୍ୱର୍ଗଭୂମିକୁ ଯିବା କଥା ଏତଦ୍ୱାରା କଳ୍ପନା କରାଯାଉଥିଲା ।

୩- ସାଧାରଣତଃ କବରସ୍ଥାନଟି ଜନବସତିର ଦକ୍ଷିଣ ଦିଗରେ ଅବସ୍ଥିତ । ମୃତ୍ୟୁର ରାଜା ଯମଙ୍କ ନିଳୟ ଦକ୍ଷିଣରେ ବୋଲି ବିଶ୍ୱାସ ଥିବାରୁ, କବରଖାନାଗୁଡ଼ିକୁ ଦକ୍ଷିଣରେ ଅବସ୍ଥାପିତ କରାଯାଇଥିବା ମନେହୁଏ ।

୪- କେତେକ ସ୍ଥଳରେ ଶବକୁ କିମ୍ବା ଶବର ମସ୍ତକକୁ ଅନ୍ୟ ଦିଗାଭିମୁଖୀ ମଧ୍ୟ କରାଯାଉଥିଲା ।

୫- ସମାଜରେ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ପାଇଁ ଅପେକ୍ଷାକୃତ ବୃହଦାକାର ବିଶିଷ୍ଟ କବର-ମାନଙ୍କର ବ୍ୟବସ୍ଥା କରାଯାଇ ସ୍ୱାତନ୍ତ୍ର୍ୟ ରକ୍ଷା ଲାଗି ସ୍ୱତନ୍ତ୍ର ବ୍ୟବସ୍ଥାମାନ କରାଯାଉଥିଲା ।

୬- ମୃତବ୍ୟକ୍ତିଙ୍କ ପରଲୋକରେ ବ୍ୟବହାର ଲାଗି ପ୍ରସାଧନ ସାମଗ୍ରୀ, ଖାଦ୍ୟପେୟ ଓ ଅନ୍ୟାନ୍ୟ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନଙ୍କୁ କବର ମଧ୍ୟରେ ସମର୍ପଣ କରାଯାଉଥିଲା ।

୭- ଶିଶୁମାନଙ୍କୁ ସ୍ୱତନ୍ତ୍ର କବର ଦିଆଯାଉ ନଥିଲା କିମ୍ବା ଯେଉଁଠାରେ ଦିଆଯାଉଥିଲା ସେଠାରେ ପାତ୍ର-କବର ପଦ୍ଧତି ଅବଲମ୍ବନ କରାଯାଉଥିଲା ।

୮- କେତେକ ସ୍ଥଳରେ ମୃତ ବ୍ୟକ୍ତିଙ୍କର ଅସ୍ଥ୍ୟଂଶକୁ ସଂଗ୍ରହ କରି ଉଭୟ ମାଟିଖାତରେ କିମ୍ବା ପାତ୍ରରେ କବର ଦିଆଯାଉଥିଲା ।

୯- ଆଉ କେତେକ ସ୍ଥାନରେ ଭସ୍ମାଂଶକୁ ମଧ୍ୟ କବର ଦିଆଯାଉଥିଲା ।

୧୦- ବୈଦିକ ଆର୍ଯ୍ୟମାନଙ୍କର ଶବସତ୍କାର ବିଧି ସହିତ ଅନେକାଂଶ ସାମଞ୍ଜସ୍ୟ ସିନ୍ଧୁ-ସଂସ୍କୃତିର ଶବସତ୍କାର ବିଧି ସହିତ ପରିଦୃଷ୍ଟ ହୁଏ । ( ୩୦ )

୧୧- ଏଠାରେ ଅନୁସୃତ ହୋଇଥିବା ବିଭିନ୍ନ ପ୍ରକାର କବର ଦେବା ପଦ୍ଧତିରୁ ଅନୁମିତ ହୁଏ ଯେ ଏଠାରେ ବହୁ ଜାତିର, ବହୁ ଗୋଷ୍ଠୀର ଓ ବହୁ ଧର୍ମଧାରଣାର ଅନୁବର୍ତ୍ତୀ ବ୍ୟକ୍ତିମାନେ ବାସ କରୁଥିଲେ ଏବଂ ନିଜ ନିଜର ସାମାଜିକ ପ୍ରଥା ଅନୁଯାୟୀ ମୃତବ୍ୟକ୍ତିମାନଙ୍କୁ କବର ଦେଉଥିଲେ ।

୧୨- ବହୁ ବିଦେଶୀ ବ୍ୟକ୍ତି ବିଶେଷ କରି ସୁମେରୀୟ ବ୍ୟକ୍ତି ଏଠାରେ ରହୁଥିଲେ ଏବଂ ମୃତ୍ୟୁ ପରେ ସେମାନଙ୍କୁ ନିଜ ନିଜର ସାମାଜିକ ପ୍ରଥା ଅନୁଯାୟୀ କବର ଦିଆଯାଉଥିଲା ।

୧୩- ଏଠାରେ ଯେଉଁଲି ଭାବରେ ବହୁ ଧର୍ମ ଓ ବହୁ ଜାତିର ଲୋକ ଶାନ୍ତିପୂର୍ଣ୍ଣ ଭାବରେ ସହା-ବସ୍ଥାନ କରୁଥିଲେ ଏବଂ ମୃତ୍ୟୁ ପରେ ମଧ୍ୟ ଗୋଟିଏ କବରସ୍ଥାନରେ ସହାବସ୍ଥାନ କଲେ, ତା'ର ପ୍ରମାଣ ଅନ୍ୟ କୁତ୍ରାପି ପାଇବା ଦୁର୍ଲଭ । ଏହା ସେତେବେଳେ ଏଠାରେ ଅନୁସୃତ ହେଉଥିବା ଧର୍ମ ନିରପେକ୍ଷ ନୀତିର ଯଥେଷ୍ଟ ସୂଚନା ଦିଏ ।

ଏ ପର୍ଯ୍ୟନ୍ତ ସିନ୍ଧୁ ସଂସ୍କୃତିର ବିସ୍ତୃତିର ପରିସୀମା ନିର୍ଦ୍ଧାରିତ କରାଯାଇ ପାରିନାହିଁ । କ୍ରମେ ନୂଆ ନୂଆ ଅଞ୍ଚଳମାନଙ୍କରୁ ଏହାର ଧ୍ୱଂସାବଶେଷ ବାହାରୁଛି । ଏହି ହେତୁ ଏହାର କେନ୍ଦ୍ରବିନ୍ଦୁ (epicentre) ଏ ପର୍ଯ୍ୟନ୍ତ ନିର୍ଦ୍ଧାରିତ ହୋଇପାରିନାହିଁ । ବାସ୍ତବିକ ଏ ବିଷୟରେ ଅନେକ ତଥ୍ୟ ଏ ପର୍ଯ୍ୟନ୍ତ ଆବିଷ୍କୃତ ହେବାକୁ ବାକି ଅଛି । ତଥାପି ଯେଉଁ କେତୋଟି ସ୍ଥାନ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇଛି, ସେହି ସ୍ଥାନସ୍ଥ କବରଗୃହକର ଶାନ୍ତି,

ମାନବ ଓ ପାରସ୍ପରିକ ସୌହାର୍ଦ୍ଦ୍ୟପୂର୍ଣ୍ଣ ଅବସ୍ଥିତି ଦେଖିଲେ ଆମେ ବୁଝିପାରିବା, ଭାରତ-ଭୂମିରେ ଧର୍ମନିରପେକ୍ଷତାର ଚେର କେତେ ଗଭୀର ପ୍ରଦେଶକୁ ସ୍ପର୍ଶ କରିଛି ଓ ଏହାର ପରମ୍ପରା କେତେ ପ୍ରାଚୀନ ! ଏହି କବରଗୁଡ଼ିକ ଯେଉଁ ଧର୍ମନିରପେକ୍ଷତା ଓ ସଦ୍ଭାବସ୍ଥାନର ବାଣୀ ଉଦ୍‌ଘୋଷିତ କରୁଛନ୍ତି ତାହା ଏବେ ମଧ୍ୟ ଭାରତବାସୀଙ୍କୁ ସାଂପ୍ରଦାୟିକ ବିଭେଦତାର ଅନ୍ଧକାର ମଧ୍ୟରେ ଆଲୋକ ପ୍ରଦାନ କରୁଛି ।



## ଗ୍ରନ୍ଥସୂଚୀ


୧- Purusottam Singh : Burial Practices in Ancient India, Prithivi Prakasan, (1970) p. 172.

୨- A. L. Basam : The Wonder that was India, Rupa & Co. (1985 Reprint), p. 24.

୩- R. E M. Wheeler : The Indian Civilisation (1962), p. 54 and E. Mackay : Early Indus Civilisation, (1948), pp. 73-74.

୪- Purusottam Singh : Ibid : p. 172.

୫- ନବଭାରତ : ତ୍ରିଂଶ ବର୍ଷ : ୯ମ ସଂଖ୍ୟା : "ସିନ୍ଧୁ-ସଭ୍ୟତା ଓ ଜୈନଧର୍ମ" : ନବୀନ କୁମାର ସାହୁ ଓ ସୁରେନ୍ଦ୍ର ମହାନ୍ତି (ମୂ.ଦେଙ୍କ ମତ ଉଦ୍ଧାର), ପୃ ୬୯୯ ।

୬- R. E. M. Wheeler : The Personality of India (1956) Introduction.

୭- The Ramkrishna Mission Institute of Culture, Calcutta : The Cultural Heritage of India, vol. I : "Indus Valley Civilisation," Article by M. S. Vats : p. 124.

୮- A. L. Basam : op. cit. pp. 24-25.

୯- K. N. Sastri : New Light on the Indus Civilisation vol. II. pp. 39-53.

୧୦- R, E M. Wheeler : op. cit ; p. 53-54.

୧୧- Ancient India, Bulletin of the Archaeological Survey of India, no. 3, pp. 87.

୧୨- R. E. M. Wheeler : op. cit : p. 53.

୧୩- K. N. Sastri : op. cit : p. 42.

୧୪- The Cultural Heritage of India : vol. I, Article by M S. Vats : op. cit : .p. 124.

୧୫- S. Piggot : Prehistoric India (1950) p. 235. ପ୍ରତ୍ନତତ୍ତ୍ୱବିଦ୍ ଆଲ୍‌ଚିନ୍ ଦମ୍ପତିଙ୍କ ମତରେ ହରପ୍ପା ଛଡ଼ା ଏଭଳି ଚିତ୍ରିତ ମୃଣ୍ମୟ ପାତ୍ର କେବଳ ହୈଦ୍ରାବାଦ୍‌ର ଭବାଲ୍‌ପୁର ଠାରେ ମିଳିଛି । ଦେଖନ୍ତୁ ; Bridget and Raymond Allchin : The Rise of Civilisation in India and Pakistan : New Delhi (1983), p. 217.

୧୬- Purusottam Singh : op. cit. p. 51.

୧୭- S. S. Sarkar : Ancient Races of Baluchistan, Punjab and Sind, Calcutta (1964) : p. 81.

୧୮- 'ମସ୍ମୂଃ' ଶବ୍ଦ ହେଉଛି ଗର୍ତ୍ତ ବା ମୁକ୍ତ୍ୟର୍ଥବୋଧକ । ଏଥିପାଇଁ ଦେଖନ୍ତୁ ଶବ୍ଦକଳ୍ପଦ୍ରୁମଃ : ୨ୟ କାଣ୍ଡ : ପୃ. ୬୩୩ ।

୧୯- ଋଗ୍‌ବେଦ : ୧୦ । ୧୬ ।

୨୦- ଋଗ୍‌ବେଦ, ୧୦ । ୧୮ । ୯ ।

୨୧- The Cultural Heritage of India, Vol. I ; Article by M. S. Vats : op. cit : p. 125 and M. S. Vats : Excavations at Harappa, vol. I.

ଋଗ୍‌ବେଦରେ ମଧ୍ୟ ମୃତବ୍ୟକ୍ତିଙ୍କୁ କବର ଦେବାର ମନ୍ତ୍ର ପରିଦୃଷ୍ଟ ହୁଏ । ଦଶମ ମଣ୍ଡଳରେ (୧୮ । ୧୦-୧୧) କୁହାଯାଇଛି :

"ଉପ ସର୍ପ ମାତରଂ ଭୂମିଂ ଏତାଂ ଉରୁଃବ୍ୟଚସଂ ପୃଥିବୀଂ ସୁଃଶେବାମ୍ ।"

ଅର୍ଥାତ୍ "ତୁମେ (ମୃତବ୍ୟକ୍ତି) ଏବେ ଶୁଭଙ୍କରୀ ପୃଥିବୀମାତାଙ୍କ ପ୍ରଶସ୍ତ ବକ୍ଷକୁ ଚାଲିଯାଅ' । ସେଠାରେ ପୃଥିବୀମାତାଙ୍କୁ ପୁଣି ଆବାହନ କରି କୁହାଯାଇଛି ;

"ମାତା ପୁତ୍ରଂ ଯଥା ସିଚା ଅଭି ଏନଂ ଭୂମେ ଋର୍ଣ୍ଣୁହି" ।

ଅର୍ଥାତ୍ "ହେ ପୃଥିବୀ ମାତା ! ମାଆ ପୁଅକୁ କୋଳରେ ଗୁପି ରଖିଲା ଭଳି ତୁମେ ଏହାଙ୍କୁ (ମୃତବ୍ୟକ୍ତିଙ୍କୁ) କୋଳରେ ଧରି ରଖ ।"

୧୨- D. D. Kosambi : Myth and Reality, 1962 (Bombay), p p. 74-78 and Bridget and Raymond Allchin : The Birth of Indian Civilisation, (1968 , p. 314.

୧୩- Bridget and Raymond Allchin : The Rise of Civilisation in India and Pakistan : New Delhi (1983) : p. 224.

୧୪-Indian Archaeology—A Review : 1954-55, p. 9.

୧୫- Indian Archaeology—A Review, p. p. 39-44.

୧୫-କ- Mackay : Early Indus Civilisation : p. 151.

୧୬- H. D. Sankalia : Prehistory and Protohistory in India and Pakistan (1963) : p. 168.

୧୭- A. L Basham : op. cit : p. 25.

୧୮- E. Mockler : "Ancient Dwellings and Tombs in Baluchistan, Proceedings of Asiatic Society Bengal : pp. 172-174.

୧୯- Purusottam Singh . op. cit : p. 46.

୨୦- ସିନ୍ଧୁ-ସଭ୍ୟତା ଆଗ ନା ଆର୍ଯ୍ୟମାନଙ୍କର ବୈଦିକ ସଭ୍ୟତା ଆଗ ସେ ବିଷୟ ଏ ପର୍ଯ୍ୟନ୍ତ ମଧ୍ୟ ବିବଦମାନ ଅଛି । ଡ଼ଃ ପୁସଲକରଙ୍କ ମତରେ ବୈଦିକ ସଭ୍ୟତା ଯେ ସିନ୍ଧୁ-ସଭ୍ୟତାର ପୂର୍ବବର୍ତ୍ତୀ ନୁହେଁ ତାହା ନିର୍ଦ୍ଦିଷ୍ଟ ଭାବରେ କୁହାଯାଇ ପାରିବ ନାହିଁ । ସେ କହିଛନ୍ତି :

"There is however, no positive or conclusive evidence to connect the Vedic Aryans with the excavated cultures subsequent to those of the Indus Valley.

× × × ×

Unless excavations present strata containing antiquities definitely associated with the Vedic culture, superimposed on layers of the Indus Valley Civilisation or unless universally accepted decipherment of the Indus script furnishies some definite clue, the priority of the Indus valley civilisation to the Rig-Veda cannot be said to have been definitely established."

See the Cultural Heritage of India, vol. I, Editor's preface by A. D. Pusalkar, pp. xlvi-xlvii.



# ଅଷ୍ଟମ ପରିଚ୍ଛେଦ

## ଦକ୍ଷିଣ ଓ ପୂର୍ବଭାରତର ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତି

ପୂର୍ବରୁ ପ୍ରତ୍ନତାତ୍ତ୍ୱିକମାନଙ୍କର ଧାରଣା ଥିଲା ଯେ ଭାରତଭୂମିରେ ସିଧାସଳଖ ଲୌହପ୍ରସ୍ତରଯୁଗର ଆବିର୍ଭାବ ହୋଇଥିଲା ଏବଂ ଏଠାରେ ତାମ୍ରପ୍ରସ୍ତରଯୁଗ (Chalcolithic Age) ଆଦୌ ନଥିଲା । ମହେଞ୍ଜୋଦାରୋ, ହରପ୍ପା ତଥା ଅନ୍ୟାନ୍ୟ ସିନ୍ଧୁ ସଂସ୍କୃତି ସହିତ ସଂଶ୍ଳିଷ୍ଟ ସ୍ଥାନମାନଙ୍କର ଧ୍ୱଂସାବଶେଷମାନ ଆବିଷ୍କାର ଫଳରେ ଏ ଧାରଣା ବର୍ତ୍ତମାନ ସଂପୂର୍ଣ୍ଣ ଭାବରେ ଦୂର ହୋଇଯାଇଛି । ଏ ତ ଗଲା ସ୍ୱାଧୀନତା ପୂର୍ବର କଥା । ସ୍ୱାଧୀନତା ପରେ ମଧ୍ୟ ଦକ୍ଷିଣ ଭାରତ ଓ ପୂର୍ବ ଭାରତର ଅନେକ ସ୍ଥାନରେ ଏହି ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତିର ବହୁ ଅବଶେଷମାନ ଆବିଷ୍କୃତ । ଏହି ଯୁଗରେ ଥିଲା ତାମ୍ର ଓ ବ୍ରୋଞ୍ଜର ପ୍ରାଧାନ୍ୟ । ଏହି ଧାତୁରେ ବିଭିନ୍ନ ଅସ୍ତ୍ରଶସ୍ତ୍ର, ନିତ୍ୟ-ବ୍ୟବହାର୍ଯ୍ୟ ସାମଗ୍ରୀ ଆଦି ପ୍ରସ୍ତୁତ ହେଉଥିଲା । ଧ୍ୱଂସାବଶେଷ ଗୁଡ଼ିକର ଅଙ୍ଗାର ପରୀକ୍ଷା ଫଳରେ ଏହି ସଂସ୍କୃତିର କାଳକୁ ଖ୍ରୀ: ପୂ: ୨୦୦୦ ଶତାବ୍ଦୀରୁ ଖ୍ରୀ: ପୂ: ୭୦୦ ଶତାବ୍ଦୀ ମଧ୍ୟରେ ସ୍ଥାନିତ କରାଯାଉଛି । (୧) ଅବଶ୍ୟ ପ୍ରତ୍ନତତ୍ତ୍ୱବିତ୍ ଲାଲ ଏହି ସମୟକୁ ଆହୁରି ଠିକ୍ ଏ ନିର୍ଦ୍ଦିଷ୍ଟ କରିଦେଇଛନ୍ତି । ତାଙ୍କ ମତରେ ଏହି ସଂସ୍କୃତିକୁ ଖ୍ରୀ: ପୂ: ଦ୍ୱିତୀୟ ସହସ୍ରାବ୍ଦୀର ପ୍ରଥମାର୍ଦ୍ଧରେ ସ୍ଥାନିତ କରିବା ଯୁକ୍ତିଯୁକ୍ତ ହେବ । (୨) ଆଲଚିନ୍ ଦମ୍ପତି କିନ୍ତୁ ଏହାକୁ ଖ୍ରୀ: ପୂ: ୨୦୦୦ରୁ ଖ୍ରୀ. ପୂ. ୧୦୫୦ ମଧ୍ୟରେ ସ୍ଥାନିତ କରିଛନ୍ତି । (୨-କ) ଏଥିରୁ ଜଣା ପଡ଼ୁଛି ଯେ ଖ୍ରୀ: ପୂ: ୨୦୦୦ ଶତାବ୍ଦୀରୁ ପ୍ରାୟ ଏକ ହଜାର ବର୍ଷ ଧରି ଦକ୍ଷିଣ ଓ ପୂର୍ବଭାରତରେ (ମହାରାଷ୍ଟ୍ର ସମେତ) ଏହି ସଂସ୍କୃତି ବିସ୍ତାର ଲାଭ କରିଥିଲା । ଆମେ ଜାଣୁ ଯେ ଏହାର ପ୍ରାୟ ପାଞ୍ଚ ଶହ ବର୍ଷ ପୂର୍ବରୁ (ଖ୍ରୀ: ପୂ: ୨୫୦୦) ସିନ୍ଧୁ ଉପତ୍ୟକାରେ ହରପ୍ପୀୟ ସଂସ୍କୃତିର ଆବିର୍ଭାବ ହୋଇଥିଲା । ଏହି ସଂସ୍କୃତି ଉପରେ ସିନ୍ଧୁ ସଂସ୍କୃତିର ପ୍ରଭାବ କେତେ ଦୂର ପଡ଼ିଥିଲା କି ନାହିଁ ତାହା ଆଲୋଚନା କରିବା ନିଶ୍ଚିତ ଭାବେ କୌତୂହଳୋଦ୍ଦୀପକ କାରଣ ସିନ୍ଧୁ ସଂସ୍କୃତିର ଚରମ ଉନ୍ନତି ସମୟରେ ହିଁ ଏହାର ଆବିର୍ଭାବ ।

ଦକ୍ଷିଣ ଓ ପୂର୍ବଭାରତରେ ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତିର ଧ୍ୱଂସାବଶେଷ ପ୍ରଥମେ ଆବିଷ୍କାର କରିଥିଲେ ସଂଖାଲିଆ । ନାସିକ ଓ ଜୋର୍ୱେ ଠାରେ ୧୯୫୦-୫୧ ମସିହାରେ ଭୂଖନନ ଫଳରେ ସର୍ବପ୍ରଥମେ ସେ ଏହା ଆବିଷ୍କାର କରିଥିଲେ । ତାଙ୍କ ପରେ ବହୁ

ଜାଗାରେ ଭୂଖନନ ଫଳରେ ଏହି ସଂସ୍କୃତିର ଧ୍ୱଂସାବଶେଷ ବହୁଳ ଭାବରେ ଆବିଷ୍କୃତ ହୋଇଛି । ଏହା ଲକ୍ଷ୍ୟ କରିବାର କଥା ଯେ ଏ ପ୍ରକାର ସଂସ୍କୃତିର ଧ୍ୱଂସାବଶେଷ ମୁଖ୍ୟତଃ ଗୁରିଗୋଟି ନଦୀ ଓ ସେମାନଙ୍କର ଉପନଦୀମାନଙ୍କ ଦ୍ୱାରା ସେବିତ ଅଞ୍ଚଳରେ ବିଦ୍ୟମାନ । କେଉଁ କେଉଁ ସ୍ଥାନମାନ କେଉଁ କେଉଁ ନଦୀ ଉପତ୍ୟକାରେ ବିଦ୍ୟମାନ ତାହା ନିମ୍ନରେ ଦର୍ଶାଯାଉଛି ।

| | |
|---|---|
| କ- ଚମ୍ବଲ ଉପତ୍ୟକା | ଆର୍ହାର, ମାନୋଟି ଓ ନଗଦା |
| ଖ- ବନଗଙ୍ଗା ଉପତ୍ୟକା | ଗିଲୁଣ୍ଡ |
| ଗ- ନର୍ମଦା ଉପତ୍ୟକା ( ଉଭୟ କୂଳରେ ) | ମହେଶ୍ୱର ଓ ନବଡାଟୋଲି |
| ଘ- ତାପ୍ତି ଓ ଗୋମସ୍ତୀ ନଦୀର ମିଳନସ୍ଥଳ | ପ୍ରକାଶ |
| ଙ- ଗିର୍ଣ୍ଣା କୂଳରେ ( ତାପ୍ତିର ଉପନଦୀ ) | ବେହେଲ୍ୱାଡ଼ା |
| ଚ- ଗୋଦାବରୀର ଉପନଦୀ ପ୍ରବରା ନଦୀ ତୀରରେ | ଜୋରୱେ, ନେଭାସା ଓ ଦାଇମାବାଦ |
| ଛ- ଗୋଦାବରୀର ଉପନଦୀ ଘୋଡ଼ ତୀରରେ | ଇନାମଗାଓଁ |
| ଜ- ଅଜୟ ନଦୀ (ବର୍ଦ୍ଧମାନ ଜିଲ୍ଲା, ପ.ବଙ୍ଗଳା) | ପାଣ୍ଡୁରାଜାର ଢିବି (୩) |

ଏହି ସବୁ ଧ୍ୱଂସାବଶେଷ ଶହ ଶହ ମାଇଲ ବ୍ୟବଧାନରେ ଚାରିଆଡ଼େ ବିକ୍ଷିପ୍ତ ଭାବରେ ଅବସ୍ଥିତ ଥିଲେ ହେଁ ସେଗୁଡ଼ିକ ମଧ୍ୟରେ କେତେକ ସାମ୍ୟ ରହିଛି । ତେଣୁ ଅନୁମାନ କରାଯାଏ ଯେ ଏହି ସଂସ୍କୃତିର ଅଧିକାରୀ ଥିଲେ ଗୋଟିଏ ଗୋଷ୍ଠୀର ଲୋକେ । ଧ୍ୱଂସାବଶେଷଗୁଡ଼ିକ ପରୀକ୍ଷା ନିରୀକ୍ଷା କଲେ ସାଧାରଣତଃ ନିମ୍ନଲିଖିତ ସୌସାଦୃଶ୍ୟମାନ ତହିଁରେ ପରିଲକ୍ଷିତ ହୁଏ ।

କ- ସର୍ବତ୍ର ମସୃଣ ହତିଆରର ବ୍ୟବହାର କରାଯାଇଛି ।

ଖ- ବହୁଳ ଭାବରେ ତମ୍ବାର ହତିଆର ଓ ଅନ୍ୟାନ୍ୟ ନିତ୍ୟବ୍ୟବହାର୍ଯ୍ୟ ସାମଗ୍ରୀ ଓ ଖେଳଣା ଆଦିର ବ୍ୟବହାର କରାଯାଇଛି ।

ଗ- ଦୁଇ ପ୍ରକାର ମୃଣ୍ମୟ ପାତ୍ର ମିଳିଛି । ଗୋଟିଏ ପ୍ରକାର ପାତ୍ରରେ ଲାଲ ଓ କଳା-ରଙ୍ଗର ଚିତ୍ର ଅଙ୍କିତ ଏବଂ ଆଉ ଏକ ପ୍ରକାର ଲାଲ ରଙ୍ଗର ପାତ୍ରରେ କଳା-ରଙ୍ଗର ଚିତ୍ର ଅଙ୍କିତ ।

ଘ- ଲୋକମାନଙ୍କର ଘରଗୁଡ଼ିକ ଝାଟିମାଟିର ଥିଲା ।

ଙ- ବହୁଳ ପରିମାଣର ମାଳି ଓ ଅଳ୍ପଦାମିକା ପଥରର ଅଳଙ୍କାରମାନ ମିଳିଛି ।

ଚ- ମୃତବ୍ୟକ୍ତିର ଶବକୁ ପାତ୍ର ଭିତରେ ରଖି ପାତ୍ରଟିକୁ କବର ଦିଆଯାଉଥିଲା କିମ୍ବା ଖାଲି ଖୋଲା ମୃତବ୍ୟକ୍ତିର ଶବକୁ କେବଳ କବର ଦିଆଯାଉଥିଲା । (୪)

ଏହି ସଂସ୍କୃତିର ଅଧିକାଂଶ କିଏ ହୋଇ ପାରନ୍ତି ତାହା ଜଣିବା ଏକ କୌତୂହଳୋଦ୍ଦୀପକ ପ୍ରଶ୍ନ । ନେଭାସାରୁ ( ମହାରାଷ୍ଟ୍ର ) ମିଳିଥିବା ନରକଙ୍କାଳମାନଙ୍କର ପରୀକ୍ଷା ନିକଟ ଅତୀତରେ କରାଯିବା ଫଳରେ ତତ୍ତ୍ୱବିଦମାନେ ମତ ଦେଉଛନ୍ତି ଯେ ଏହି ଲୋକମାନେ ହେଉଛନ୍ତି 'ଭୂମଧ୍ୟସାଗରୀୟ' ଜାତିର । 'ପ୍ରୋଟୋ-ଅଷ୍ଟ୍ରାଲଏଡ୍' ( Proto-Australoid ) ଜାତିର ନରକଙ୍କାଳମାନ ଅବଶ୍ୟ ଏଠାରେ ମିଳିଛି; ତାହା କିନ୍ତୁ ନଗଣ୍ୟ । (୫) ମହେଞ୍ଜୋଦାରୋ ଠାରେ ପ୍ରତ୍ନତତ୍ତ୍ୱବିତ୍ ହୁଇଲର ସର୍ବପ୍ରଥମେ ଯେଉଁ କବରସ୍ଥାନ ଆବିଷ୍କାର କରିଥିଲେ ଏବଂ ଯାହାକୁ ପ୍ରତ୍ନତାତ୍ତ୍ୱିକମାନେ R-37 କବରସ୍ଥାନ ( R-37 Cemetery ) ବୋଲି କହିଥାନ୍ତି, ସେଠାରୁ ମିଳିଥିବା ନରକଙ୍କାଳ ଗୁଡ଼ିକ ସହିତ ଏହି ନରକଙ୍କାଳ ଗୁଡ଼ିକର ସାମ୍ୟ ପରିଦୃଶ୍ୟମାନ । ତା' ସତ୍ତ୍ୱେ ସେଠାରେ ଅନୁସୃତ ମୃତବ୍ୟକ୍ତିକୁ କବର ଦେବାର ପ୍ରଣାଳୀ ଏଠାରେ ପୂର୍ଣ୍ଣ ଭାବରେ ଅନୁସୃତ ହୋଇନାହିଁ । ଏଥିରୁ ଦୁଇଟି ଜିନିଷ ଅନୁମାନ କରିହେବ । ପ୍ରଥମତଃ ହରପ୍ପା ସଂସ୍କୃତିର ଅଧିବାସୀମାନେ କ୍ରମେ କ୍ରମେ ଦକ୍ଷିଣାଭିମୁଖୀ ହୋଇ ଗତି କରିବା ପରେ ସେମାନଙ୍କର ସ୍ଥାନୀୟ ସଂସ୍କୃତି ସହିତ ସମ୍ପର୍କ ଆସିବା ଫଳରେ ଏକ ନୂଆ ପ୍ରକାର ମିଶ୍ରିତ ସଂସ୍କୃତିର ଉଦ୍ଭବ ହୋଇଥିବ । ବହୁ ବର୍ଷ ଧରି ପିତୃସଂସ୍କୃତି ଠାରୁ ବିଚ୍ଛିନ୍ନ ରହିବା ଫଳରେ ପିତୃସଂସ୍କୃତିର କେତେକ ମୌଳିକ ଲକ୍ଷଣ ମଧ୍ୟ ସେମାନେ ଭୁଲି ଯାଇଥିବେ । ଦ୍ୱିତୀୟତଃ ଏହି ଲୋକମାନେ ଏକ ପୃଥକ୍ ଗୋଷ୍ଠୀରେ ସମୁଦ୍ରପଥ ଦେଇ ବୃହତ୍ ପ୍ରସ୍ତର ସଂସ୍କୃତିର ( Megalithic culture ) ଅଧିକାଂଶମାନଙ୍କ ଭଳି ଦକ୍ଷିଣ-ଭାରତକୁ ଆସିଥିବେ ଏବଂ ଏଠାରୁ କ୍ରମେ ଉତ୍ତର ଓ ପୂର୍ବଦିଗକୁ ଗତି କରିଥିବେ । ଏହା ଫଳରେ ଆମେ ଏହି ସଂସ୍କୃତିର ପଦ-ଚିହ୍ନ ସୁଦୂର ମହାରାଷ୍ଟ୍ର ଓ ପଶ୍ଚିମ ବଙ୍ଗରେ ମଧ୍ୟ ଦେଖିବାକୁ ପାଇ ପାରୁଛୁ । ଏହି ଦୁଇଟି ଅନୁମାନରୁ କେଉଁଟି ଠିକ୍ ତାହା କହି ହେବନାହିଁ । ଏ ବିଷୟରେ ନିଷ୍ପତ୍ତି ଆହୁରି ଅଧିକତର ଗବେଷଣାସାପେକ୍ଷ ।

ଭୂଖନନ ଫଳରେ ମିଳୁଥିବା ବିଭିନ୍ନ ଧ୍ୱଂସାବଶେଷଜନିତ ପ୍ରମାଣଗୁଡ଼ିକୁ ଏକତ୍ର

କରି ସେଗୁଡ଼ିକର ପରୀକ୍ଷା ନିରୀକ୍ଷା ଫଳରେ ଏହି ସଂସ୍କୃତିର ନିମ୍ନଲିଖିତ କେତେକ ବିଭାବ ସଂପର୍କରେ ଏକ ସ୍ଥୂଳ ଧାରଣା ଆସେ :

କ- ସିନ୍ଧୁ ସଂସ୍କୃତିର ପ୍ରଭାବ

ଖ- ପରଲୋକରେ ବିଶ୍ୱାସ

ଗ- ଶବସତ୍କାର ପଦ୍ଧତି

ଘ- ଧର୍ମ ଓ ସମାଜ

ଉକ୍ତ ବିଭାବମାନଙ୍କ ବିଷୟରେ ପୃଥକ୍ ପୃଥକ୍ ଭାବରେ ନିମ୍ନରେ ଆଲୋଚନା କରାଯାଉଛି ।

## ସିନ୍ଧୁ ସଂସ୍କୃତିର ପ୍ରଭାବ :

ଏହି ସଂସ୍କୃତିର ଗୋଟିଏ ବିଶିଷ୍ଟ ବିଭାବ ହେଲା, ସ୍ୱତନ୍ତ୍ର ମୃତବ୍ୟକ୍ତିଙ୍କ ଲାଗି ଏମାନେ କବରସ୍ଥାନ ବ୍ୟବସ୍ଥାର ଅନଭିଜ୍ଞମାନତା । ବସ୍ତିଅଞ୍ଚଳରେ ହିଁ ସେମାନଙ୍କୁ କବର ଦିଆଯାଉଥିଲା । ପ୍ରବରା ନଦୀ ତୀରସ୍ଥ ଦାଇମାବାଦ ଓ ନେଭାସା ( ଉଭୟ ମହାରାଷ୍ଟ୍ରରେ ) ଅଞ୍ଚଳ ତଥା ଅନ୍ୟାନ୍ୟ ଅଞ୍ଚଳମାନଙ୍କରେ ହୋଇଥିବା ଖନନ ଫଳରେ କବରମାନ ବସ୍ତି-ଅଞ୍ଚଳରୁ ହିଁ ବାହାରିଛି । କେତେକ କବର ଘରର ଚଟାଣ ତଳୁ ମଧ୍ୟ ବାହାରିଛି । ପ୍ରତ୍ନତତ୍ତ୍ୱବିତ୍ ସଂଖାଲିଆ ନେଭାସାର ଗୋଟିଏ ଘରର ୨୦ ଫୁଟ × ୨୦ ଫୁଟ ବିଶିଷ୍ଟ ଚଟାଣ ତଳୁ ୧୨ଟି କବର ଆବିଷ୍କାର କରିଛନ୍ତି । ଦାଇମାବାଦରେ ମଧ୍ୟ ସେହିଭଳି ବସ୍ତିଅଞ୍ଚଳ କମ୍ବା ଘରର ଚଟାଣମାନଙ୍କ ତଳୁ କବର-ମାନ ବାହାରିଛି । (୨) କିନ୍ତୁ ଆହୁରି ଟିକିଏ ଉତ୍ତରକୁ ଗଲେ ଆମେ କବର ଦେବାଲାଗି ଏକ ନୂତନ ପଦ୍ଧତି ଅନୁସୃତ ହୋଇଥିବାର ପ୍ରମାଣ ଦେଖିପାରୁ । ଏହା ଦେଖିବାକୁ ମିଳେ ମହାରାଷ୍ଟ୍ରର ଗିର୍ଣ୍ଣା ନଦୀ ତୀରସ୍ଥ ଟେକୱାଡ଼ା ଠାରେ । ଏଠାରେ ପ୍ରଧାନ ବସ୍ତିଅଞ୍ଚଳରୁ ଛାଡ଼ି ଟିକିଏ ଦୂରରେ କବରସ୍ଥାନଟି ଅବସ୍ଥିତ । ହରପ୍ପୀୟ ସଂସ୍କୃତି ସହିତ ସଂଶ୍ଳିଷ୍ଟ ପ୍ରତ୍ୟେକଟି ସ୍ଥାନରେ କବରସ୍ଥାନଟି ପ୍ରଧାନ ବସ୍ତି ଠାରୁ ଦୂରରେ ଅବସ୍ଥିତ ଥିବାର ପ୍ରମାଣ ମିଳିଛି । ଏହା ମୂଳରେ କିଛି ଧାର୍ମିକ ବିଶ୍ୱାସ ଥାଇପାରେ ଅଥବା ନଗର ନିର୍ମାଣ ଲାଗି ଅପରିହାର୍ଯ୍ୟ ସ୍ୱାସ୍ଥ୍ୟକର ପରିବେଶରେ ପରିକଳ୍ପନା ବି ଥାଇପାରେ । ସିନ୍ଧୁ ସଭ୍ୟତାର ଏକ ପ୍ରଧାନ କ୍ଷେତ୍ର ଗୁଜୁରାଟର ଲୋଠାଲ, ଟେକୱାଡ଼ା ଠାରୁ ଅଳ୍ପ ଦୂରରେ ଅବସ୍ଥିତ । ଅତଏବ, ସିନ୍ଧୁ ସଂସ୍କୃତିର ପ୍ରଭାବ ଏଠାକାର ଅଧିବାସୀମାନଙ୍କ ଉପରେ ପଡ଼ିଥିବା କିଛି ଅସମ୍ଭବ ନୁହେଁ । ଏଭଳି ପ୍ରଭାବ ପଡ଼ିଛି ବୋଲି ବାସ୍ତବିକ

ଯେଉଁ କେତେକ ଗବେଷକ ମତ ଦେଇଛନ୍ତି ତାହା ଯଥାର୍ଥ ବୋଲି ମନେ ହୁଏ । (୭) ସିନ୍ଧୁ ସଂସ୍କୃତିରେ ଶବକୁ ଉତ୍ତର ଦକ୍ଷିଣ କରି ଶାୟିତ କରି ମସ୍ତକକୁ ଉତ୍ତର ଦିଗକୁ ରଖାଗଲି ଭଳି ଏଠାରେ ମଧ୍ୟ ସେହି ପଦ୍ଧତି ଅନୁସୃତ । ଅତଏବ, ଉତ୍ତରରେ ଦେବ-ଭୂମି ଏବଂ ଉତ୍ତରାୟଣରେ ସ୍ୱର୍ଗପ୍ରାପ୍ତି ହେବା ବିଷୟରେ ଏକ ସ୍ଥୂଳ ଧାରଣା ଯେ ଏହି ଲୋକମାନଙ୍କ ମନରେ ଥିଲି ତାହା ବିଶ୍ୱାସଯୋଗ୍ୟ । ଏହି ବିଶ୍ୱାସଟି ସିନ୍ଧୁ ସଂସ୍କୃତିର ଅଧିବାସୀମାନଙ୍କ ମାନସିକତାକୁ ମଧ୍ୟ ଆଚ୍ଛନ୍ନ କରି ରଖିଥିଲି । ସେମାନେ ( ସିନ୍ଧୁ ସଂସ୍କୃତିର ଅଧିବାସୀମାନେ ) ମଧ୍ୟ ଶବର ମୁଣ୍ଡକୁ ଉତ୍ତର ଦିଗକୁ ରଖି କବର ଦେଉଥିଲେ ।

ପୂର୍ବରୁ କୁହାଯାଇଛି ଯେ ନେଭସାର ବସ୍ତି ଅଞ୍ଚଳରୁ ବିଶେଷ କରି ଘରର ଚଟାଣ ତଳୁ କବରମାନ ବାହାରିଛି । କିନ୍ତୁ ପରବର୍ତ୍ତୀ ସମୟର ଅଧିକାଂଶ କବରମାନ ନଦୀ କୂଳରୁ ( ପ୍ରବରା ନଦୀ ) ଆବିଷ୍କୃତ ହୋଇଛି । ଏଥିରୁ ଅନୁମିତ ହୁଏ ଯେ ନଦୀ-ତୀରଟିକୁ ଶଂସିତ ସମୟରେ ମୃତବ୍ୟକ୍ତିଙ୍କୁ କବର ଦେବାଲାଗି ବ୍ୟବହାର କରାଯାଉଥିଲି । ପ୍ରକାରାନ୍ତରେ ଏହା ଥିଲି ସେମାନଙ୍କ ପାଇଁ ଏକ ସ୍ୱତନ୍ତ୍ର କବରସ୍ଥାନ । ହୁଏତ ଟେକ-ଓ୍ୱାଡ଼ାର ଅଧିବାସୀମାନଙ୍କ ଦ୍ୱାରା ଅନୁସୃତ କବରଖାନା ଲାଗି ସ୍ୱତନ୍ତ୍ର ସ୍ଥାନ ନିରୂପିତ କରି ରଖିବା ପଦ୍ଧତିର ପ୍ରଭାବ ଏମାନଙ୍କ ଉପରେ ପଡ଼ିଥିବ ଅଥବା ସିଧାସଳଖ ଗୁଜୁରାଟସ୍ଥ ଲୋଥାଲ୍ ଓ ଅନ୍ୟାନ୍ୟ ଅଞ୍ଚଳସ୍ଥ ସିନ୍ଧୁ ସଂସ୍କୃତିର ଅଧିବାସୀମାନଙ୍କର ପ୍ରଭାବ ଏମାନଙ୍କ ଉପରେ ପଡ଼ିଥିବ । ଯେ ଯାହାହେଉ, ଏହା ଯେ ସିନ୍ଧୁ ସଂସ୍କୃତିର ପ୍ରଭାବର ଫଳ, ଏହା ଅନସ୍ୱୀକାର୍ଯ୍ୟ ।

ସିନ୍ଧୁ ସଂସ୍କୃତି ଭଳି ଏଠାରେ ଶିଶୁମାନଙ୍କୁ ମୃଣ୍ମୟ ପାତ୍ର ମଧ୍ୟରେ କବର ଦିଆ-ଯାଇଛି ଏବଂ ବୟସ୍କ ଲୋକମାନଙ୍କୁ ଖାତ ଖୋଳି କବର ଦିଆଯାଇଛି । ସ୍ଥଳ ବିଶେଷରେ ମଧ୍ୟ ବୟସ୍କମାନଙ୍କର ଅସ୍ଥିକୁ ବୃହଦାକାର ଗୋଡ଼ ଲାଗିଥିବା ମୃଣ୍ମୟ ପାତ୍ରମାନଙ୍କରେ କବର ଦିଆଯାଇଛି । ସିନ୍ଧୁ ସଂସ୍କୃତି ଭଳି ମୃତବ୍ୟକ୍ତିଙ୍କ ଆତ୍ମାର ପରଲୋକରେ ବ୍ୟବହାର ଲାଗି ତାଙ୍କର ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନ କବର ମଧ୍ୟରେ ରଖାଯାଇଛି । ରାଜସ୍ଥାନସ୍ଥ କାଲିବଙ୍ଗା ହେଉଛି ସିନ୍ଧୁ ସଂସ୍କୃତିର ଆଉ ଗୋଟିଏ ବିଶିଷ୍ଟ କ୍ଷେତ୍ର, ଯେଉଁଠାରେ କ ହରପ୍ପୀୟ ଓ ପ୍ରାକ୍-ହରପ୍ପୀୟ ଉଭୟ ସଂସ୍କୃତିର ନିଦର୍ଶନ ମିଳିଥାଏ । ଏଠାରେ କେତେକ ଶୂନ୍ୟ ପାତ୍ରକୁ କବର ଦିଆଯାଇଥିବା ଜଣାଯାଇଛି । ଗବେଷକମାନଙ୍କ ମତରେ ଯେଉଁ-ମାନଙ୍କର ଶବ ମିଳିପାରିଲି ନାହିଁ, ସେମାନଙ୍କୁ ଏଭଳି ସାଙ୍କେତିକ ଉପାୟରେ କବର ଦିଆଯାଇଛି । ଏହି ଲୋକମାନେ ଦୂର ସ୍ଥାନରେ କେଉଁଠି ଯୁଦ୍ଧ ବିଗ୍ରହରେ ମରିଥିବେ କିମ୍ବା ବାଣିଜ୍ୟ ବ୍ୟବସାୟ କରିବାକୁ ଯାଇ ମରିଥିବେ କିମ୍ବା ହିଂସ୍ରଜନ୍ତୁମାନଙ୍କ

ଦ୍ୱାରା ଆକ୍ରାନ୍ତ ହୋଇ ବନର କେଉଁ ଅଜ୍ଞାତ ସ୍ଥାନରେ ମରିଥିବେ । ଆମ୍ଭେମାନେ ମଧ୍ୟ ଶବ ନ ମିଳିଲେ ପଲାଶ କାଠରେ ସାଙ୍କେତିକ ଶବଦାହ କରାଇ ମୃତବ୍ୟକ୍ତିଙ୍କର ମୃତକ କ୍ରିୟା କରୁଛୁ । କାଲିବଙ୍ଗାରେ ଅନୁଷ୍ଠିତ ହୋଇଥିବା ଶୂନ୍ୟପାତ୍ରରେ କବର ପଦ୍ଧତି ନେହସା ଠାରେ ମଧ୍ୟ ଅନୁସୃତ ହୋଇଛି । ଏହିଭଳି ଅନେକ ଗୁଡ଼ିଏ ଶୂନ୍ୟପାତ୍ରର କବରମାନ ସେଠାରୁ ମିଳିଛି । ଏହି କବରଗୁଡ଼ିକ ସିନ୍ଧୁ ସଂସ୍କୃତିର ସାଙ୍କେତିକ କବର-ଗୁଡ଼ିକର ପ୍ରତିରୂପ ।

୧୯୩୮ ମସିହାରେ ମାଧୋସରୂପ ଭତ୍ସ ହରପ୍ପାର ପ୍ରଧାନ ସ୍ତୂପ ଓ ହୁଇଲରଙ୍କ ଦ୍ୱାରା ଆବିଷ୍କୃତ R-37 ନାମିତ କବରଖାନାର ମଧ୍ୟବର୍ତ୍ତୀ ସ୍ଥାନରେ ଯେଉଁ ପାତ୍ର କବରଗୁଡ଼ିକର ଆବିଷ୍କାର କରିଥିଲେ, ତାହାର ସୌସାଦୃଶ୍ୟ ଶଂଖିତ ସଂସ୍କୃତିର ପାତ୍ରକବର ମାନଙ୍କରେ ବିଦ୍ୟମାନ । (୮) ଏ ପ୍ରକାର ସୌସାଦୃଶ୍ୟ ବିଶେଷ ଭାବରେ ଶିଶୁମାନଙ୍କ ଲାଗି ଉଦ୍ଦିଷ୍ଟ ପାତ୍ରକବର ମାନଙ୍କରେ ଅଧିକତର ପରିସ୍ଫୁଟ । ଶିଶୁଟି ଜରାୟୁ ଭିତରେ ଯେପରି ଜନ୍ମର ଅବ୍ୟବହିତ ପୂର୍ବରୁ ରହିଥାଏ, ( ମୁଣ୍ଡ ତଳକୁ କରି ) ହରପ୍ପାସ୍ଥିତ ପାତ୍ର-କବରରେ ମୃତଶିଶୁକୁ ଠିକ୍ ସେହିପରି ରଖାଯାଇଛି । ନେହସା-ଠାରେ ଠିକ୍ ସେହି ପଦ୍ଧତି ଅନୁସୃତ ହୋଇଛି । ଏଥିରୁ ଅନୁମିତ ହୁଏ ଯେ ହରପ୍ପା ସଂସ୍କୃତିର ଅଧିକାଂଶମାନଙ୍କ ଭଳି ଏମାନେ ମଧ୍ୟ ପୁନର୍ଜନ୍ମରେ ବିଶ୍ୱାସ କରୁଥିଲେ ଏବଂ ଶିଶୁଟିକୁ ପୁନର୍ବାର ଜନ୍ମ ହେବା ଭଙ୍ଗୀରେ କବର ଦେଉଥିଲେ । ଆମ୍ଭର ଘଟାନ୍ତର ବିଷୟରେ ଏହା ଏକ ଭ୍ରାନ୍ତାତ୍ମକ ଧାରଣା ।

ସିନ୍ଧୁ ସଂସ୍କୃତିର ଧ୍ୱଂସାବଶେଷରୁ ଜଣାଯାଏ ଯେ ଅନ୍ୟ ସାଧାରଣ କବରମାନଙ୍କ ଠାରୁ ସ୍ୱାତନ୍ତ୍ର୍ୟ ରକ୍ଷା କରି କେତେକ ବୃହଦାକାର କମ୍ବା ବିଶେଷ ଭାବରେ ନିର୍ମିତ କବରମାନ ବିଦ୍ୟମାନ । ହରପ୍ପାର R-37 କବରଖାନା ଅଞ୍ଚଳରେ ଗୋଟିଏ କବର ( କବର ସଂଖ୍ୟା ୧୦ ) ମିଳିଛି ଯାହାର ଆକାର ଅସ୍ୱାଭାବିକ ଭାବରେ ବଡ଼ । ଏହା ହେଉଛି ୧୫ ଫୁଟ ଦୀର୍ଘ, ୧୦ ଫୁଟ ପ୍ରସ୍ଥ ଓ ୩ ଫୁଟ ଗଭୀରତା ବିଶିଷ୍ଟ । କାଲିବଙ୍ଗାରେ ମଧ୍ୟ ଗୋଟିଏ ସ୍ଥାନରେ ୪ ମିଟର ଦୀର୍ଘ ଓ ୨ ମିଟର ପ୍ରସ୍ଥ ବିଶିଷ୍ଟ କଞ୍ଚା ଇଟା କାନ୍ଥରେ ନିର୍ମିତ କବରଟିଏ ଆବିଷ୍କୃତ ହୋଇଛି । ତା' ଭିତରେ ୭୦ଟି ପାତ୍ରରେ ବିଭିନ୍ନ ବ୍ୟବହାର୍ଯ୍ୟ ବସ୍ତୁ ଗୁଡ଼ିକୁ କବର ଦିଆଯାଇଛି । ପାତ୍ରଗୁଡ଼ିକର ସଂଖ୍ୟାଧିକ୍ୟ ହେତୁ ଏଗୁଡ଼ିକୁ ଦୁଇ ସ୍ତରରେ କବର ଦିଆଯାଇଛି । ସବୁ ଉପରେ ତୃତୀୟ ସ୍ତରରେ ସେହି ମୃତ-ବ୍ୟକ୍ତିଙ୍କୁ କବର ଦିଆଯାଇଛି । ବାସ୍ତବିକ ଏତେ ଅଧିକ ସଂଖ୍ୟକ ପାତ୍ର ଅନ୍ୟ କୌଣସି କବର ମଧ୍ୟରେ ଦୁର୍ଲଭ । ଏଥିରୁ ଅନୁମିତ ହୁଏ ଯେ ଏହି କବର ହୁଏତ କୌଣସି ରାଜା ବା ପୁରୋହିତ ବା ସମାଜର ନେତୃତ୍ୱ ନେଉଥିବା କୌଣସି ବ୍ୟକ୍ତିଙ୍କର

ହୋଇଥିବ । ବିଶିଷ୍ଟ ବ୍ୟକ୍ତିମାନଙ୍କ ପାଇଁ ସ୍ୱତନ୍ତ୍ର କବର ଦେବା ପ୍ରଥାର ଏହି ଯେଉଁ ହରପ୍ପୀୟ ଚଳଣିଧାରା, ଏହାର ପ୍ରଭାବ ଶଂସିତ ସଂସ୍କୃତିରେ ମଧ୍ୟ ପରିଦୃଶ୍ୟମାନ । ଅହମଦନଗର ଜିଲ୍ଲା ଅନ୍ତର୍ଗତ (ମହାରାଷ୍ଟ୍ର) ପ୍ରବରା ନଦୀର ବାମ ତୀରରେ ଅବସ୍ଥିତ ଦାଇମାବାଦରୁ ମିଳୁଥିବା ଧ୍ୱଂସାବଶେଷ ଏହାର ନିଦର୍ଶନ । ଏଠାରେ ମୃତବ୍ୟକ୍ତିଙ୍କର ଶବଟିକୁ ସିଧାସଳଖ ଅନ୍ୟ ଶବ ଭଳି ମାଟିରେ ପୋତି ଦିଆଯାଇ ନଥିଲା । ଏହାକୁ ଏକ ଗୃହ ଭଳି ରଖାଯାଇ ତା'ପରେ କବର ଦିଆଯାଇଥିଲା । ନରକଙ୍କାଳର ଗୃହପଟେ ୧୪ଟି ଖୁଣ୍ଟ ପୋତାଯାଇଥିବାର ଗର୍ତ୍ତ-ଚିହ୍ନରୁ ଏହା ସୁସ୍ପଷ୍ଟ । ଏହାକୁ ବୋଧହୁଏ କବର ଦେବା ପୂର୍ବରୁ ରାଜକୀୟ ବିଧିରେ ଲୋକମାନଙ୍କର ଶେଷଦର୍ଶନ ଲାଗି ଏଭଳି ଭାବରେ ରଖାଯାଇଥିଲା । ବର୍ତ୍ତମାନ ଦେଶର ବିଶିଷ୍ଟ ଜନନାୟକମାନଙ୍କ ଶବକୁ ଯେପରି ସର୍ବସାଧାରଣଙ୍କ ଦର୍ଶନ ଲାଗି 'lying in state' ଅବସ୍ଥାରେ ରଖାଯାଉଛି, ଏହା ସେହି-ଭଳି କିଛି ଅନୁରୂପ ବ୍ୟବସ୍ଥା ପରି ମନେହୁଏ । ଏ ମଧ୍ୟ ସିନ୍ଧୁ ସଂସ୍କୃତିର ମୃତବ୍ୟକ୍ତିଙ୍କ ଭଳି କୌଣସି ରାଜା ବା ପୁରୋହିତ ବା ସମାଜରେ ସୁପ୍ରତିଷ୍ଠ ମାନ୍ୟଗଣ୍ୟ ବ୍ୟକ୍ତି ହୋଇ ପାରନ୍ତି । ତା'ହେଲେ ଏଥିରୁ ପ୍ରମାଣ ମିଳୁଛି ଯେ ଏମାନଙ୍କ ସମାଜରେ କେହି ଜଣେ ବ୍ୟକ୍ତି ଥିଲେ, ହୁଏତ ସେ ରାଜା କିମ୍ବା ପୁରୋହିତ କିମ୍ବା ଆଉ କେହି ହୋଇ ପାରନ୍ତି, ଯାହାଙ୍କର ନେତୃତ୍ୱ ପ୍ରତି ସର୍ବସାଧାରଣଙ୍କର ଯଥେଷ୍ଟ ସମ୍ମାନ ଥିଲା । ଆଦିମ ମାନବଗୋଷ୍ଠୀର ସାମାଜିକ ଶାସନ-ବ୍ୟବସ୍ଥାର ଭ୍ରୁଣାତ୍ମକ ଅବସ୍ଥା ଏହି ସମୟରେ ଯଥେଷ୍ଟ ବିକଶିତ ହୋଇ ପାରିଥିଲା ଭଳି ମନେହୁଏ ।

ଉପରୋକ୍ତ ଆଲୋଚନାମାନଙ୍କରୁ ଏହି ସଂସ୍କୃତି ଉପରେ ସିନ୍ଧୁ ସଂସ୍କୃତିର ବିଭିନ୍ନ ପ୍ରଭାବ ବିଷୟରେ କେତେଟା ସୂଚନା ମିଳିଥାଏ । କିନ୍ତୁ ସିନ୍ଧୁ ସଂସ୍କୃତିର ଯେଉଁ ବହୁମୁଖୀ ପ୍ରଭାବ ଅଛି, ତା' ତୁଳନାରେ ଏ ପ୍ରଭାବ କିଛି ନୁହେଁ । ସିନ୍ଧୁ ସଂସ୍କୃତିର ଅଗ୍ନି ଦେବତାଙ୍କ ପୂଜା, ବୃକ୍ଷପୂଜା, ସ୍ୱସ୍ତିକପୂଜା ପଶୁମାନଙ୍କ ଠାରେ ଦେବତ୍ୱର ଆରୋପ ଆଦି ଯେଉଁ ବିଭିନ୍ନ ଧାର୍ମିକ ଓ ଆଧ୍ୟାତ୍ମିକ ଚଳଣିଧାରାମାନ ଥିଲା, ସେଗୁଡ଼ିକର ପ୍ରଭାବ ଏହା ଉପରେ ପଡ଼ିନାହିଁ । ଅଧିକ ମଧ୍ୟ ସେହି ସଂସ୍କୃତିର ଚିତ୍ରଲିପି, ନଗରସଭ୍ୟତା ଆଦିର ପ୍ରଭାବରୁ ଏ ସଂସ୍କୃତି ମୁକ୍ତ । ଏଥିରୁ ଅନୁମିତ ହୁଏ ଯେ ଏହି ସଂସ୍କୃତି କେବଳ ଭୌଗୋଳିକ ସୀମାବଦ୍ଧତା ଦୃଷ୍ଟିରୁ ସୁଦୂର ପ୍ରସାରୀ ହୋଇ ନଥିଲା, ଏହାର ପରଂ-ପରାର ଚେର ମଧ୍ୟ ଗଭୀର ଥିଲା, ଯାହା ଫଳରେ କି ବହୁବର୍ଷ ଧରି ଏହା ନିଜସ୍ୱ ଗୌରବରେ ଉଦ୍ଭାସିତ ହୋଇ ରହିଥିଲା ଏବଂ ସିନ୍ଧୁ ସଂସ୍କୃତି ଭଳି ଏକ ଅତି ଉନ୍ନତ ସଂସ୍କୃତି ଏହା ଉପରେ ସେମିତି ବିଶେଷ କିଛି ପ୍ରଭାବ ପକାଇ ପାରି ନ ଥିଲା । ବହୁ କାଳ ଧରି ଏହି ଦୁଇ ସଂସ୍କୃତି ଯେ ସମାନ୍ତରାଳ ଭାବରେ ତିଷ୍ଠି ରହିଥିବାର ଏହି ମତଟିକୁ ଅଧିକତର ଦୃଢ଼ୀଭୂତ କରାଇଥାଏ ।

## ପରଲୋକରେ ବିଶ୍ୱାସ :

ପ୍ରାଗୈତିହାସିକ ମାନବ ଜାତିର ଅସରଳ ଜୀବନ ମଧ୍ୟରେ ବହୁ ଝଡ଼ଝଞ୍ଜା, ଆପଦ-ବିପଦର ମଧ୍ୟ ଦେଇ ଗତି କରୁଥିବାରୁ ମୃତବ୍ୟକ୍ତିଙ୍କ ଲାଗି ଏକ ଅପେକ୍ଷାକୃତ ଶାନ୍ତିମୟ ପରିବେଶରେ ସ୍ଥାୟୀ ବିଶ୍ରାମସ୍ଥଳୀ ନିର୍ମାଣ କରିବାରେ ସ୍ୱଭାବତଃ ବ୍ରତୀ ହୋଇଥିଲେ। ନିଜେ ଝାଟିମାଟି ଘରେ ରହୁଥିଲେ ମଧ୍ୟ ମୃତବ୍ୟକ୍ତିଙ୍କ ଲାଗି ପ୍ରସ୍ତରରେ ଅପେକ୍ଷାକୃତ ଦୃଢ଼ତର ବାସସ୍ଥାନଟିଏ ସେ ନିର୍ମାଣ କରୁଥିଲେ; ମୃତବ୍ୟକ୍ତିଙ୍କ ଅବଶେଷକୁ ରକ୍ଷା କରିବା ଲାଗି ତାଙ୍କୁ ବୃହତ୍ତ୍ୱ ପାତ୍ରରେ କବର ଦେଉଥିଲେ। ବାସ୍ତବିକ, ପୃଥିବୀର ପ୍ରଥମ ସହର ହେଉଛି ମୃତବ୍ୟକ୍ତିଙ୍କ କବର। ଏ ସମ୍ପର୍କରେ ଲୁଇସ୍ ମମ୍‌ଫୋର୍ଡଙ୍କ (Lewis Mumford) ନିମ୍ନଲିଖିତ ଉକ୍ତି ବିଶେଷ ଭାବରେ ପ୍ରଣିଧାନଯୋଗ୍ୟ। ସେ କହିଛନ୍ତି :

> "In the uneasy life of primitive men the dead were the first to have a permanent dwelling place. And perhaps the first form of city is the cemetry—the city of the dead. " (୯)

ଏହାର କାରଣ କ'ଣ ? ମଣିଷର ମୃତବ୍ୟକ୍ତିଙ୍କ ଲାଗି ଏତେ ଦରଦ, ଏତେ ସମ୍ମାନ କାହିଁକି ? ଏହି ଦରଦ, ଏହି ସମ୍ମାନ ଏବେ ବି ରହିଛି। ଏହା କେତେବେଳେ ମଣିଷଠାରୁ ଚାଲି ଯାଇ ନାହିଁ। ଏହା ହେଉଛି ମଣିଷର ସ୍ୱାଭାବିକ ଧର୍ମ। ଏହାକୁ କେହି ପ୍ରଶ୍ନ କରି ନାହାନ୍ତି। ମାତାର ସନ୍ତାନ ପ୍ରତି ମମତା ଯେମିତି ପ୍ରବୃତ୍ତିଗତ ଓ ସ୍ୱାଭାବିକ, ଏହି ଧର୍ମଧାରଣାଟି ମଧ୍ୟ ସେମିତି ସ୍ୱାଭାବିକ। ବାସ୍ତବିକ ମଣିଷ ସୃଷ୍ଟିର ଇତିହାସରେ ଯେତେ ଯେତେ ସ୍ୱାଭାବିକ ଧର୍ମ ଧାରଣା ମାନଙ୍କର ଅଭ୍ୟୁଦୟ ହୋଇଛି, ସେହି ସମସ୍ତଙ୍କ ମଧ୍ୟରେ ମୁଖ୍ୟ ହେଉଛି ମଣିଷର ଅମୃତତ୍ୱ ବିଷୟରେ ଧାରଣା ଏବଂ ମୃତବ୍ୟକ୍ତିଙ୍କର ପୂଜା-ଆରାଧନା। (୧୦) ହିନ୍ଦୁମାନଙ୍କର ପିତୃପୁରୁଷମାନଙ୍କୁ ଶ୍ରାଦ୍ଧ ଦେବାର ଯେଉଁ ପରମ୍ପରାର ଭୂୟୋବିକାଶ ଘଟି ଆସିଅଛି, ତାହାର ବାସ୍ତବିକ ମୂଳଭିତ୍ତି ଅଛି ଏଇଠି। ବିଭିନ୍ନ ସଂସ୍କୃତିରେ ଓ ବିଭିନ୍ନ ଧର୍ମ-ସଂପ୍ରଦାୟ ମଧ୍ୟରେ ଏହି ଚେତନାର ଭୂୟୋବିକାଶ ବିଭିନ୍ନ ପ୍ରକାର ହୋଇଥିଲେ ମଧ୍ୟ ମୌଳିକ ସ୍ତରରେ ଅଭିନ୍ନତା ରହିଛି। ମାନବଜାତିର ଇତିହାସ ଆଲୋଚନା କଲେ ଆମେ ଦେଖିବା ଯେ ପ୍ରାଥମିକ ପର୍ଯ୍ୟାୟରେ ଆଦି-ମାନବ ଯେତେବେଳେ ଗୁହାରେ ବାସ କରୁଥିଲା, ଏବଂ ଖାଦ୍ୟ ଲାଗି ଥିଲା ସତତ ଭ୍ରମଣଶୀଳ, ସେତେବେଳେ ତା' ମନରେ ଏ ଚେତନାର ଉଦୟ ହୋଇ ନଥିଲା। ବାସ୍ତବିକ ଖାଦ୍ୟ ଲାଗି ନିଶିଦିନ ପ୍ରତିକୂଳ ପରିବେଶ ମଧ୍ୟରେ ସଂଗ୍ରାମ କରୁଥିବା ବ୍ୟକ୍ତି ପକ୍ଷରେ ଏ ପ୍ରକାର

ଭୂ ଣାତ୍ମକ ଦାର୍ଶନିକ ଚିନ୍ତା ଲାଗି ଅବକାଶ ଓ ସୁଯୋଗ ବା ଥିଲା କେଉଁଠି ? ଯେତେବେଳେ ସେ ସ୍ଥାୟୀ ଭାବରେ ବସବାସ କରିବାକୁ ଲାଗିଲା, ଗୋମହିଷାଦି ପଶୁମାନଙ୍କୁ ପାଳିଲା ଏବଂ ଫସଲ ଉତ୍ପାଦନ କଲା, ସେତେବେଳେ ସେ ଅଧିକ ଉତ୍ପାଦନ ଲାଗି ଉଦ୍ୟମଶୀଳ ହେଲା ଏବଂ ଏହି ଅବସ୍ଥାରେ ସେ ପ୍ରଜନନ ଶକ୍ତି ବିଷୟରେ ସଚେତନ ହୋଇ ଉଠିଲା । ଏହି ଶକ୍ତିର ପରିପୁଷ୍ଟି ସାଧନ ଓ ପରିବର୍ଦ୍ଧନ ଲାଗି ସେ ଲୋକୋତ୍ତର ଦୈବୀ ଶକ୍ତି ହାସଲ କରିବା ପାଇଁ ତତ୍ପର ହୋଇଉଠିଲା । ଏହି ତତ୍ପରତାର ପୃଷ୍ଠଭୂମିକୁ ଭିତ୍ତି କରି ଗଢି ଉଠିଲା ତାର ମହାମାତୃଶକ୍ତିର ଆରାଧନା, ପରଲୋକ ସମ୍ପର୍କରେ ଧାରଣା ଓ ମୃତ୍ୟୁପରେ ପୁନର୍ଜନ୍ମ ଉପରେ ବିଶ୍ୱାସ । (୧୦-କ) ଶଂହିତ ସଂସ୍କୃତିର ଅଧିବାସୀମାନଙ୍କର ଠିକ୍ ଅନୁରୂପ ଧାରଣା ଆସିବା ସ୍ୱାଭାବିକ ଏବଂ ବାସ୍ତବିକ ତାହା ହିଁ ଘଟିଥିଲା ।

ପୃଥିବୀରେ ସବୁଠୁ ଅଜି ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇ ଆସିଥିବା ଶବସତ୍କାର ପଦ୍ଧତି ଅନୁଶୀଳନ କଲେ ଜଣାଯାଏ ଯେ ସ୍ଥୂଳତଃ ନିମ୍ନଲିଖିତ ତିନିଗୋଟିରୁ କୌଣସି ଗୋଟିଏ ପଦ୍ଧତିରେ ଏହା କରାଯାଇଥାଏ ।

(କ) ଶବକୁ ମାଟିତଳେ ପୋତି କବର ଦେବା ;

(ଖ) ଶବକୁ ସଂସ୍କାର କରିବା ; ଏବଂ

(ଗ) ଶବସଂସ୍କାର ପରେ ଅସ୍ଥିଅଂଶକୁ କବର ଦେବା

ପ୍ରଥମୋକ୍ତ ପଦ୍ଧତିରେ ଯେଉଁମାନେ ଶବସତ୍କାର କରିଥାନ୍ତି, ସେମାନଙ୍କର ପରଲୋକ ସଂପର୍କରେ ଧାରଣା ହେଲା, ମୃତବ୍ୟକ୍ତି ସେହି ଦେହରେ ହିଁ ପରଲୋକରେ ନୂତନ ଜୀବନ ପାଆନ୍ତି । ଲୌକିକ ଦୃଷ୍ଟିରୁ ସେ ମୃତ ହେଲେ ମଧ୍ୟ ପ୍ରକୃତରେ ଅମର । ସେଥିପାଇଁ ତାଙ୍କ କବର ମଧ୍ୟରେ ଖାଦ୍ୟ, ପାନୀୟ ଠାରୁ ଆରମ୍ଭ କରି ଅନ୍ୟାନ୍ୟ ନିତ୍ୟବ୍ୟବହାର୍ଯ୍ୟ ସାମଗ୍ରୀମାନ ରଖାଯାଇଥାଏ । ଅନ୍ୟ ପକ୍ଷରେ 'ଖ' ଓ 'ଗ' ଶ୍ରେଣୀର ପଦ୍ଧତିରେ ଯେଉଁମାନେ ଶବସତ୍କାର କରନ୍ତି, ସେମାନଙ୍କର ଧାରଣା ହେଲା, ଦେହ ଓ ଆତ୍ମା ପରସ୍ପର ଠାରୁ ପୃଥକ୍ । ମୃତ୍ୟୁ ପରେ ଦେହ ନଷ୍ଟ ହୋଇଯାଏ; କିନ୍ତୁ ଆତ୍ମା ଥାଏ ଅମର । ଏହି ଦୁଇ ପ୍ରକାର ପରଲୋକ-ସଂପର୍କୀୟ ଧାରଣା ଯୁଗ ଯୁଗ ଧରି ମାନବ ସମାଜକୁ ଆଚ୍ଛନ୍ନ କରି ଅଛି । ଭାରତ-ଭୂମିରେ ବିଶେଷ କରି ପରବର୍ତ୍ତୀ କାଳରେ ସଭ୍ୟତା ଓ ସଂସ୍କୃତିର ଯେତେବେଳେ ଭୂୟୋବିକାଶ ଘଟିଛି, ସେତେବେଳେ ଶେଷୋକ୍ତ ଧାରଣାଟି ଭାରତୀୟ ପାରଲୌକିକ ଧାରଣାକୁ ବହୁଳ ଭାବରେ ପ୍ରଭାବିତ

କରିଛି । ବାସ୍ତବିକ ଏହି ଆତ୍ମାର ଅସ୍ତିତ୍ୱ, ଏହାର ଉପଲବ୍ଧି, ଏହାର ମନନ ଓ ଚିନ୍ତନକୁ ନେଇ ଏକ ସୁବିସ୍ତୃତ ଭାରତୀୟ ଦର୍ଶନର ଦୃଢ଼ ଭିତ୍ତି-ଭୂମି ଗଢ଼ି ଉଠିଛି । ଏହି 'ଆତ୍ମା' ବିଷୟରେ ଜାଣିବା ପାଇଁ ମୁନି, ଋଷି ଓ ଦାର୍ଶନିକମାନଙ୍କ ଯୁଗ ଯୁଗ ବିତି ଯାଇଛି । ଏହାକୁ କେନ୍ଦ୍ର କରି ବହୁ ପାରସ୍ପରିକ ବିବଦମାନ ଚିନ୍ତାଧାରାର ଅଭ୍ୟୁଦୟ ହୋଇଛି ଏବଂ ବହୁ ବିବଦମାନ ଧର୍ମ-ଗୋଷ୍ଠୀ ଗଢ଼ି ଉଠିଛନ୍ତି । ଏହି ଚିନ୍ତାଧାରାର ଭିତ୍ତିଭୂମି ଯେ କେତେ ସହସ୍ର ବର୍ଷ ତଳେ ଭାରତୀୟ ପ୍ରାଗୈତିହାସିକ ମାନବର ଚିତ୍ତ-ତଳକୁ ସ୍ପର୍ଶ ଓ ଆଲୋଡ଼ିତ କରିଥିଲା, ତାହା ଭାବିଲେ ବାସ୍ତବିକ ବିସ୍ମିତ ହେବାକୁ ପଡ଼ିଥାଏ ।

ବିଭିନ୍ନ ସ୍ଥାନରୁ ମିଳିଥିବା ଧ୍ୱଂସାବଶେଷଗୁଡ଼ିକୁ ଅନୁଶୀଳନ କଲେ ଜଣାଯାଏ ଯେ ଜୋର୍ୱେ ସଂସ୍କୃତିର ଅଧିବାସୀମାନେ (କ) ପଦ୍ଧତିରେ ସାଧାରଣତଃ ଶବଦଫନ କରୁଥିଲେ । ଏହାର ଅର୍ଥ ହେଲା, ସେମାନେ ମୃତବ୍ୟକ୍ତିମାନଙ୍କୁ କବର ଦେଉଥିଲେ । ଅବଶ୍ୟ ଗୋଟିଏ ସ୍ଥାନରେ ଏହାର ବ୍ୟତିକ୍ରମ ଘଟିଛି । ତାହା ହେଉଛି ଗୁଜୁରାଟର ଅମ୍ରେଲି ଜିଲ୍ଲାର ସଦର ମହକୁମା ଅମ୍ରେଲି ଠାରେ । ଏଠାରେ ଉଭୟ କବର ଦେବା ଓ ଶବସଂସ୍କାର କରିବା ପଦ୍ଧତି ଅନୁସୃତ । କିନ୍ତୁ ଏହି ଶବସଂସ୍କାର ଧ୍ୱଂସାବଶେଷମାନ କେବଳ ଉପରସ୍ତରରେ ମିଳିଛି, ଯାହା କି ଲୌହପ୍ରସ୍ତରଯୁଗୀୟ ସଂସ୍କୃତିର ଅବଶେଷ । ସେହି ସମୟରେ ଭାରତର ଗୃହଆଡ଼େ ଅର୍ଯ୍ୟମାନଙ୍କର ଶବ-ସଂସ୍କାର ପ୍ରଥା ପ୍ରଚଳିତ ହୋଇଥିଲା । ଏଣୁ ଏହାର ପ୍ରଭାବ ଅମ୍ରେଲିଠାରେ ପଡ଼ିଥିବା ସ୍ୱାଭାବିକ । ଅତଏବ ତାମ୍ରପ୍ରସ୍ତରଯୁଗୀୟ ଶବଦଫନର ପଦ୍ଧତିକୁ ବିଚାରକୁ ନେଲେ ଜୋର୍ୱେ ସମୟରେ ଅମ୍ରେଲିଠାରେ ମଧ୍ୟ ଶବକୁ କବର ଦେବା ପଦ୍ଧତି ଅନୁସୃତ ହେଉ-ଥିଲା ବୋଲି ନିର୍ବିବାଦରେ କୁହାଯାଇପାରିବ । ମୋଟ ଉପରେ, ତାମ୍ରପ୍ରସ୍ତର ଯୁଗରେ ଏହି ସଂସ୍କୃତି ସହିତ ସମ୍ପୃକ୍ତ ସକଳ ସ୍ଥାନ ମାନଙ୍କରେ କବର ଦେବା ପଦ୍ଧତି ପ୍ରଚଳିତ ଥିଲା କହିଲେ ଠିକ୍ ହେବ । ଏହି କବର ଦେବା ପଦ୍ଧତି ମଧ୍ୟ ସବୁ ସ୍ଥାନରେ ଥିଲା ସମାନ । ହରପ୍ପୀୟ ସଂସ୍କୃତିରେ ମଧ୍ୟ ଉତ୍ତର-ଦକ୍ଷିଣ କରି ଶବକୁ ଶାୟିତ କରାଇ ତାହାର ମସ୍ତକକୁ ଉତ୍ତର ଦିଗକୁ ରଖିବାର ପଦ୍ଧତି ପ୍ରାୟ ପ୍ରତି କବରରେ ଅନୁସୃତ । ଉତ୍ତର ଦିଗ ଦେବଭୂମି ହୋଇଥିବାରୁ ଏ ପ୍ରକାର କବର ଦେବାର ତାତ୍ପର୍ଯ୍ୟ ହେଉଛି ମୃତବ୍ୟକ୍ତି ସ୍ୱର୍ଗକୁ ଗଲେ ବୋଲି କଳ୍ପନା କରିବା । ଗବେଷକ ଜେମ୍ସଙ୍କ ମତରେ ମୃତବ୍ୟକ୍ତିଙ୍କ ଆତ୍ମା ଯେଉଁ ଦିଗକୁ ଗତି କରିବାର କଳ୍ପନା କରାଯାଇ-ଥାଏ ସେହି ଦିଗକୁ ହିଁ ଶବଟିକୁ ମୁଣ୍ଡ କରି ଶୁଆଇ ଦିଆଯାଇଥାଏ । ସେ ଯଥାର୍ଥରେ କହିଛନ୍ତି :

"The orientation everywhere denotes the route which the dead must take on leaving the body, whether it be towards the final destination of the soul or away from its earthly abode and the dwelling of the living." (୧୧)

ଉର୍ଦ୍ଧ୍ୱମୁଖ କବର ଦେବା ପଦ୍ଧତିର ପୃଷ୍ଠଭୂମିରେ ଯେ ଏକ ଉର୍ଦ୍ଧ୍ୱମୁଖ ପାରଲୌକିକ ଚିନ୍ତାଧାରା କାର୍ଯ୍ୟ କରିଥାଏ, ଏ ବିଷୟରେ ଗବେଷକ ଶାସ୍ତ୍ରୀ ଓ ସିଂହ ମଧ୍ୟ ସମଧିକ ସୁସ୍ପଷ୍ଟମତ ପ୍ରକାଶ କରିଛନ୍ତି । (୧୨) ଅନ୍ୟ ବହୁ ଗବେଷକ ମଧ୍ୟ ଏଥିରେ ସହମତ । ଏହି ମତ ଶାଂସିତ ସଂସ୍କୃତିର ପାରଲୌକିକ ଧାରଣା ପ୍ରତି ମଧ୍ୟ ସମଧିକ ପ୍ରଯୁଜ୍ୟ । ଏଠାରେ ମଧ୍ୟ ଶବଗୁଡ଼ିକର ମସ୍ତକ ଉତ୍ତର ଦିଗକୁ ରଖି କବର ଦିଆଯାଇଛି । ଅତଏବ, ଏହି ଲୋକମାନେ ମଧ୍ୟ ଭାବୁଥିଲେ ଯେ ଏହା କରିବା ଦ୍ୱାରା ମୃତବ୍ୟକ୍ତିଙ୍କର ସ୍ୱର୍ଗପ୍ରାପ୍ତି ହେବ। କଥାଟି ସୂଚିତ ହେବ ।

ସିନ୍ଧୁ ସଂସ୍କୃତିର କବରମାନଙ୍କ ଭଳି ଏହି ସଂସ୍କୃତିର କବରମାନଙ୍କ ମଧ୍ୟରୁ ଅନ୍ତ୍ୟେଷ୍ଟିକ୍ରିୟାର୍ଥ ବସ୍ତୁମାନ ମଧ୍ୟ ମିଳିଛି । ଟେକଲ୍‌ଗୁଣ୍ଡ୍ (ମହାରାଷ୍ଟ୍ର) କବର ଗୁଡ଼ିକରୁ ଧୂସର ରଙ୍ଗର ଓ ଚର୍ଚ୍ଚିତ କଳା ଓ ନାଲି ରଙ୍ଗର ମୃଣ୍ମୟ ପାତ୍ରମାନ ମିଳିଛି । ଏହାଛଡ଼ା ସେଠାରୁ ଗୋଡ଼ହଲା ଓ ଅନ୍ୟାନ୍ୟ ବ୍ୟକ୍ତିଗତ ଅଳଙ୍କାରମାନ ମଧ୍ୟ ମିଳିଛି । ଦାଇମାବାଦସ୍ଥ (ଅହମଦାବାଦ୍ ଜିଲ୍ଲା) ଘର ଚଟାଣ ତଳୁ ବାହାରିଥିବା କବରମାନଙ୍କରୁ ସେହିପରି ମୃଣ୍ମୟ ପାତ୍ରମାନ ମଧ୍ୟ ମିଳିଛି । ଅବଶ୍ୟ ଏଗୁଡ଼ିକର ସଂଖ୍ୟା ଖୁବ୍ କମ । ପ୍ରତିଟି କବରରେ ଦୁଇଟି କି ତିନୋଟି ମାତ୍ର ପାତ୍ର ବିଦ୍ୟମାନ । ଚନ୍ଦୋଲି ଠାରେ (ମହାରାଷ୍ଟ୍ର) ତମ୍ବାର ହାର ଓ ବଣ୍ଠି ମିଳିଛି । ଗୋଟିଏ ଶିଶୁର ବାମ ପାଦରେ ପିନ୍ଧାହୋଇଥିବା ବଳାଟିଏ ମଧ୍ୟ ମିଳିଛି । ଗୋଟିଏ ହାର ମଝିରେ ମୂଲ୍ୟବାନ ଲାଲ ପଥରର ପଦକଟିଏ ଝୁଲୁଛି । ପାଣ୍ଡୁ ରାଜାର ଡିବିରେ (ବର୍ଦ୍ଧମାନ ଜିଲ୍ଲା) ମଧ୍ୟ ସେହିପରି ତମ୍ବାର ବଣ୍ଠିମାଳ ଓ ମୃଣ୍ମୟ ପାତ୍ରମାନ ମିଳିଛି । ଅନ୍ୟାନ୍ୟ ସବୁ ସ୍ଥାନ ମାନଙ୍କରେ ମଧ୍ୟ ଅନୁରୂପ ଅନ୍ତ୍ୟେଷ୍ଟିକ୍ରିୟାର୍ଥୀ ପଦାର୍ଥମାନ ପ୍ରାପ୍ତ ମିଳିଛି । ଏଥିରୁ ଅନୁମିତ ହୁଏ ଯେ ଏହି ପଦାର୍ଥମାନ ଥିଲା ମୃତ-ବ୍ୟକ୍ତିଙ୍କ ପରଲୋକରେ ବ୍ୟବହାର ଲାଗି ଉଦ୍ଦିଷ୍ଟ। ଖାଲି ସେତିକି ନୁହେଁ, ପରଲୋକଙ୍କର ମୃତବ୍ୟକ୍ତିଙ୍କ ପୂଜାବିଧିର ସୁବିଧା ଲାଗି ମୃଣ୍ମୟ ମାତୃ ଦେବୀଙ୍କ ମୂର୍ତ୍ତିମାନଙ୍କୁ ମଧ୍ୟ କବର ମଧ୍ୟରେ ସ୍ଥାପିତ କରାଯାଇଥିଲା । ନେଭାସାସ୍ଥିତ (ମହାରାଷ୍ଟ୍ର) କବର ମଧ୍ୟରୁ ଦୁଇଟି ମୃଣ୍ମୟ ମାତୃମୂର୍ତ୍ତି ମିଳିଛି । ଇନାମ ଗାଁ ସ୍ଥିତ (ପୁନା ଜିଲ୍ଲା) କବର ମଧ୍ୟରୁ ବି ସେହିପରି ଗୋଟିଏ ମୃଣ୍ମୟ ମାତୃଦେବୀଙ୍କ ମୂର୍ତ୍ତି ମିଳିଛି ।

ପ୍ରତ୍ନତତ୍ତ୍ୱବିତ ଆଲଚନ ଦମ୍ପତିଙ୍କ ମତରେ ଏହି ମୂର୍ତ୍ତି ହେଉଛି ମାତୃଦେବୀଙ୍କର, ଯାହାଙ୍କର ଆରାଧନା ଶାଂସିତ ସଂସ୍କୃତିର ଅଧିବାସୀମାନଙ୍କ ମଧ୍ୟରେ ଖୁବ୍ ଲୋକପ୍ରିୟ ଥିଲା । (୧୬-କ) ଏହି ଦେହ ଧରି ମୃତବ୍ୟକ୍ତିମାନେ କେବଳ ତ ସ୍ୱର୍ଗକୁ ଯାଉ ନଥିଲେ, ନରଲୋକରେ ସେମାନେ ଯାହା ଖାଉଥିଲେ ଏବଂ ଯେଉଁ ଜିନଷମାନ ବ୍ୟବହାର କରୁଥିଲେ, ସ୍ୱର୍ଗଲୋକରେ ମଧ୍ୟ ତାହାର ସଦୁପଯୋଗ କରୁଥିଲେ । ଶାଂସିତ ସଂସ୍କୃତିର ଅଧିବାସୀ-ମାନେ ଏହି ଧାରଣାର ବଶବର୍ତ୍ତୀ ହୋଇ ଏଭଳି ଭାବରେ କବର ଦେବାର ପଦ୍ଧତି ଅନୁସରଣ କରୁଥିଲେ । ଇହଲୋକ ଓ ପରଲୋକ ଏହି ଦୁଇ ଲୋକ ବିଷୟରେ ସେମାନଙ୍କରର ଏବଂ ଭ୍ରୁଣ ମୂଳକ ଚିନ୍ତାଧାରା ଥିଲା ।

ନର ଦେହ ଧରି ଯେ ସ୍ୱର୍ଗକୁ ଯାଇ ହେବ, ଏହା ଥିଲା ଏକ ତାମ୍ର ପ୍ରସ୍ତରଯୁଗୀୟ ଅଦ୍ଭୁତ ଓ ଅଭୂତ ଧାରଣା । ଏହାର ପ୍ରଭାବ ପରବର୍ତ୍ତୀ ଭାରତୀୟ ପାରଲୌକିକ ଧାରଣା ଉପରେ ପଡ଼ିଥିବା ଭଳି ମନେହୁଏ । ନର ଦେହ ଧରି ସ୍ୱର୍ଗକୁ ଯିବା ସମ୍ପର୍କରେ ଅନେକ ଗଳ୍ପ ଆମେ ପୁରାଣ ଓ ବୌଦ୍ଧ ଜାତକଗଳ୍ପ ମାନଙ୍କରେ ପାଇଥାଉଁ । ମହାଭାରତ ଅନୁସାରେ ରାଜା ମାନ୍ଧାତା ନର-ଦେହ ଧରି ସ୍ୱର୍ଗକୁ ଯାଇଥିଲେ । ରାଜା ତ୍ରିଶଙ୍କୁ ମଧ୍ୟ ନର-ଦେହ ଧରି ସ୍ୱର୍ଗକୁ ଯାଇଥିଲେ; କିନ୍ତୁ ନାନା ଅସୁବିଧାବଶତଃ ସେଠାରେ ତାଙ୍କୁ ସ୍ଥାନ ନ ମିଳିବାରୁ ବିଶ୍ୱାମିତ୍ରଙ୍କ ନିର୍ମିତ ସ୍ୱତନ୍ତ୍ର ସ୍ୱର୍ଗରେ ସେ ରହିବାକୁ ଲାଗିଲେ । ଯୁଧିଷ୍ଠିର ମଧ୍ୟ ନର-ଦେହ ଧରି ସ୍ୱର୍ଗକୁ ଯାଇଥିଲେ । ବୌଦ୍ଧ ସାହିତ୍ୟାନ୍ତର୍ଗତ 'ମାନ୍ଧାତା-ଜାତକ' ଗଳ୍ପ ଅନୁଯାୟୀ ରାଜା ମାନ୍ଧାତା ମଧ୍ୟ ନର-ଦେହ ଧରି ସ୍ୱର୍ଗକୁ ଯାଇଥିଲେ । ଅତଏବ ନର ଦେହ ଧରି ସ୍ୱର୍ଗକୁ ଯିବାର ଏହି ଯେଉଁ କଳ୍ପନା, ଏହା ଏକ ଅତି ପୁରାତନ ପରଂପରା ଉପରେ ଆଧାରିତ, ଯାହାକୁ କି ପ୍ରାଗୈତିହାସିକ ଯୁଗ ଯାଏ ନେଇ ଯାଇହେବ ।

ଶାଂସିତ ସଂସ୍କୃତିର କବର ଦେବା ପଦ୍ଧତିରେ ଆଉ ଏକ ବିଶେଷତ୍ୱ ଲକ୍ଷ୍ୟ କରିବାର କଥା । ତାହା ମଧ୍ୟ ମୃତବ୍ୟକ୍ତିଙ୍କର ସ୍ୱର୍ଗଗତିର ସଙ୍କେତ ଦିଏ । ଦକ୍ଷିଣ ଭାରତର ନେଭାସା, ଇନାମଗାଁ, ଦାଇମାବାଦ ଆଦି ସ୍ଥାନମାନଙ୍କ ଠାରୁ ଆରମ୍ଭ କରି ପୂର୍ବ ଭାରତର ପାଣ୍ଡୁରାଜାର ଢିବି (ପଶ୍ଚିମ ବଙ୍ଗଳାର ବର୍ଦ୍ଧମାନ ଜିଲ୍ଲା) ପର୍ଯ୍ୟନ୍ତ ସବୁଠି କବରଗୁଡ଼ିକର ଖନନ ଫଳରେ ଆଣ୍ଠୁରୁ ତଳକୁ ପାଦମାନ ନରକଙ୍କାଳ ଗୁଡ଼ିକରେ ନଥିବାର ଜଣା-ପଡେ । ଗୋଟିଏ ଦୁଇଟି ସ୍ଥଳରେ ଏପରି ଘଟିଥିଲେ ହୁଏତ କୁହାଯାଇ ପାରନ୍ତା ଯେ କୌଣସି ନିର୍ଦ୍ଦିଷ୍ଟ କାରଣରୁ ମୃତବ୍ୟକ୍ତିଙ୍କର ପାଦ ଦୁଇଟି କଟା ଯାଇଛି; ହୁଏତ ଏହା ରୋଗଜନିତ ହୋଇପାରେ କିମ୍ବା ଆକସ୍ମିକ ଘଟଣାଜନିତ ହୋଇପାରେ । କିନ୍ତୁ ସବୁଠି

ଶତାଧିକ ମାଇଲ୍ ବ୍ୟବଧାନରେ ଏହି ଏକ ଧରଣର କବର୍ ଦେବା ପଦ୍ଧତି ବାସ୍ତବିକ ବିସ୍ମୟ ସୃଷ୍ଟି କରୁଛି । ଏହାର ନିଶ୍ଚିତ ଭାବରେ ଗୋଟିଏ ଅର୍ଥ ଅଛି ଏବଂ ଏହା ନିଶ୍ଚୟ ପରଲୋକଗତ ଚିନ୍ତାଧାରା ସହିତ ସମ୍ବନ୍ଧିତ । ସ୍ୱର୍ଗଭୂମିରେ ଯେଉଁମାନେ ରହନ୍ତି ସେମାନଙ୍କର ପାଦ ତଳେ ଲାଗେ ନାହିଁ ବୋଲି ଏହି ଲୋକମାନଙ୍କର ବିଶ୍ୱାସ ଥିଲା । ଏବେ ବି ତ ଆମ୍ଭମାନଙ୍କର ବିଶ୍ୱାସ ଯେ ଦେବତାମାନଙ୍କର ପାଦ ଭୂମି ଉପରେ ଲାଗେ ନାହିଁ; କାରଣ ଭୂମିଠାରୁ ମୋହ ସେମାନଙ୍କର ତୁଟି ଯାଇଛି । ଏହା ହିଁ ହେଉଛି ସେମାନଙ୍କ ଦେବତ୍ୱର ପରାକାଷ୍ଠା । ଏ ସଂପର୍କରେ ଆମ ସାହିତ୍ୟ ଓ ପୁରାଣମାନଙ୍କରେ ଭୂରିଭୂରି ଉଲ୍ଲେଖମାନ ରହିଛି । ମହାଭାରତର ବର୍ଣ୍ଣନା ଅନୁଯାୟୀ ଦମୟନ୍ତୀଙ୍କ ସ୍ୱୟମ୍ବର ଲାଗି ବହୁ ଦେବତା ନଳଙ୍କ ରୂପ ଧରି ଆସିଥିଲେ । ଦମୟନ୍ତୀ ସେମାନଙ୍କର ପାଦ ତଳେ ଲାଗି ନଥିବାରୁ ସେମାନେ ମାନବ ନୁହନ୍ତି, ଦେବତା ବୋଲି ଚିହ୍ନି ପାରିଲେ ଏବଂ ପ୍ରକୃତ ନଳଙ୍କ ଗଳାରେ ବରଣ-ମାଳା ଦେଇଥିଲେ । ଶ୍ରୀହର୍ଷଙ୍କ ନୈଷଧ ଚରିତରେ ଏହି ବିଷୟଟି ଖୁବ୍ ରମଣୀୟ ଭାବେ ବର୍ଣ୍ଣିତ । ବୌଦ୍ଧଜାତକ ଲେଖମାନଙ୍କରେ ଯେଉଁଠି ଶକ୍ର, (ଇନ୍ଦ୍ର) ବା ଅନ୍ୟ ଦେବତାମାନେ ପୃଥିବୀକୁ ସାମୟିକ ଆସିଛନ୍ତି ବୋଲି କୁହାଯାଇଛି, ସେଠାରେ ସେମାନଙ୍କର ପାଦ ଭୂମିକୁ ସ୍ପର୍ଶ କରି ନାହିଁ । ମଣିଷ ଗୃଳାକ ବେଳେ ତା'ର ପାଦ ଭୂମିଲଗ୍ନ ଥାଏ । ପାଦ ହିଁ ମଣିଷକୁ ଭୂମି ସହିତ ବାନ୍ଧି ରଖି-ଥାଏ । ଏହି ଭୂମିର ବନ୍ଧନକୁ ତୁଟାଇ ସ୍ୱର୍ଗକୁ ଯିବାକୁ ହେଲେ ମଣିଷକୁ ତେଣୁ ପାଦହୀନ ହେବାକୁ ହେବ । ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ଶଂସିତ ସଂସ୍କୃତିର ଲୋକମାନେ ମୃତବ୍ୟକ୍ତିମାନଙ୍କର ପାଦଗୁଡ଼ିକୁ କାଟି ଦେବା ପରେ ସେମାନଙ୍କୁ କବର ଦେଉଥିବାର ମନେହୁଏ । ଗୋଟିଏ ବୈଦିକ ଶବସତ୍କାର କାର୍ଯ୍ୟବିଧିରେ କହୁଛି । ପ୍ରଭାବ ଏହା ଉପରେ ପଡ଼ିଥିବା ଭଳି ମନେହୁଏ । ଏହା ହେଉଛି ଅଥର୍ବବେଦ ବର୍ଣ୍ଣିତ ( ୫ । ୨୧ । ୧୨ ) ଶବକୁ କବର ଦେବା ବିଧିର ଏକ ବର୍ଣ୍ଣନା । ଏଠାରେ ଶବର ଗୋଡ଼କୁ ବନ୍ଧନ କରି ନିଆ ଯିବା ପାଇଁ କୁହାଯାଇଛି । ଏହାର ଉଦ୍ଦେଶ୍ୟ ହେଉଛି ଗୋଡ଼ ବନ୍ଧା ହୋଇଗଲେ ମୃତ ବ୍ୟକ୍ତିର ଆତ୍ମା ସ୍ୱର୍ଗରୁ ଆଉ ମର୍ତ୍ତ୍ୟକୁ ଫେରିଆସି ପାରିବ ନାହିଁ । ପୁନର୍ଜନ୍ମ ପ୍ରକ୍ରିୟାକୁ ପ୍ରତିହତ କରିବା ଲାଗି ଏ ଭଳି କଳ୍ପନା କରାଯାଇଛି । ମାଟିର ମମତାକୁ ଛାଡ଼ି ଦେଲେ ଯାଇ ସ୍ୱର୍ଗପ୍ରାପ୍ତି ହେବା ସମ୍ଭବ, ଏ ଧାରଣା ହୁଏତ ଏହି ସଂସ୍କୃତିର ଅଧିବାସୀମାନଙ୍କର ଥିଲା । ଅତଏବ 'ମାୟା' ସମ୍ପର୍କରେ ଏକ ଭ୍ରୁଣାତ୍ମକ ଚିନ୍ତାଧାରା ଏମାନଙ୍କ ଠାରେ ଥିବାର ମନେ ହୁଏ । ଅବଶ୍ୟ ଭାରତୀୟ ଦାର୍ଶନିକ ଓ ଆଧ୍ୟାତ୍ମିକ କ୍ଷେତ୍ରରେ ପରବର୍ତ୍ତୀ କାଳରେ 'ମାୟା'ର ଯେଉଁଭଳି ଭାବରେ ଭୂୟୋବିକାଶ ଘଟିଛି ତା' ସହିତ ଏହି ଚିନ୍ତାଧାରା ଆଦୌ ତୁଳନୀୟ ନୁହେଁ । କିନ୍ତୁ ପ୍ରାଗୈତିହାସିକ କାଳରେ ଏହି ଲୋକମାନଙ୍କ ମଧ୍ୟରେ ମାୟା - ସଂପର୍କରେ ଯେଉଁ ଭ୍ରୁଣାତ୍ମକ ଚିନ୍ତାଧାରାଟି ଥିଲା ତାହା ସମକାଳୀନ ଅନ୍ୟାନ୍ୟ ସଂସ୍କୃତି ସହିତ ତୁଳନା

କଲେ ନିଶ୍ଚିତ ଭାବରେ ପୁନରୁତ୍ଥାନ ନୁହେଁ ବୋଲି ବୁଝା ପଡ଼ିବ । ଏହି ହେଲା ଏମାନଙ୍କର ସ୍ଥୂଳତଃ ପରଲୋକ ବିଷୟରେ ଧାରଣା ଓ ବିଶ୍ୱାସ ।

## ଶବସତ୍କାର ପଦ୍ଧତି :

ଏମାନଙ୍କର ଶବ-ସତ୍କାର ଲାଗି ଏକ ନିର୍ଦ୍ଦିଷ୍ଟ ପଦ୍ଧତି ଥିଲା । ଏହା 'ସିନ୍ଧୁ-ସଂସ୍କୃତି' ଓ 'ବୃହତ୍ତ ପ୍ରସ୍ତରଯୁଗୀୟ ସଂସ୍କୃତି'ର ଅଧିବାସୀମାନଙ୍କ ଦ୍ୱାରା ଅନୁସୃତ ପଦ୍ଧତି ଠାରୁ ଥିଲା ଭିନ୍ନ । ପୂର୍ବରୁ 'ପରଲୋକରେ ବିଶ୍ୱାସ' ଅନୁକ୍ରମରେ ଏହି ଶବସତ୍କାର ପଦ୍ଧତି ବିଷୟରେ କିଛିଟା ଆଲୋଚନା କରାଯାଇଛି । ତାହା ଦୋହରାଇବାର ଆବଶ୍ୟକତା ନାହିଁ । ସ୍ଥୂଳତଃ ମୃତବ୍ୟକ୍ତିଙ୍କୁ ଖାତ ଖୋଳି ଏକ ନିର୍ଦ୍ଦିଷ୍ଟ ଉପାୟରେ କବର ଦେବା ଥିଲା ଏମାନଙ୍କର ଶବସତ୍କାର ପଦ୍ଧତି । କଦାଚିତ୍ ଶବକୁ ସଂସ୍କାର କରିବା ପରେ ତାହାର ଅସ୍ଥ୍ୟଂଶକୁ ପାତ୍ର ମଧ୍ୟରେ ରଖାଯାଇ ପାତ୍ରଟିକୁ କବର ଦିଆଯାଉଥିଲା । ଏହା ଅବଶ୍ୟ ଘଟିଥିଲା ଏହି ସଂସ୍କୃତିର ଶେଷ ପର୍ଯ୍ୟାୟରେ ଯେତେବେଳେ କି ଆର୍ଯ୍ୟମାନଙ୍କର ଶବ ସତ୍କାର ପଦ୍ଧତିର ବହୁଳ ପ୍ରସାର ଫଳରେ ଏହାର ପ୍ରଭାବ ସ୍ୱୀକାର କରାଯାଇ ଅନୁଭୂତ ହୋଇ ପାରିଥିଲା । କିନ୍ତୁ ଶିଶୁମାନଙ୍କୁ ସର୍ବଦା ପାତ୍ର ମଧ୍ୟରେ ହିଁ କବର ଦିଆ ଯାଉଥିଲା । ନେଭାସାରେ ( ମହାରାଷ୍ଟ୍ର ) ଅବଶ୍ୟ ଚାରି ପ୍ରକାର ପଦ୍ଧତିରେ ଶିଶୁମାନଙ୍କ ଲାଗି ପାତ୍ର କବରର ବ୍ୟବସ୍ଥା ହୋଇଥିବାର ପ୍ରମାଣ ମିଳେ । ଗୋଟିଏ ପ୍ରକାର ପଦ୍ଧତିରେ ମୃଣ୍ମୟ ପାତ୍ରଟିରେ ଶିଶୁର ଶବକୁ ରଖି ତା'ଉପରେ ଥାଳିଟିଏ ଘୋଡ଼ାଇ ଦିଆଯାଇଛି । ଦ୍ୱିତୀୟ ପଦ୍ଧତିରେ ଦୁଇଟି ପାତ୍ରକୁ ମୁହାଁମୁହିଁ ଲମ୍ବଭାବରେ ଶୁଆଇ ଦେଇ ତା' ଭିତରେ ଶିଶୁର ଶବଟିକୁ ରଖାଯାଇ କବର ଦିଆଯାଇଛି । ଅପେକ୍ଷାକୃତ ବେଶି ବୟସର ଶିଶୁ ଲାଗି ଏଭଳି ବ୍ୟବସ୍ଥା କରାଯାଇଛି । ତୃତୀୟ ପଦ୍ଧତିରେ ଦୁଇଟି ପାତ୍ରକୁ ମୁହାଁମୁହିଁ କରି ଗୋଟିକ ଉପରେ ଆରଟିକୁ ରଖାଯାଇଛି । ଚତୁର୍ଥ ପଦ୍ଧତିରେ ଦୁଇଟି ପାତ୍ରକୁ ମୁହାଁମୁହିଁ କରି ରଖାଯାଇ ତା' ମଧ୍ୟରେ ଶିଶୁଟିକୁ ଶୁଆଇ ଦିଆଯାଇଛି । ଦୁଇ ପାତ୍ରର ଭଙ୍ଗା ତଳ ଅଂଶକୁ ଘୋଡ଼ାଇ ରଖିବା ପାଇଁ ତୃତୀୟ ପାତ୍ରଟିଏ ରଖା-ଯାଇଛି ।

ନେଭାସାର ଗୋଟିଏ କବରରୁ ଅନ୍ୟାନ୍ୟ ଜିନିଷମାନଙ୍କ ମଧ୍ୟରେ ସୋହନାର ମାଳଟିଏ ମିଳିଛି ଯାହା କି ସୂତାରେ ଗୁନ୍ଥା ହୋଇଛି । ଏଥିରୁ ଜଣାଯାଉଛି ଯେ ଖ୍ରୀଃ ପୂଃ ୨୦୦୦ ଶତାବ୍ଦୀରେ ମଧ୍ୟ ମହାରାଷ୍ଟ୍ରରେ ଏହି ଲୋକମାନେ କପାଚାଷ କରୁଥିଲେ । ମହାରାଷ୍ଟ୍ରର କୃଷ୍ଣକାର୍ପାସ ମୃତ୍ତିକା ନିଶ୍ଚିତ ଭାବରେ ଏଥିପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି କରିଥିଲା । (୧୩) ବାସ୍ତବିକ ଏବେ ମଧ୍ୟ ମହାରାଷ୍ଟ୍ର କପାଚାଷ ଲାଗି ପ୍ରସିଦ୍ଧ । ଏହି

ପରଂପରା ଯେ ପ୍ରାୟ ୪୦୦୦ ବର୍ଷ ତଳର, ଏକଥା ଭାବିଲେ ଯୁଗପତ୍ ବିସ୍ମୟ ଓ କୌତୂହଳ ଜାତ ହୁଏ ।

ପୂର୍ବରୁ ଲୁହାଯାଇଛି, ଜଫର ଟେକଓ୍ୱାଡା ବ୍ୟତୀତ ଅନ୍ୟ ସବୁଠାରେ ମୃତବ୍ୟକ୍ତି-ମାନଙ୍କୁ ଗୃହାଭ୍ୟନ୍ତରରେ କବର ଦିଆ ଯାଉଥିଲା । ଏହା କରିବା ପଛରେ ଦୁଇଟି ଚିନ୍ତାଧାରା ନିହିତ । ପିତୃପୁରୁଷମାନେ ନମସ୍ୟ; ଏଣୁ ସେମାନଙ୍କୁ ଘରେ ରଖି ପୂଜା କରିବାକୁ ହେବ ଏବଂ ସମ୍ମାନ ଦେବାକୁ ହେବ । ଏହା ଆମ୍ଭେମାନେ ବର୍ତ୍ତମାନ ଘରେ ବିଭିନ୍ନ ପ୍ରକାର ଦେବଦେବୀ ରଖି ପୂଜା କରୁଥିବା ପ୍ରଥା ସହିତ ତୁଳନୀୟ । ଦ୍ୱିତୀୟତଃ ପିତୃପୁରୁଷମାନଙ୍କ ସହିତ ଯେଉଁ ନିବିଡ଼ ରକ୍ତଗତ ସମ୍ପର୍କ ରହିଛି, ତାହାର ଚିରନ୍ତନତା ସ୍ୱୀକାର କରି ତଦନ୍ତନ ଲାଗି ସେମାନଙ୍କ ସହିତ ମିଳନ ହେବା ଲାଗି ଏକ ଉପାୟ ଉଦ୍ଭାବନ କରିବାକୁ ହେବ । ପରବର୍ତ୍ତୀ କାଳରେ ଆମ ଦେଶରେ ଯେଉଁ ଶ୍ରାଦ୍ଧର ଅନୁଷ୍ଠାନଟି ମୁଣ୍ଡ ଟେକି ଉଠିଛି ଏବଂ ଯାହା କି ହିନ୍ଦୁମାନଙ୍କ ମଧ୍ୟରେ ବର୍ତ୍ତମାନ ମଧ୍ୟ ପ୍ରଚଳିତ ଅଛି, ତାହା ପଛରେ ମଧ୍ୟ ଏହି ଦୁଇଟି ଦୃଷ୍ଟିଭଙ୍ଗୀ ବିଦ୍ୟମାନ । ବାସ୍ତବିକ ହିନ୍ଦୁମାନଙ୍କର ଏହି ଶ୍ରାଦ୍ଧାନୁଷ୍ଠାନ ମାଧ୍ୟମରେ ପିତୃପୁରୁଷମାନଙ୍କ ସହିତ ଚିରନ୍ତନ ସମ୍ପର୍କକୁ ସ୍ୱୀକାର କରି ସେମାନଙ୍କୁ ସମ୍ମାନ ପ୍ରଦର୍ଶନ କରିବାର ଯେଉଁ ପ୍ରଥାଟି ବର୍ତ୍ତମାନ ଚାଲୁଛି, ତାହା ହିଁ ଏହି ଆର୍ଯ୍ୟେତର ସଂସ୍କୃତି ଦ୍ୱାରା ପ୍ରଭାବିତ ବୋଲି ସୁନୀତିକୁମାର ଚାଟାର୍ଜୀଙ୍କ ଭଳି ପ୍ରାଚ୍ୟତତ୍ତ୍ୱବିତ୍ ଯଥାର୍ଥରେ ମତ ଦେଇଛନ୍ତି । (୧୪)

କବରଖାନାମାନଙ୍କର ଖୋଦନ ଫଳରେ ଅଦ୍ୟାବଧି ଯେଉଁ ପ୍ରମାଣମାନ ମିଳିଛି ଓ ଯାହାକୁ ଭିତ୍ତି କରି ପୂର୍ବୋକ୍ତ ଆଲୋଚନାମାନ କରାଯାଇଛି, ତହିଁରୁ ଏହି ସଂସ୍କୃତିର ଅଧିବାସୀମାନେ କିଭଳି ଭାବରେ ଶବସତ୍କାର ପଦ୍ଧତି ଅନୁସରଣ କରୁଥିଲେ ସେ ବିଷୟରେ ଏକ ସ୍ଥୂଳ ଧାରଣା କରିହେବ । ତାହା ହେଲା :

କ- ଶବକୁ ମାଟି ଖୋଳି କବର ଦିଆଯାଉଥିଲା ।

ଖ- ଶବକୁ ଉତ୍ତର-ଦକ୍ଷିଣ ଦିଗରେ ଶାୟିତ କରାଇ ମସ୍ତକଟିକୁ ଉତ୍ତରାଭିମୁଖୀ କରି ରଖାଯାଉଥିଲା । ଏହାଦ୍ୱାରା ମୃତବ୍ୟକ୍ତି ଉତ୍ତର ଦିଗରେ ଥିବା ଦେବଲୋକ ବା ସ୍ୱର୍ଗଲୋକ ପ୍ରାପ୍ତ ହେଲେ ବୋଲି କଳ୍ପନା କରାଯାଉଥିଲା ।

ଗ- ଶବକୁ ସାଧାରଣତଃ ଗୃହାଭ୍ୟନ୍ତରରେ ଚଟାଣ ତଳେ କବର ଦିଆଯାଉଥିଲା ଏବଂ ଏଥିପାଇଁ ହିନ୍ଦୁ-ସଂସ୍କୃତି ଭଳି ସ୍ୱତନ୍ତ୍ର କବରସ୍ଥାନ ନଥିଲା । ଏହା କରିବା ଦ୍ୱାରା ପିତୃପୁରୁଷମାନଙ୍କୁ ସମ୍ମାନ ଦେବା ସଙ୍ଗେ ସଙ୍ଗେ ସେମାନଙ୍କ ସହିତ ନିତ୍ୟ-ସମ୍ପର୍କ ସ୍ଥାପିତ ହୋଇପାରୁଥିଲା ।

ଘ- କେବଳ ପରବର୍ତ୍ତୀ କାଳରେ ସିନ୍ଧୁ ସଂସ୍କୃତି ଦ୍ୱାରା ପ୍ରଭାବିତ ହୋଇ ନେବେଓ୍ୱାଡ଼ା (ମହାରାଷ୍ଟ୍ର) ଠାରେ ନଗରୀର ବାହାରେ ପୃଥକ୍ ଏକ କବରସ୍ଥାନରେ ମୃତବ୍ୟକ୍ତିମାନଙ୍କୁ କବର ଦିଆଯାଉଥିଲା ।

ଙ- ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ଲାଗି ସ୍ୱତନ୍ତ୍ର ଭାବରେ କବର ଦେବାର ବିଧି ଅନୁସୃତ ହେଉଥିଲା ।

ଚ- ଏମାନଙ୍କର ପରଲୋକରେ ବିଶ୍ୱାସ ଥିବାରୁ ମୃତବ୍ୟକ୍ତିଙ୍କ ପରଲୋକରେ ବ୍ୟବହାର ଲାଗି ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନଙ୍କୁ କବର ମଧ୍ୟରେ ସ୍ଥାପିତ କରାଯାଉଥିଲା । ସେମାନଙ୍କ ନିତ୍ୟନୈମିତ୍ତିକ ପୂଜା ଆରାଧନା ଲାଗି ଦେବଦେବୀ ମୂର୍ତ୍ତିମାନଙ୍କୁ ମଧ୍ୟ ଏମାନଙ୍କରେ ସ୍ଥାପିତ କରାଯାଉଥିଲା ।

ଛ- ପୃଥିବୀ ପରି ଶରୀରର ଯେଉଁ ସ୍ୱାଭାବିକ ମାୟା-ବନ୍ଧନ ଅଛି ସେ ବିଷୟରେ ଏକ ସ୍ଥୂଳ ଭ୍ରାନ୍ତିମୂଳକ ଧାରଣା ଏହି ସମୟରେ ବିକଶିତ ହୋଇଥିଲା ଏବଂ ଏହାର ବଶବର୍ତ୍ତୀ ହୋଇ ମୃତବ୍ୟକ୍ତିଙ୍କର ଶରୀରର ବନ୍ଧନ ଛିନ୍ନ କରି ସ୍ୱର୍ଗଗମନର ସୁବିଧା ସୁଯୋଗ ଦେବା ଉଦ୍ଦେଶ୍ୟରେ ଆଣ୍ଠୁରୁ ତଳକୁ ପାଦମାନ କାଟି ଦିଆଯାଇ ତାଙ୍କୁ କବର ଦିଆଯାଉଥିଲା ।

ଜ- ଶିଶୁମାନଙ୍କୁ ମୃଣ୍ମୟ ପାତ୍ରରେ ସାଧାରଣତଃ ତିନିଗୋଟି ପଦ୍ଧତିରେ କବର ଦିଆଯାଉଥିଲା ।

ଝ- ସ୍ଥଳେ ସ୍ଥଳେ ସିନ୍ଧୁ ସଂସ୍କୃତି ଭଳି ଶୂନ୍ୟ ପାତ୍ରରେ ସାଙ୍କେତିକ କବର ମଧ୍ୟ ଦିଆଯାଉଥିଲା । ଏହା ଥିଲା ନିରୁଦ୍ଦିଷ୍ଟ ମୃତବ୍ୟକ୍ତିଙ୍କ ପାଇଁ ପ୍ରଯୁଜ୍ୟ ।

## ଧର୍ମ ଓ ସମାଜ :

ଏହି ସଂସ୍କୃତି ସହିତ ସଂପୃକ୍ତ ବିଭିନ୍ନ ସ୍ଥାନମାନଙ୍କରୁ ପ୍ରତ୍ନତାତ୍ତ୍ୱିକ ଖୋଦନ ଫଳରେ ଯେଉଁ ଅବଶେଷମାନ ମିଳିଛି, ତହିଁରୁ ଏହି ସଂସ୍କୃତିର ଅଧିବାସୀମାନଙ୍କର ଧର୍ମ ଓ ସମାଜ ସମ୍ପର୍କରେ କେତେକ ସ୍ଥୂଳ ଧାରଣା କରିହୁଏ । ଏ ଯେଉଁ ସମୟର କଥା କୁହାଯାଉଛି, ତାହା ହେଉଛି ଭାରତୀୟ ଧର୍ମଧାରଣାର ଅଙ୍କୁରୋଦ୍‌ଗମର ପୂର୍ବକାଳ । ସେତେବେଳେ ଧର୍ମ ଓ ଧର୍ମନିରପେକ୍ଷ ( Religious and secular ) ବିଷୟ ମଧ୍ୟରେ ନିର୍ଦ୍ଦିଷ୍ଟ ସୀମାରେଖା ପ୍ରାପ୍ତ ନ ଥିଲା କହିଲେ ଚଳେ । ଉଭୟ ପରସ୍ପର ସହିତ ଥିଲା

ଓତଃପ୍ରୋତଃ ଭାବରେ ଜଡ଼ିତ । ସେଥିପାଇଁ ଗବେଷକମାନେ ଖ୍ରୀଷ୍ଟୀୟ ଧର୍ମଧାରଣାର ଇତିହାସ ବିଷୟ ଆଲୋଚନା କରିବାକୁ ଗଲାବେଳେ ସାଧାରଣତଃ ଋଗ୍‌ବେଦ ସମୟକୁ ହିଁ ଆଦିକାଳ ବୋଲି ଧରିଥାନ୍ତି । ତଥାପି ଶଂସିତ କାଳରେ ସମାଜ ଯେତେବେଳେ ଅଶିକ୍ଷାର ଅନ୍ଧକାରରେ ଆଚ୍ଛନ୍ନ ଥିଲା, ସେତେବେଳର ଧର୍ମଚେତନା ସଂପର୍କରେ ଯାହା କିଛି ସାମାନ୍ୟତମ ଧାରଣା, ତାହା ଉପରେ କେବଳ ପ୍ରତ୍ନତତ୍ତ୍ୱ ହିଁ ଆଲୋକପାତ କରିଥାଏ । (୧୫) ପୂର୍ବରୁ ଶବସତ୍କାର ଓ ପରଲୋକରେ ବିଶ୍ୱାସ ପ୍ରସଙ୍ଗରେ କବର-ଗୁଡ଼ିକରୁ ମିଳିଥିବା ଧ୍ୱଂସାବଶେଷ ଉପରେ ଭିତ୍ତି କରି କେତେକ ଆଲୋଚନା କରି-ଯାଇଛି ଏବଂ ତହିଁରେ ଦର୍ଶାଯାଇଛି ଯେ ଏହି ଲୋକମାନଙ୍କର ପୃଥିବୀ ବାହାରେ ଆଉ ଗୋଟିଏ ପରଲୋକ ଅଛି ବୋଲି ସ୍ଥୂଳ ଧାରଣାଟିଏ ଥିଲା । ଅତଏବ, ସେ ବିଷୟରେ ପୁନର୍ବାର ଆଲୋଚନା କରିବା ନିଷ୍ପ୍ରୟୋଜନ । ବାସ୍ତବିକ ଏହି ପରଲୋକ ସମ୍ପର୍କରେ ଧାରଣା ଥିଲା ସେମାନଙ୍କ ଧର୍ମବିଶ୍ୱାସର ଏକ ବୈଶିଷ୍ଟ୍ୟ ବିଭବ । କିନ୍ତୁ 'ଆତ୍ମା' ବିଷୟରେ ସେମାନଙ୍କର ଧାରଣା ନଥିଲା । ସେମାନେ ଥିଲେ ଦେହ-ସର୍ବସ୍ୱ ଏବଂ ଏହି ଦେହ ମୃତ୍ୟୁପରେ ପରଲୋକର ସକଳ ସୁଖ ଉପଭୋଗ କରି ପାରିବ ବୋଲି ସେମାନେ ଭାବୁ-ଥିଲେ । ସେଥିପାଇଁ ସେମାନେ ମୃତବ୍ୟକ୍ତିଙ୍କୁ କବର ଦେଇ କବର ମଧ୍ୟରେ ତାଙ୍କର ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନଙ୍କୁ ମଧ୍ୟ ସ୍ଥାପିତ କରୁଥିଲେ । ଏପରି କି ସିନ୍ଧୁ ସଂସ୍କୃତିରେ 'ଆତ୍ମା' ଓ 'ପରମାତ୍ମା' ବିଷୟରେ ଯେଉଁ ଭ୍ରୂଣାତ୍ମକ ଚିନ୍ତାଧାରା ଥିଲା ଏବଂ ଯାହାର ପ୍ରମାଣ ଆମ୍ଭେ ସେଠାରୁ ଆବିଷ୍କୃତ ମୃଣ୍ମୟ ମୋହର ଉପରେ ଅଙ୍କିତ ଅଶ୍ୱତ୍ଥ ବୃକ୍ଷାସୀନ ଦୁଇଟି ପକ୍ଷୀର ଚିତ୍ରରୁ ପାଇଥାଉଁ, ତାହାର ଲେଶମାତ୍ର ପ୍ରଭାବ ଏହି ସଂସ୍କୃତିରେ ପଡ଼ି-ଥିବାର ଦୃଷ୍ଟିଗୋଚର ହୁଏନାହିଁ । ଏମାନେ ଥିଲେ ସମ୍ପୂର୍ଣ୍ଣ ଦେହବାଦୀ । ଦେହ ଥିଲା ଏମାନଙ୍କର ସବୁ କିଛି । ଇହକାଳ ଓ ପରକାଳରେ ଏହି ଦେହ ହିଁ ଥିଲା ଏମାନଙ୍କର ସେବା ଓ ଚିନ୍ତାର କେନ୍ଦ୍ରସ୍ଥଳୀ । ସୂକ୍ଷ୍ମରେ କହିବାକୁ ଗଲେ, ଏମାନେ ଥିଲେ ଦେହ-ସର୍ବସ୍ୱ । ଏହି ଦେବ-ସର୍ବସ୍ୱତା ହେଉଛି ଆର୍ଯ୍ୟେତର ଚିନ୍ତାଧାରାର ଏକ ବୈଶିଷ୍ଟ୍ୟ ଦିଗ । ଆର୍ଯ୍ୟମାନେ ସର୍ବଦା ଏହାକୁ 'ଆସୁର-ଚିନ୍ତାଧାରା' ବୋଲି ନିନ୍ଦା କରି ଆସିଛନ୍ତି ଏବଂ ଏମାନଙ୍କ ଅଧ୍ୟୁଷିତ ଅଞ୍ଚଳକୁ ଅନ୍ଧକାରପୂର୍ଣ୍ଣ ଅସୁରରାଜ୍ୟ ବୋଲି ଘୃଣା କରି ଆସିଛନ୍ତି । ସେଥିପାଇଁ ଈଶୋପନିଷଦରେ କୁହାଯାଇଛି :

ଅସୁର୍ଯ୍ୟା ନାମ ତେ ଲୋକା ଅନ୍ଧେନ ତମସାବୃତାଃ,
ତାଂସ୍ତେ ପ୍ରେତ୍ୟାଭିଗଚ୍ଛନ୍ତି ଯେ' କେ ଚାତ୍ମହନୋ ଜନାଃ । ୧୬ ।

ଅର୍ଥାତ୍ ନିବିଡ଼ ଅନ୍ଧକାରରେ ବୁଡ଼ିରହିଛି ଯେଉଁ ଲୋକଗୁଡ଼ିକ, ସେଗୁଡ଼ିକ ହେଉଛି

ଅସୁରମାନଙ୍କ ବାସର ଉପଯୋଗୀ । ଯେଉଁମାନେ ଆତ୍ମଘାତୀ, ସେମାନେ ମୃତ୍ୟୁପରେ ସେହି ଲୋକକୁ ଯାଆନ୍ତି ।

ନରଦେହ ଧରି ସ୍ୱର୍ଗକୁ ଯିବାର ଯେଉଁ ଧାରଣା ଏମାନଙ୍କର ଥିଲା, ତାହା ପରବର୍ତ୍ତୀ କାଳରେ ହିନ୍ଦୁମାନଙ୍କ ମଧ୍ୟରେ ଅଥବା ବୌଦ୍ଧମାନଙ୍କ ମଧ୍ୟରେ ଉଦ୍ଭବ ହୋଇଥିବା ଏ ସମ୍ପର୍କୀୟ ଧାରଣାଠାରୁ ଭିନ୍ନ । ଶଂସିତ ସଂସ୍କୃତିର ଅଧିକାରୀମାନଙ୍କର ବିଶ୍ୱାସ ଥିଲା ଯେ ମୃତ୍ୟୁ ପରେ ସମସ୍ତେ ସ୍ୱର୍ଗକୁ ଯାଆନ୍ତି । ଏଣୁ ସମସ୍ତଙ୍କର ଲାଗି ସମାନ ପ୍ରକାରର ଶବସତ୍କାର ପଦ୍ଧତି ଅନୁସୃତ ହୋଇଛି । କିନ୍ତୁ ହିନ୍ଦୁ ଓ ବୌଦ୍ଧମାନଙ୍କ ସ୍ୱର୍ଗପ୍ରାପ୍ତି ସମ୍ପର୍କୀୟ ଧାରଣା ଏକ ଅପେକ୍ଷାକୃତ ଜଟିଳ ଭିତ୍ତିଭୂମି ଉପରେ ଆଶ୍ରିତ । ସେମାନଙ୍କ ମତରେ ସ୍ୱର୍ଗକୁ ଯିବା କିମ୍ବା ତା'ର ବିପରୀତ ସ୍ଥାନ ନରକକୁ ଯିବା ମନୁଷ୍ୟର କୃତକର୍ମ ଉପରେ ହିଁ ନିର୍ଭର କରେ । ଅତଏବ, ସମସ୍ତେ ସ୍ୱର୍ଗକୁ ଯିବେନାହିଁ କିମ୍ବା ସମସ୍ତେ ନରକକୁ ଯିବେ ନାହିଁ । ନରକ, ସ୍ୱର୍ଗ ଓ ପୁନର୍ଜନ୍ମର ଏହି ଯେଉଁ ଜଟିଳ ଚିନ୍ତାଧାରା ପରବର୍ତ୍ତୀ କାଳରେ ଭାରତୀୟ ଆଧ୍ୟାତ୍ମିକ ଓ ଧାର୍ମିକ ଚେତନାକୁ ଆଚ୍ଛନ୍ନ କରି ରଖିଥିଲା, ତାହା ଏହି ସରଳ ଆଦିମାନବମାନଙ୍କ ମନରେ ଆଦୌ ସ୍ଥାନ ନପାଇବା ସ୍ୱାଭାବିକ । ସେମାନେ ଥିଲେ କେବଳ ଦୁଇଟି ଲୋକ ବିଷୟରେ ଅବହିତ, ପୃଥିବୀ ଓ ପରଲୋକ ବା ସ୍ୱର୍ଗ । ନରକ କଥା ସେମାନେ ଚିନ୍ତା ହିଁ କରି ନଥିଲେ । ବାସ୍ତବିକ ବୈଦିକ ଆର୍ଯ୍ୟମାନେ ମଧ୍ୟ ସ୍ୱର୍ଗ ଓ ନରକର ଚିନ୍ତା କରି ନଥିଲେ । ନରକ ବିଷୟକ ଚିନ୍ତାଧାରା ଦେଖାଦେଲା ବେଦୋତ୍ତର କାଳରେ, ବିଶେଷ କରି ବୌଦ୍ଧ କାଳରେ । ତା'ପରେ ବିଭିନ୍ନ ପୁରାଣମାନ ନରକର ନାନାପ୍ରକାର ବୀଭତ୍ସ ଓ ହୃଦୟବିଦାରକ ବର୍ଣ୍ଣନାରେ ଭରି ଉଠିଲା । ନର-ଦେହରେ ସ୍ୱର୍ଗକୁ ଯିବାର ଯେଉଁ କଳ୍ପନା ପରବର୍ତ୍ତୀ କାଳରେ କରାଯାଇଛି ଏବଂ ଯାହାକୁ ଭିତ୍ତି କରି କେତେ ମହାପୁରୁଷଙ୍କ ସ୍ୱଦେହରେ ସ୍ୱର୍ଗପୁରକୁ ଯାଇଥିବାର ଅସଂଖ୍ୟ କାହାଣୀମାନ ଗଢି ଉଠିଛି, ତାହାର ମୂଳ-ଉତ୍ସ ଆର୍ଯ୍ୟେତର ସଂସ୍କୃତି ବୋଲି ମନେହୁଏ । ସେହି ଦୃଷ୍ଟିରୁ ବିଚାରକଲେ ଏଭଳି ଚିନ୍ତାଧାରାର ଭୂୟୋବିକାଶର ପୃଷ୍ଠଭୂମିରେ ଶଂସିତ ସଂସ୍କୃତିର ପ୍ରଚ୍ଛନ୍ନ ପ୍ରଭାବ ନିଶ୍ଚିତ ଭାବରେ କାମ କରିଥିବ ବୋଲି ମନେହୁଏ ।

ପୃଥିବୀର ସମସ୍ତ ସଭ୍ୟତାରେ ଆଦିମାନବ ମହାମାତୃଶକ୍ତିଙ୍କ ଆରାଧନା କରୁଥିବାର ଆମେ ପ୍ରମାଣ ପାଇଥାଉଁ । ସିନ୍ଧୁ ସଂସ୍କୃତିରେ ମଧ୍ୟ ଏହି ମହାମାତୃଶକ୍ତିଙ୍କ ଆରାଧନା ବିଷୟରେ ବହୁଳ ପ୍ରମାଣମାନ ମିଳିଛି । ବାସ୍ତବିକ ମାଆ ଯେ ପ୍ରଜନନ-କ୍ରିୟାରେ ଏକମାତ୍ର ଭାଗୀଦାର, ଏହା ଥିଲା ଆଦିମାନବର ଧାରଣା । ସେଥିରେ ପିତାର କିଛି କର୍ତ୍ତବ୍ୟ ଅଛି ବୋଲି ତା'ର ଧାରଣା ଆଦୌ ନଥିଲା । ଏହି ବିଂଶ ଶତାବ୍ଦୀରେ ମଧ୍ୟ ଆଣ୍ଡାମାନ

ଲିକୋବର ଦ୍ୱୀପପୁଞ୍ଜର କେତେକ ଆଦିବାସୀଙ୍କର ଏହି ଭ୍ରାନ୍ତ ଧାରଣା ଏବେ ବି ରହିଛି । ଆଦି ମାନବ ଯେଉଁ ପ୍ରତିକୂଳ ପରିସ୍ଥିତିରେ ହିଂସ୍ରଜନ୍ତୁ ବେଷ୍ଟିତ ହୋଇ ବାସ କରୁଥିଲା, ସେତେବେଳେ ତା'ର ବଂଶବୃଦ୍ଧି ଲାଗି ସେ ସଦା ଚେଷ୍ଟିତ ଥିବା ସ୍ୱାଭାବିକ । ସେଥିପାଇଁ ସେ ପ୍ରଜନନର ସହାୟିକା ଶକ୍ତି ରୂପରେ ମହାମାତୃଦେବୀଙ୍କୁ 'ଆରାଧନା କରିବାକୁ ଲାଗିଲା । ଗୃହପାଳିତ ଗୋମହିଷାଦି ପଶୁମାନଙ୍କର ସଂଖ୍ୟା ବୃଦ୍ଧି ଓ ଅଧିକ ଫସଲ ଉତ୍ପାଦନ ତା'ର ଜୀବନ-ଧାରଣ ଲାଗି ଅପରିହାର୍ଯ୍ୟ ହୋଇ ଉଠିଲା । ସେଥିପାଇଁ ପ୍ରଜନନଶକ୍ତିର ଅଭିବୃଦ୍ଧି ଲାଗି ସେ ହୋଇ ଉଠିଲା ବ୍ୟାକୁଳ ଏବଂ ଏହି ବ୍ୟାକୁଳତା ମଧ୍ୟରେ ସେ ଆରାଧନା କରି ବସିଲା ଏହି ଶକ୍ତିର ଅଧିଷ୍ଠାତ୍ରୀ 'ମାତୃଦେବୀ'ଙ୍କୁ । ଶଂସିତ ସଂସ୍କୃତିରେ ମଧ୍ୟ ଏହି ମହାମାତୃଦେବୀଙ୍କର ଆରାଧନା, ଧାର୍ମିକ ଅନୁଷ୍ଠାନର ଏକ ଅଙ୍ଗ ହୋଇଥିବା ଭଳି ଜଣା-ପଡ଼େ । ନେଭାସା ଓ ଇନାମ୍‌ଗାଁର୍ (ଉଭୟ ମହାରାଷ୍ଟ୍ରରେ) କବରମାନ ଖନନ ଫଳରେ ମିଳୁଥିବା ମାତୃଦେବୀଙ୍କ ମୂର୍ତ୍ତିମାନ ଏହାର ପ୍ରମାଣ ସ୍ୱରୂପ ବିଦ୍ୟମାନ । ଏହି ପୂଜା ଅତ୍ୟନ୍ତ ଲୋକପ୍ରିୟ ଥିଲା ଭଳି ଜଣାପଡ଼େ; କାରଣ ପରଲୋକରେ ମଧ୍ୟ ମୃତବ୍ୟକ୍ତିଙ୍କ ପୂଜାନୁଷ୍ଠାନ ଲାଗି ଏହି ମାତୃଦେବୀଙ୍କୁ କବର ମଧ୍ୟରେ ସ୍ଥାପିତ କରାଯାଇଛି ।

ଏ ତ ଗଲା ଏମାନଙ୍କର ଧର୍ମଧାରଣା ବିଷୟରେ ଏକ ସ୍ଥୂଳ ବିଚାର । ବର୍ତ୍ତମାନ ଏମାନଙ୍କର ସମାଜ ବ୍ୟବସ୍ଥା କଥା ବିଚାର୍ଯ୍ୟ । ଅବଶ୍ୟ ଏହା ଜାଣିବାକୁ ହେଲେ ଏମାନଙ୍କ ବାସସ୍ଥାନମାନଙ୍କର ଯେପରି ଭାବରେ ବହୁ-ପ୍ରସାରୀ ଖନନକାର୍ଯ୍ୟ ଆବଶ୍ୟକ ତାହା ଏପର୍ଯ୍ୟନ୍ତ ହୋଇ ପାରିନାହିଁ । କେତେକ ସୀମିତ ଅଞ୍ଚଳ ମାନଙ୍କରେ ଏହା କରାଯାଇଛି ମାତ୍ର । ପୁଣି ଏହି ଅଞ୍ଚଳମାନଙ୍କରୁ ଅଧିକାଂଶ ମହାରାଷ୍ଟ୍ରରେ ହିଁ ସୀମାବଦ୍ଧ । ତଥାପି ଏହି ସୀମିତ ଖନନ କ୍ରିୟା ଫଳରେ ଯାହା କିଛି ପ୍ରମାଣମାନ ମିଳିଛି, ତାହାକୁ ଭିତ୍ତି କରି ଏମାନଙ୍କ ସାମାଜିକ ବ୍ୟବସ୍ଥା ସମ୍ପର୍କରେ ଏକ ସ୍ଥୂଳ ଧାରଣା କରିହେବ ।

ମୃତବ୍ୟକ୍ତିମାନଙ୍କୁ ନିଜ ନିଜର ଘର ଚଟାଣମାନଙ୍କରେ ଏମାନେ କବର ଦେଉଥିଲେ । ଏହା ଏମାନଙ୍କର ମୃତବ୍ୟକ୍ତିଙ୍କ ପ୍ରତି ଥିବା ସମ୍ମାନର ସୂଚନା ଦିଏ । ମୃତବ୍ୟକ୍ତିଙ୍କ ଆତ୍ମାକୁ ଏମାନେ ଦେବତା ଭଳି ଜ୍ଞାନ କରୁଥିଲେ ଏବଂ ସେଥିପାଇଁ ଏହା ଥିଲା ଏମାନଙ୍କ ପାଖରେ ନମସ୍ୟ ଓ ପୂଜ୍ୟ । ପିତୃପୁରୁଷଙ୍କ ପ୍ରତି ଏଭଳି ଭକ୍ତି ଓ ସମ୍ମାନ ପ୍ରଦର୍ଶନରୁ ଅନୁମିତ ହୁଏ ଯେ ଏମାନଙ୍କ ସମାଜରେ ବୃଦ୍ଧ ଲୋକମାନେ ଥିଲେ ପୂଜ୍ୟ । ଏବେ ମଧ୍ୟ ଆମ ସମାଜରେ ବିଶେଷ କରି ଆଦିବାସୀ ସମାଜରେ ବୃଦ୍ଧଲୋକଙ୍କ ପ୍ରତି ଖୁବ୍ ସମ୍ମାନବୋଧ ରହିଛି । ପରିବାରରେ ଯେ ଜ୍ୟେଷ୍ଠ, ସେ ମଧ୍ୟ ସେହିଭଳି ପୂଜ୍ୟ ଥିବେ ଏବଂ ତାଙ୍କରି ଉପଦେଶ ଅନୁଯାୟୀ ପରିବାରଟି ଚାଲୁଥିବ । ଏକ ପକ୍ଷରେ ମାତୃ ଦେବୀଙ୍କର ବହୁଳ ଆରାଧନା ଏବଂ ଅନ୍ୟ ପକ୍ଷରେ କୌଣସି ପୁରୁଷ ଦେବମୂର୍ତ୍ତିଙ୍କର

ଅନାବିଷ୍କାର ଗୋଟିଏ ନିଶ୍ଚିତ ବିଷୟର ସୂଚନା ଦିଏ । ଏହା ହେଲା, ପରିବାରରେ ମାତାଙ୍କର ଆସନ ସେତେବେଳେ ଖୁବ୍ ଉଚ୍ଚରେ ଥିଲା । ପରିବାରର ମାତା କାଳ ଥିଲେ ସର୍ବମୟୀ କର୍ତ୍ତ୍ରୀ । ପରିବାର ଓ ସମାଜ ଉଭୟ ସେତେବେଳେ ମାତୃପ୍ରଧାନ ଥିବା ସ୍ୱାଭାବିକ । ଏବେ ମଧ୍ୟ ଏହି ପ୍ରଥାର ଅବଶେଷ ଆମ ଦେଶରେ ବିଦ୍ୟମାନ । ଦାକ୍ଷିଣାତ୍ୟର ନାୟାର୍‌ମାନଙ୍କ ସମାଜ ଏବେ ମଧ୍ୟ ମାତୃପ୍ରଧାନ ହୋଇ ରହିଛି । ଆମ ଭାରତୀୟ ସଂସ୍କୃତିରେ ମାତୃଜାତିକୁ ସ୍ୱର୍ଗଠାରୁ ବଡ଼ ବୋଲି କୁହାଯାଇଥାଏ । କାର୍ଯ୍ୟତଃ କ'ଣ କରାଯାଇଛି ବା କରାଯାଉଛି ତାହା ଅଲଗା କଥା । କିନ୍ତୁ ମାନସିକତା ସ୍ତରରେ ମାତୃଜାତିକୁ ଉଚ୍ଚସ୍ଥାନ ଦେବା ଲାଗି ଭାରତୀୟ ସଂସ୍କୃତି କାର୍ପଣ୍ୟ କରିନାହିଁ । ସେଥିପାଇଁ ମନୁ କହିଛନ୍ତି :

ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ

ଅର୍ଥାତ୍ ମାଆ ଓ ଜନ୍ମଭୂମି ସ୍ୱର୍ଗଠାରୁ ବଡ଼ । ଏହି ଚିନ୍ତାଧାରାର ପରଂପରା ଯେ ଅତି ପ୍ରାଚୀନ ଏବଂ ପ୍ରାଗୈତିହାସିକ, ଏହା ନିଶ୍ଚିତ ଭାବରେ କୁହାଯାଇ-ପାରିବ ।

ଏମାନଙ୍କ ମଧ୍ୟରେ ସାମାଜିକ ସ୍ତରବିଭାଗ ଥିଲା କି ନାହିଁ ଏବଂ ଯଦିବା ଥିଲା, ସେହି ସ୍ତରଗୁଡ଼ିକର ସଂଖ୍ୟା କେତେ ସେ କଥା ଅବଶ୍ୟ ସଠିକ୍ କହିହେବ ନାହିଁ । କିନ୍ତୁ ସମାଜରେ କିଛି ନା କିଛି ବିଭାଗ ନିଶ୍ଚିତ ଭାବରେ ଥିଲା । କବରମାନଙ୍କ ଖନନ ଫଳରେ ବହୁଳ ପରିମାଣରେ ମୃଣ୍ମୟ ପାତ୍ର ( ଉଭୟ ଚିତ୍ରିତ ଓ ଅଚିତ୍ରିତ ) ଅର୍ଦ୍ଧମୂଲ୍ୟବାନ ପ୍ରସ୍ତରର ଅଳଙ୍କାରମାନ ଓ ଅନ୍ୟାନ୍ୟ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନ ମିଳିଛି । ନେଭାସାରେ ( ମହାରାଷ୍ଟ୍ର ) କପା ସୂତାରେ ଗୁନ୍ଥା ହୋଇଥିବା ପୋହଳାର ମାଳ ମିଳିଛି । ଦାଇମାବାଦରେ ତମ୍ବାର ଗୋଟିଏ ଗଣ୍ଡାର ମୂର୍ତ୍ତି, ଗୋଟିଏ ହାତୀମୂର୍ତ୍ତି, ଗୋଟିଏ ମଇଁଷି ମୂର୍ତ୍ତି ଓ ଦୁଇଟି ଘୋଡ଼ାଦ୍ୱାରା ଟଣା ଯାଉଥିବା ରଥ ମିଳିଛି । ଏହି ରଥରେ ଜଣେ ଲୋକ ଦଣ୍ଡାୟମାନ ଏବଂ ଶଗଡ ଭଳି ଏଥିରେ ଦୁଇଟି ଚକ ଅଛି । ପରବର୍ତ୍ତୀ କାଳରେ ଭାରତରେ ଅବଶ୍ୟ ଉନ୍ନତ ଧରଣର ରଥର ଆବିର୍ଭାବ ହୋଇଛି । ଶଂସିତ ରଥଟି ତାହାର ପୂର୍ବଜ ହିସାବରେ ନିଶ୍ଚିତ ଭାବରେ ଯଥେଷ୍ଟ କୌତୂହଳୋଦ୍ଦୀପକ । ଏଗୁଡ଼ିକର ନିର୍ମାଣ କୌଶଳରୁ ଯାହା ଜଣାପଡୁଛି ସେହି କାଳକୁ ବିଚାରକୁ ନେଲେ ଏଗୁଡ଼ିକଠାରେ ଯଥେଷ୍ଟ କଳାନୈପୁଣ୍ୟ ପ୍ରକଟିତ । ସମାଜର ଗୋଟିଏ ଶ୍ରେଣୀର ଲୋକଙ୍କ ପକ୍ଷେ ଏତେ ପ୍ରକାର କଳାରେ ନୈପୁଣ୍ୟ ହାସଲ କରିବା ନିତାନ୍ତ ଅସମ୍ଭବ । ଅତଏବ, ଅନୁମାନ କରି-ଯାଉଛି ଯେ ସେତେବେଳେ ସମାଜରେ ନିଶ୍ଚିତ ଭାବରେ ଶ୍ରମଭିତ୍ତିକ ଏକ ଶ୍ରେଣୀବିଭାଗ

ଥିଲା । ଏ ପ୍ରକାର ଶ୍ରେଣୀବିଭାଗ ଆର୍ଯ୍ୟମାନଙ୍କର ବର୍ଣ୍ଣବିଭାଗର ନିଶ୍ଚିତ ଭାବରେ ସୂଚକ ।

ଦାଇମାବାଦଠାରେ ( ମହାରାଷ୍ଟ୍ରର ଅହମଦନଗର ଜିଲ୍ଲା ) ଗୋଟିଏ କବର-ଖନନ ଫଳରେ ସେଠାରେ ମୃତବ୍ୟକ୍ତିଙ୍କୁ ଗୃହ ଆଙ୍ଗିଣି ଭିତରେ କବର ଦିଆଯାଇଥିବାର ନିଦର୍ଶନ ମିଳିଛି, ସେ ବିଷୟରେ ପୂର୍ବରୁ ସୂଚନା ଦିଆଯାଇଛି । ଏହି କବର ଦେବା ପଦ୍ଧତି ଅନ୍ୟତ୍ର ଅନୁସୃତ ହୋଇଥିବା ପଦ୍ଧତି ଠାରୁ ପୃଥକ୍ ଏବଂ ଅଧିକତର ସମ୍ମାନସୂଚକ । ଅତଏବ, ଏ ନିଶ୍ଚୟ ସମାଜରେ ଜଣେ ସମ୍ମାନନୀୟ ବ୍ୟକ୍ତି ହୋଇଥିବେ ଯେ କି ଥିବେ ସାଧାରଣ ଜନତାଙ୍କ ଠାରୁ ପୃଥକ୍ । ଏ ହୁଏତ ରାଜା ହୋଇ ପାରନ୍ତି ଅଥବା ଗ୍ରାମର ଦଳପତି ହୋଇ ପାରନ୍ତି ଅଥବା ପୁରୋହିତ ହୋଇପାରନ୍ତି । ସେ ଯାହାହେଉ, ସମାଜରେ ସାଧାରଣ ଜନତାଠାରୁ ସମ୍ମାନନୀୟ ଗୋଟିଏ ଗୋଷ୍ଠୀ ଥିଲେ ବୋଲି ଏଥିରୁ ନିର୍ଦ୍ଦିଷ୍ଟ ସୂଚନା ମିଳୁଛି । ଏହା ମଧ୍ୟ ସେତେବେଳେ ଅନୁସୃତ ହେଉଥିବା ସାମାଜିକ ସ୍ତରବିଭାଗର ଏକ ନିଦର୍ଶନ । ପ୍ରାୟ ସମସାମୟିକ ସିନ୍ଧୁ ସଂସ୍କୃତିର ସମାଜ ପୁରୋହିତସର୍ବସ୍ୱ ଥିଲା ବୋଲି ଡ଼. ଡ଼. କୋସାମ୍ବି ମତ ପ୍ରକାଶ କରିଛନ୍ତି । ( ୧୭ ) ସେହିପରି ପୁରୋହିତନିଷ୍ଠ ସମାଜ ଏଠାରେ ମଧ୍ୟ ଥାଇପାରେ ଯାହା ଫଳରେ କି ପୁରୋହିତଙ୍କୁ ଯଥୋଚିତ ସମ୍ମାନ ଦେଖାଯାଇ ସ୍ୱତନ୍ତ୍ର ପଦ୍ଧତିରେ କବର ଦିଆଯାଇଛି । ବାସ୍ତବିକ ଏଭଳି ଆଦିମ ଯୁଗରେ ସମାଜ ପୁରୋହିତସର୍ବସ୍ୱ ଥିବାର ସମ୍ଭାବନା ଅଧିକ । ଏପରିକି ପ୍ରାଥମିକ ଅବସ୍ଥାରେ ଆର୍ଯ୍ୟମାନଙ୍କ ସମାଜ ମଧ୍ୟ ଥିଲା ପୁରୋହିତସର୍ବସ୍ୱ । ସେଥିପାଇଁ ତାଙ୍କ ନାଁ ଥିଲା 'ପୁରୋହିତ' ବା ଯେ 'ଆଗରେ ଥାଆନ୍ତି' ।

ନାଭଡ଼ାଟୋଲି, ନେଭସା ଓ ଇନାମଗାଁ ଆଦି ଅଞ୍ଚଳରେ ଏମାନଙ୍କ ବାସସ୍ଥାନର ବିସ୍ତୃତ ଖନନ ଫଳରେ ଯାହା ଯାହା ପ୍ରମାଣମାନ ମିଳୁଛି ସେଥିରୁ ଜଣାଯାଏ ଯେ ଏମାନେ କଚା ଓ ଝାଟିମାଟି ଘରେ ବାସ କରୁଥିଲେ । ଘରର ଖୁଣ୍ଟଗୁଡ଼ିକ ଥିଲା କାଠରେ ତିଆରି । ଏଗୁଡ଼ିକର ଆକାର ଥିଲା ବର୍ଗାକାର କିମ୍ବା ଆୟତାକାର କିମ୍ବା ଗୋଲାକାର । ଝାଟିମାଟି କାନ୍ଥ ବାଉଁଶର ବାଡ଼ରେ ତିଆରି ହେଉଥିଲା ଏବଂ ଏଥିରେ ଭିତର ଓ ବାହାର ଉଭୟ ପଟୁ ମାଟି ଛଟା ଯାଉଥିଲା । ପଲ୍ଲୀ ଅଞ୍ଚଳରେ ଏହି ପଦ୍ଧତିରେ ହିଁ କଚା ଘରମାନ ଏବେ ମଧ୍ୟ ତିଆରି ହେଉଛି । ବାଲି, ଗୋଡ଼, ମାଟି ଓ ଚୂନକୁ ମିଶାଯାଇ ସେଥିରେ ଘରର ଚଟାଣ ତିଆରି ହେଉଥିଲା । ଉଦ୍ଧ୍ୱ ଚଟାଣରେ ମସୃଣତା ରକ୍ଷା କରିବା ସଙ୍ଗେ ସଙ୍ଗେ ଦୃଢ଼ତା ମଧ୍ୟ ରକ୍ଷା କରାଯାଇ ପାରୁଥିଲା । ରୁଖେଇ ଲାଗି ଓ ପାଣିଆ ଜଳ ରଖିବା ଲାଗି ମାଟିର ପାତ୍ରମାନ ବ୍ୟବହୃତ ହେଉଥିଲା । ପ୍ରତ୍ନତାତ୍ତ୍ୱିକମାନେ ଏହି ସଂସ୍କୃତିର ଅବଶେଷଗୁଡ଼ିକୁ ପରୀକ୍ଷା କରି ଜାଣି ପାରିଛନ୍ତି ଯେ ଏମାନେ ସର୍ବମୋଟ

ପାଞ୍ଚ ପ୍ରକାର ବିଭିନ୍ନ ମୃଣ୍ମୟ ପାତ୍ରମାନ ବ୍ୟବହାର କରୁଥିଲେ । ବସ୍ତି ଅଞ୍ଚଳର ମଧ୍ୟ ଭାଗରେ ଗାଁ । ଦାଣ୍ଡଟି ଥାଇ ଏହାର ଦୁଇ ପଟରେ ଘରମାନ ଥିଲା । କୌଣସି ସ୍ଥାନରେ ଏକୁଟିଆ ଘରଟିଏ ଥିବାର ନିଦର୍ଶନ ମିଳେ ନାହିଁ । ଏକତ୍ର ବାସ କରି ଏମାନେ ଗଣଜୀବନ ଯାପନ କରୁଥିବାର ଏହା ନିଦର୍ଶନ । (୧୮)

ଇନାମଗାଁଠାରେ ଧାନ, ଗହମ ଓ ବାର୍ଲି ସହିତ ଚଣା ଓ କୋଳଥ, ମସୁର ଓ ମୁଗର ଦାନାମାନ ମିଳିଛି । ଚନ୍ଦୋଲି ଠାରେ କପାସୂତାରେ ଗୁନ୍ଥା ଗୋଟିଏ ପୋହଳାର ମାଳୀ ସହିତ ତମ୍ବାର ବର୍ଚ୍ଛା ଓ ବନ୍ଶୀ କଣ୍ଟା ମଧ୍ୟ ମିଳିଛି । ଏଥିରୁ ଅନୁମିତ ହୁଏ ଯେ କୃଷି ଥିଲା ଏମାନଙ୍କର ମୁଖ୍ୟ ଜୀବିକା ଓ ଶିକାର କରିବା ଥିଲା ଏକ ସହାୟକ ଜୀବିକା । ପ୍ରାଥମିକ କୃଷକ-ଅବସ୍ଥାରୁ ଏମାନେ କେତେକ ପରିମାଣରେ ପ୍ରଗତିଶୀଳ ଥିଲେ ବୋଲି ମନେହୁଏ । ପ୍ରତ୍ନତତ୍ତ୍ୱବିତ୍ ଅଲ୍‌ଚିନ୍ ଦମ୍ପତିଙ୍କ ମତରେ ଏମାନେ ଏକ ପ୍ରକାର ସୀମିତ ଜଳସେଚନ ପଦ୍ଧତି ଆବିଷ୍କାର କରିଥିଲେ । (୧୯) ଚନ୍ଦୋଲିରୁ ( ମହାରାଷ୍ଟ୍ର ) ମିଳିଥିବା କପା ସୂତା ଏମାନେ କପା-ଚାଷୀ ଥିବାର ପ୍ରମାଣ ଦେବା ସଙ୍ଗେ ସଙ୍ଗେ କଞ୍ଚାମାଲଟିକୁ ବ୍ୟବହାର କରି ଏମାନେ ବସ୍ତ୍ର ଆଦି ନିତ୍ୟବ୍ୟବହାର୍ଯ୍ୟ ସାମଗ୍ରୀ ପ୍ରସ୍ତୁତ କରିପାରୁଥିବା ନିଦର୍ଶନ ମଧ୍ୟ ସୂଚିତ କରୁଛି । ମହାରାଷ୍ଟ୍ରର କୃଷ୍ଣକାର୍ପାସ ମୃତ୍ତିକା ବର୍ତ୍ତମାନ ଭଳି ସେତେବେଳେ ମଧ୍ୟ କପା-ଚାଷ ପାଇଁ ଖୁବ୍ ଉପଯୋଗୀ ହୋଇଥିବ ଏବଂ ତେଣୁ ଏମାନେ ଏହାର ସଦୁପଯୋଗ କରିଥିବା ସ୍ୱାଭାବିକ । କାର୍ପାସ ବସ୍ତ୍ର ଛଡ଼ା ଏମାନେ ପାଟ-ବସ୍ତ୍ର ମଧ୍ୟ ବ୍ୟବହାର କରୁଥିଲେ ବୋଲି କେତେକ ଗବେଷକ ମତ ଦେଇଥା'ନ୍ତି । (୨୦) ଇନାମଗାଁଠାରୁ ମିଳିଥିବା ଗୋଟିଏ ମୃଣ୍ମୟ ପାତ୍ରରେ ବଳଦ ଗାଡ଼ିର ଚିତ୍ରଟିଏ ଅଙ୍କିତ ହୋଇଥିବାର ପ୍ରମାଣ ମିଳିଛି । ଏହା ଦେଖିବାକୁ ଠିକ୍ ଆଜିକାଲିକାର ବଳଦଗାଡ଼ି ପରି । କୃଷିଭିତ୍ତି ଗମନାଗମନ ଓ ମାଲମତାର ସରବରାହ ଲାଗି ବଳଦଗାଡ଼ି ବ୍ୟବହୃତ ହେଉଥିବା ଅନୁମାନ କରାଯାଏ । ସେତେବେଳେ କୌଣସି ପ୍ରକାର ମୁଦ୍ରା ଚଳୁଥିବାର ପ୍ରମାଣ ମିଳୁନାହିଁ । ତେଣୁ ଦ୍ରବ୍ୟ ବିନିମୟ ଅର୍ଥନୀତି ( Barter economy )ସେତେବେଳେ କାର୍ଯ୍ୟ କରୁଥିବାର ମନେହୁଏ । ବାସ୍ତବିକ୍ ଏହି ଅର୍ଥନୀତି ଅତି ଅନୁନ୍ନତ ଅଞ୍ଚଳମାନଙ୍କରେ ଏ ପର୍ଯ୍ୟନ୍ତ ମଧ୍ୟ ଚାଲିଛି । ବସ୍ତି ଅଞ୍ଚଳରୁ ଗାଈ, ବଳଦ, ମେଣ୍ଢା, ଛେଳି, ମଇଁଷି ହରିଣ ଆଦି ପଶୁମାନଙ୍କର ଅସ୍ଥ୍ୟଂଶମାନ ମିଳୁଥିବାରୁ ଏହି ଲୋକମାନେ ସଂପୃକ୍ତ ପଶୁମାନଙ୍କର ମାଂସ ଖାଉଥିବାର ସୂଚନା ମିଳେ । ଏହି ପଶୁମାନଙ୍କୁ ସେମାନେ ପାଳୁଥିବା ସମ୍ଭବ । ଏମାନଙ୍କ ବ୍ୟତୀତ ହାତୀ, ବଳଦ, ଗଣ୍ଡାର ଆଦି ପଶୁମାନଙ୍କ ସହିତ ଏମାନେ ମଧ୍ୟ ଖୁବ୍ ପରିଚିତ ଥିଲେ । ଇନାମଗାଁରେ ମିଳିଥିବା ତାମ୍ରନିର୍ମିତ ଏହି ପଶୁମାନଙ୍କର ମୂର୍ତ୍ତି ଏହାର ପ୍ରମାଣ ଦିଏ । ଦୁଇଟି ବଳଦଦ୍ୱାରା ଚାଳିତ ଦୁଇ ଚକ ବିଶିଷ୍ଟ ଏକ ତାମ୍ରନିର୍ମିତ ଅଦ୍ଭୁତ ରଥର ସନ୍ଧାନ ସେହି ଇନାମଗାଁ ଠାରେ ମଧ୍ୟ ମିଳିଛି । ଏହି ରଥରେ ଜଣେ ବ୍ୟକ୍ତି ଦଣ୍ଡାୟମାନ ।

ଏମାନଙ୍କର ସ୍ଥାପତ୍ୟକଳା ଏବଂ କାରିଗରୀ ବିଦ୍ୟା ମଧ୍ୟ ସେହି କାଳକୁ ଦୃଷ୍ଟିରେ ଥିଲା ଯଥେଷ୍ଟ ଉନ୍ନତ । ବିଭିନ୍ନ ଅଞ୍ଚଳରୁ ମିଳୁଥିବା ଚିତ୍ରିତ ମୃଣ୍ମୟ ପାତ୍ରମାନ ଏମାନଙ୍କ କଳାତ୍ମକ ପ୍ରତିଭାର ଅଭିପ୍ରକାଶର ନିଦର୍ଶନ । ଦାଇମାବାଦରୁ ମିଳିଥିବା କେତେକ ପାତ୍ରରେ ବହୁ କାଳ୍ପନିକ ପଶୁପକ୍ଷୀମାନଙ୍କର ଚିତ୍ର ଖୁବ୍ ମନୋରମ ଭାବରେ ଅଙ୍କିତ । ଏହା ଏମାନଙ୍କର କାଳ୍ପନିକ ମାନସିକତାର ସୂକ୍ଷ୍ମତା ସମ୍ପର୍କୀୟ ସଚେତନା ବିଷୟରେ ସମ୍ୟକ୍ ସୂଚନା ଦେଇଥାଏ । ଇନାମଗାଁରୁ ମିଳିଥିବା ତାମ୍ରନିର୍ମିତ ଗଣ୍ଡାର, ହାତୀ, ମଇଁଷି ଓ ଘୋଡ଼ାର ମୂର୍ତ୍ତିମାନ ମସୃଣ ହେବା ସଙ୍ଗେ ସଙ୍ଗେ ଖୁବ୍ ଜୀବନ୍ତ ମଧ୍ୟ ହୋଇ ଉଠିଛନ୍ତି । ପ୍ରାୟ ପ୍ରତିଟି ଅଞ୍ଚଳରେ ତାମ୍ରନିର୍ମିତ ଟଙ୍କା ଓ ଅନ୍ୟାନ୍ୟ ଯେଉଁ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନ ମିଳୁଛି, ତହିଁରୁ ଅନୁମିତ ହୁଏ ଯେ, ସେ ସମୟରେ ଏହି କାରିଗରୀ ବିଦ୍ୟାରେ ଏମାନେ ଖୁବ୍ ନୈପୁଣ୍ୟ ହାସଲ କରିଥିଲେ । ପ୍ରସ୍ତର ନିର୍ମିତ ହାତ ହତିଆର ଓ ଅନ୍ୟାନ୍ୟ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନ ଅବଶ୍ୟ ଏହି ସ୍ଥାନମାନଙ୍କରେ ମିଳୁଛି; କିନ୍ତୁ ସେଗୁଡ଼ିକର ସଂଖ୍ୟା ଖୁବ୍ କମ୍ । ପ୍ରସ୍ତର ନିର୍ମିତ ଯେଉଁ ବସ୍ତୁଗୁଡ଼ିକ ମିଳୁଛି, ସେଥିରେ ଯଥେଷ୍ଟ ମସୃଣତା ଓ ଉତ୍କର୍ଷତା ଲକ୍ଷ୍ୟ କରାଯାଏ । ଏ ପ୍ରକାର ମିଶ୍ରିତ ବସ୍ତୁମାନ ମିଳୁଛି କେବଳ ଏହି ସଂସ୍କୃତିର ପ୍ରାଥମିକ କାଳରେ; କିନ୍ତୁ ପରବର୍ତ୍ତୀ କାଳରେ ପ୍ରସ୍ତର ନିର୍ମିତ ବସ୍ତୁମାନ ପ୍ରାୟ ଲୋପ ପାଇଯାଇଛି ।

ଏହି ହେଲା ଦକ୍ଷିଣ ଓ ପୂର୍ବଭାରତରେ ଗଢି ଉଠିଥିବା ତାମ୍ରପ୍ରସ୍ତର ଯୁଗୀୟ ସଂସ୍କୃତିର ଏକ ସ୍ଥୂଳ ରୂପରେଖ । କିନ୍ତୁ ଏହା ଦୀର୍ଘ ସମୟ ଧରି ଥିବାରୁ ( ଖ୍ରୀ: ପୂ: ୨୦୦୦ରୁ ଖ୍ରୀ. ପୂ. ୭୦୦ ପର୍ଯ୍ୟନ୍ତ) ଏବଂ ବିସ୍ତୃତ ଅଞ୍ଚଳ ଧରି ଏହାର ବ୍ୟାପ୍ତି ଥିବା ଦୃଷ୍ଟିରୁ ଏହା ମହାଭାରତୀୟ ସଂସ୍କୃତି ଉପରେ ଯଥେଷ୍ଟ ପ୍ରଭାବ ପକାଇଥିବା ସ୍ୱାଭାବିକ । ସିନ୍ଧୁ-ସଂସ୍କୃତିର ଭଙ୍ଗ ପର୍ଯ୍ୟାୟଠାରୁ ଆରମ୍ଭ କରି ବୈଦିକଯୁଗର ଠିକ୍ ପୂର୍ବବର୍ତ୍ତୀ ଉପନିଷଦ ଯୁଗ ପର୍ଯ୍ୟନ୍ତ ଏହାର ଥିଲା କାଳଗତ ବ୍ୟାପ୍ତି । ସେହି ଦୃଷ୍ଟିରୁ ଏହା ଭାରତଭୂମିରେ ବିଭିନ୍ନ ସାଂସ୍କୃତିକ ସଂଘର୍ଷରେ ଅଂଶଗ୍ରହଣ କରିବାର ସୁଯୋଗ ପାଇ ଆସିଛି । ଏହା ଆର୍ଯ୍ୟେତର ସଂସ୍କୃତି ହେଲେ ମଧ୍ୟ ପରବର୍ତ୍ତୀ କାଳରେ ଏହା ଆର୍ଯ୍ୟ ସଂସ୍କୃତିକୁ ତଥା ମହାଭାରତୀୟ ସଂସ୍କୃତିକୁ ଅନେକ ବିଷୟରେ ପ୍ରଭାବିତ କରି ଆସିଛି । ପିତୃପୁରୁଷମାନଙ୍କୁ ଶ୍ରାଦ୍ଧ ଦେବା ଓ ଆହୁ କେତେକ ପାରଲୌକିକ ଓ ଅନ୍ୟ ଧାରଣା ଆଦି ଏହି ଆର୍ଯ୍ୟେତର ସଂସ୍କୃତି ଦ୍ୱାରା ଯେ ଅନୁପ୍ରେରିତ ଏଥିରେ ସନ୍ଦେହ ନାହିଁ । ଏହି ଦୃଷ୍ଟିରୁ ବିଚାର କଲେ ଭାରତର ମହାନ୍ ସାଂସ୍କୃତିକ ପରମ୍ପରା ବିଷୟରେ ଅନୁଧ୍ୟାନ ଅବସରରେ ଏଂସିତ ସଂସ୍କୃତିର ଗୁରୁତ୍ୱ ବହୁତ । ତେଣୁ ଏଥି ପ୍ରତି ସମ୍ୟକ୍ ଦୃକ୍‌ପାତ କରିବା ସ୍ମରଣୀୟ ।

## ଗ୍ରନ୍ଥସୂଚୀ

୧-H. D. Sankalia : Prehistory and Protohistory in India and Pakistan ( 1962 ) : p. 201.

୨-Cultural Forum, 1961 December : Article by B. B. Lal "Excavations since Independence" p. 24.

୨କ-Bridget and Raymond Allchin : The Rise of Civilisation in India and Pakistan ; p. 273.

୩-ଅମଳାନନ୍ଦ ଘୋଷ : ଭାରତୀୟ ପ୍ରତ୍ନତତ୍ତ୍ୱ (କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଓଡ଼ିଆ ଅନୁବାଦ) ; ପୃ 27 ଏବଂ Burial Practices in Ancient India : Purusottam Singh : pp. 55, 65-66.

୪-Purusottam Singh : op cit : pp. 55-56.

୫-K. A. R. Kennedy and K. C. Malhotra : Human Skeletal Remains from Chalcolithic and Indo-Roman Levels from Nevasa : An Anthropometric and Comparative Analysis (1966). pp. 120-121.

୬-H. D. Sankalia : Human Skeletal Remains from Nevasa. (1966) Foreward.

୭-Purusottam Singh : op cit ; p-57.

୮-ସାର୍ ମର୍ଟିମର ହୁଇଲରଙ୍କ ନେତୃତ୍ୱରେ ୧୯୩୭ରୁ ୧୯୪୬ ମଧ୍ୟରେ ହରପ୍ପାର ଯେଉଁ କବରସ୍ଥାନର ସନ୍ଧାନ ମିଳିଥିଲା, କାଳ ଦୃଷ୍ଟିରୁ ବସ୍ତୁବାଦୀ ଗବେଷକମାନେ ଏହାକୁ R-37 କବରସ୍ଥାନ ବୋଲି କହୁଥାନ୍ତି । ୧୯୩୮ ମସିହାରେ ସାର୍ ଯେଉଁ ପାଞ୍ଚ କବରମାନ ହରପ୍ପାର ଅନ୍ୟ ଏକ ସ୍ଥାନରେ ଆବିଷ୍କାର କରିଥିଲେ ତାହା ପରବର୍ତ୍ତୀ କାଳରେ ଏବଂ R 37 କବରସ୍ଥାନର ଉପର ସ୍ତରରେ ଅବସ୍ଥିତ । ତାହାକୁ ଗବେଷକ ମାନେ Cemetery H କବରସ୍ଥାନ ବୋଲି କହୁଥାନ୍ତି ।

୯-Lewis Mumford : City Invincible : Chicago (1960) pp. 226-227.

୧୦-Purusottam Singh : op. cit : p. 5.

୧୦-କ-Bridget and Raymond Allchin : op cit : p. 309,

୧୧. E. O. James Prehistoric Religion . London (1957) p. 134.

୧୨-Ibid p. 47 and Dakhinaranjan Sastri : Development of the Rituals of Ancient Worship in India (1963), Introduction.

୧୨-କ-Bridget and Raymond Allchin op. cit. pp. 277-278.

୧୩-Bridget and Raymond Allchin : op cit. p-276.

୧୪-The Cultural Heritage of India . Vol-I Article by Suniti Kumar Chattejee "Contributions from Different Cultural Groups. p. 81.

୧୫-ଏ ସମ୍ପର୍କରେ ପ୍ରତ୍ନତତ୍ତ୍ୱବତ୍ ଆଲ୍‌ଚିନ୍ ଦମ୍ପତିଙ୍କ ନିମ୍ନଲିଖିତ ଯଥାର୍ଥ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ :

"Archaelogy can still tell us a little of the religion of the non-literate stages of society, and in a real sense the history of Indian religion only begins with the Rig-Veda. But religion has a prehistory and archaeology can and does afford some evidence of its nature."

୧୬-ସୁରେନ୍ଦ୍ରନାଥ ଶତପଥୀ ( ସମ୍ପାଦିତ ) ଛନ୍ଦୋପନିଷଦ, ୩ ; ପୃ. ୨୧ ।

୧୭-D. D. Kosambi : The Culture and Civilisation of Ancient India in Historical Outline (1977) p. 70.

୧୮-Purusottam Singh : op. cit : pp. 56-57.

୧୯-ଆଲଚିନ୍ ଦମ୍ପତି ଏ ସମ୍ପର୍କରେ କହିଛନ୍ତି :

"Interestingly, there are some suggestions that some form of limited irrigation was employed here."

ଦେଖନ୍ତୁ Bridget and Raymond Allchin. op. cit : p. 273.

୨୦-Purusottam Singh. : op. cit : p. 56.



## ନବମ ପରିଚ୍ଛେଦ

# ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତି

ତାମ୍ରାଶ୍ମଯୁଗୀୟ ସଭ୍ୟତା (Chalcolithic Civilization) ପରେ ଭାରତର ବିଶେଷ କରି ଦକ୍ଷିଣ ଭାରତରେ ଗୋଟିଏ ନୂତନ ସଭ୍ୟତାର ଅଭ୍ୟୁଦୟ ହୋଇଥିଲା । ଏହାର ବିଶେଷତ୍ୱ ଥିଲା ମୃତବ୍ୟକ୍ତିଙ୍କୁ ଏକ ନିର୍ଦ୍ଦିଷ୍ଟ ପଦ୍ଧତିରେ କବର ଦେବା ପ୍ରଥାର ଅବଲମ୍ବନ । ଏଥିରେ ଶବଗୁଡ଼ିକୁ ଖୋଲାଭାବରେ କବର ଦିଆଯାଉଥିଲା, କିମ୍ବା ଶବଗୁଡ଼ିକର ଅସ୍ଥି ର କେତେକାଂଶକୁ ପୋତି ଦିଆଯାଉଥିଲା । ସମାଧି ଉପରେ ବଡ ବଡ଼ ପଥରମାନ (Megaliths) ପୋତି ଦିଆଯାଉଥିଲା । ତା' ଚାରିପଟେ ମଧ୍ୟ ବୃତ୍ତାକାରରେ ବଡ଼ ବଡ ପଥରମାନ ପୋତିଦିଆ ଯାଉଥିଲା । ଏହି ସ୍ଥାପତ୍ୟକୁ କୁହାଯାଏ ବୃହତ୍ ପ୍ରସ୍ତରଯୁଗୀୟ ସ୍ଥାପତ୍ୟ ଏବଂ ଏହି ସଂସ୍କୃତିକୁ କୁହାଯାଏ ବୃହତ ପ୍ରସ୍ତରଯୁଗୀୟ ସଂସ୍କୃତି (Megalithic Culture) । ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦୀର ପ୍ରଥମ କେତେ ଶତାବ୍ଦୀ ମଧ୍ୟରେ ଲୌହର ଆବିଷ୍କାର ଫଳରେ ଏହା ଅସ୍ତ୍ରଶସ୍ତ୍ର, ଗୃହୋପକରଣ ଆଦିର ପ୍ରସ୍ତୁତି ଲାଗି ଏକ ପ୍ରଧାନ ଧାତୁ ରୂପେ ଗଣ୍ୟ ହେବା ଯୋଗୁଁ ମାନବର ସାମଗ୍ରିକ ଜୀବନଧାରଣ ପ୍ରଣାଳୀରେ ଯେଉଁ ଅଭୂତପୂର୍ବ ପରିବର୍ତ୍ତନର ସୂତ୍ରପାତ ହୋଇଥିଲା, ତାହା ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତିରେ ବାସ୍ତବିକ ସମ୍ୟକ୍ ଭାବରେ ପ୍ରତିଫଳିତ । ଏହି ସଂସ୍କୃତି ସହିତ ସମ୍ପର୍କିତ ଅସଂଖ୍ୟ କବରମାନଙ୍କରୁ ମିଳୁଥିବା ମାନବାସ୍ଥି ର ଧ୍ୱଂସାବଶେଷ, ମୃତବ୍ୟକ୍ତିଙ୍କ ଲାଗି ଅର୍ପିତ ହୋଇଥିବା ଅଳଙ୍କାର ଓ ଅନ୍ୟାନ୍ୟ ନିତ୍ୟ-ବ୍ୟବହାର୍ଯ୍ୟ ସାମଗ୍ରୀମାନ ଏହି ସଂସ୍କୃତିର ମୂକ ସାକ୍ଷୀ ରୂପେ ଅଦ୍ୟାପି ବିଦ୍ୟମାନ ।

ଏହି ସଂସ୍କୃତିର ସ୍ରଷ୍ଟା କିଏ ସେ ବିଷୟରେ ତତ୍ତ୍ୱବିତ୍‌ମାନେ ଏ ପର୍ଯ୍ୟନ୍ତ ସ୍ଥିରମତ ନୁହନ୍ତି । ସିନ୍ଧୁ ସଂସ୍କୃତି କିମ୍ବା ବୈଦିକ ସଂସ୍କୃତି କିମ୍ବା ଶାବର ସଂସ୍କୃତି ସହିତ ଏହା ପ୍ରାୟ ମେଳ ଖାଉନାହିଁ । ଅତଏବ, ଏହାର ସ୍ରଷ୍ଟା ନିଶ୍ଚିତ ଭାବରେ ବହିରାଗତ ବୋଲି ପ୍ରାୟ ସକଳ ତତ୍ତ୍ୱବିତ୍‌ଙ୍କ ମତ । ସେମାନଙ୍କ ମତରେ ଏମାନେ ଆଫ୍ରିକା ମହାଦେଶରୁ ଜଳପଥରେ ଭାରତକୁ ଆସିଥିବାର ସମ୍ଭାବନା । ଏମାନେ ପ୍ରଥମେ ଦକ୍ଷିଣ ଭାରତର ଉପକୂଳରେ ଅବତରଣ କରି କ୍ରମେ କ୍ରମେ ମହାରାଷ୍ଟ୍ର ଓ ମଧ୍ୟପ୍ରଦେଶ ଆଡ଼କୁ ଗତି କରିଥିବେ ଏବଂ କାଳକ୍ରମେ ଏହି ସଂସ୍କୃତି ଦେଶୀୟ ସଂସ୍କୃତିର ମହାସ୍ରୋତରେ ନିଜକୁ ହଜାଇ ଦେଇଥିବ । ବାସ୍ତବିକ ଆମେ ଏହି ସଂସ୍କୃତିର ଶେଷ ଚିହ୍ନ ପାଉଥାଉଁ

ତରୁଚରପଲ୍ଲୀର ଉଗାଯୂପୁରଠାରେ ଯେଉଁଠାରେ ମିଳିଥିବା କୃଷ୍ଣ-ଲୋହିତ ମୃଣ୍ମୟ ପାତ୍ରର ଅବଶେଷକୁ ରେଡ଼ିଓ କାର୍ବନ ପରୀକ୍ଷା ଫଳରେ ଖ୍ରୀଷ୍ଟପର ଷଷ୍ଠ ଶତାବ୍ଦୀରେ ସ୍ଥାନିତ କରାଯାଇ ପାରିଛି । (୧) ନିକଟ ଅତୀତରେ ବି. ବି. ଲାଲ୍‌ଙ୍କ ନେତୃତ୍ୱରେ ଇଲାହାବାଦର ଟ୍ରମାହ୍‌ଠାରେ କେତେକ ବୃହତ୍ ପ୍ରସ୍ତରଯୁଗୀୟ କବର ଖୋଳାଯାଇଥିଲା । ତହିଁରୁ ବାହାରିଥିବା ଅବଶେଷମାନଙ୍କର ଦକ୍ଷିଣ ଭାରତୀୟ ବୃହତ୍ ପ୍ରସ୍ତରଯୁଗୀୟ ଅବଶେଷମାନଙ୍କ ସହିତ ଅନେକାଂଶରେ ସୌସାଦୃଶ୍ୟ ରହିଛି । ଉଭୟ ସ୍ଥଳର ମୃଣ୍ମୟ ପାତ୍ରଗୁଡ଼ିକର ଗଠନମାନ ପୂରାପୂରି ମେଳ ଖାଇ ଯାଉଛି । ବାହମ୍ ମଧ୍ୟ ଏହି ମତ ପୋଷଣ କରି ସ୍ପଷ୍ଟ ଭାବରେ କହିଛନ୍ତି ଯେ ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତିର ସ୍ରଷ୍ଟାମାନେ ପଶ୍ଚିମ-ସାଗର ଦେଇ ଖ୍ରୀ; ପୂ: ୫୦୦ ଶତାବ୍ଦୀରେ ଭାରତଭୂମିରେ ପଦାର୍ପଣ କରିଥିଲେ । ତାଙ୍କ ମତରେ ସେହିମାନେ ହିଁ ହେଉଛନ୍ତି ଦ୍ରାବିଡ଼ । (୧-କ) ପ୍ରତ୍ନତତ୍ତ୍ୱବିତ୍ ହେମେନ୍‌ଡର୍ଫଙ୍କର ମଧ୍ୟ ଏହାହିଁ ମତ (୧-ଖ) । ଏହି ଦୃଷ୍ଟିରୁ ବିଚାର କଲେ ଦକ୍ଷିଣ ଭାରତର ବୃହତ ପ୍ରସ୍ତରଯୁଗୀୟ ସଭ୍ୟତାର ସ୍ରଷ୍ଟାମାନେ ଆଫ୍ରିକା ମହାଦେଶରୁ ଏ ଦେଶକୁ ଖ୍ରୀ: ପୂ: ୫୦୦ ଶତାବ୍ଦୀରେ ଆସିଥିବା କଥାଟି ଅସମ୍ଭବ ହୋଇ ନପାରେ । (୨)

ଏହି ସଂସ୍କୃତିର କାଳ ବିଷୟରେ ମଧ୍ୟ ନାନା ମତ ବିଦ୍ୟମାନ । ପୂର୍ବେ ପ୍ରତ୍ନ-ତତ୍ତ୍ୱବିତ୍‌ମାନେ ଏହାର କାଳକୁ ଖ୍ରୀ. ପୂ. ୫୦୦ ଶତାବ୍ଦୀରୁ ଖ୍ରୀ. ପୂ. ୧ମ ଶତାବ୍ଦୀ ମଧ୍ୟରେ ସ୍ଥାନିତ କରୁଥିଲେ । ଅମଳାନନ୍ଦ ଘୋଷଙ୍କର ଏହାହିଁ ମତ । (୩) କର୍ଣ୍ଣାଟକର ବ୍ରହ୍ମଗିରି ଓ ମାସ୍କିରେ ତାମ୍ରାଶ୍ମଯୁଗୀୟ ସଭ୍ୟତାର ଉପର ସ୍ତରରେ ବୃହତ୍ ପ୍ରସ୍ତରଯୁଗୀୟ ସଭ୍ୟତାର ଧ୍ୱଂସାବଶେଷ ବିଦ୍ୟମାନ ଏବଂ ଏହାର ଠିକ୍ ଉପର ସ୍ତରରେ ଖ୍ରୀଷ୍ଟାବ୍ଦ ପ୍ରଥମ ଶତାବ୍ଦୀର ସାତବାହନମାନଙ୍କ ସମସାମୟିକ ସଭ୍ୟତାର ଧ୍ୱଂସାବଶେଷ ବିଦ୍ୟମାନ । ଶେଷୋକ୍ତ ସଭ୍ୟତାର ବୈଶିଷ୍ଟ୍ୟମାନଙ୍କ ମଧ୍ୟରେ ଲୋହିତ ଲାଲରଙ୍ଗର ମୃଣ୍ମୟ ପାତ୍ର ଉପରେ ଧଳାରଙ୍ଗର ରେଖାଚିତ୍ର ଅନ୍ୟତମ । ଏହିଭଳି ରେଖାଚିତ୍ରା-ଙ୍କିତ ମୃଣ୍ମୟ ପାତ୍ରର ଅବଶେଷମାନ ଉପରୋକ୍ତ ସ୍ଥାନ ଦୁଇଟିରୁ ମିଳିଛି । ଏହି ପ୍ରମାଣକୁ ଭିତ୍ତି କରି ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତିକୁ ପୂର୍ବେ ଖ୍ରୀ: ପୂ. ୫୦୦ ଶତାବ୍ଦୀରୁ ଖ୍ରୀଷ୍ଟାବ୍ଦ ୧୦୦ ଶତାବ୍ଦୀ ମଧ୍ୟରେ ସ୍ଥାନିତ କରାଯାଉଥିଲା । କିନ୍ତୁ ବର୍ତ୍ତମାନ ପୂର୍ବ କଥିତ ଉଗାୟୂପୁରସ୍ଥ (ତରୁଚରପଲ୍ଲୀରେ) ବୃହତ୍ ପ୍ରସ୍ତରଯୁଗୀୟ ସଭ୍ୟତାର ଧ୍ୱଂସାବଶେଷକୁ ଅଙ୍ଗାର ପରୀକ୍ଷା ଦ୍ୱାରା ଖ୍ରୀ. ଅ. ୬୦୦ ଶତାବ୍ଦୀରେ ସ୍ଥାନିତ କରିବା ଫଳରେ ଏ ଧାରଣା ବଦଳି ଯାଇଛି । ତା'ଛଡ଼ା ତାମିଲ ଭାଷାରେ ରଚିତ 'ମଣିମେଖଲାଇ' ( ୬ଷ୍ଠ ଶତାବ୍ଦୀ ) ନାମକ ଗ୍ରନ୍ଥରୁ ଜଣାଯାଏ ଯେ ସେତେବେଳେ ନିର୍ଦ୍ଦିଷ୍ଟ କେତେକ ଗୋଷ୍ଠୀ ଦ୍ୱାରା ଏହି ପଦ୍ଧତିରେ କବର ଦିଆଯାଉଥିଲା । (୪) ଅତଏବ, ଏଥିରୁ ପ୍ରମାଣିତ ହେବ ଯେ ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତି ଖ୍ରୀ. ପୂ. ୫ମ ଶତାବ୍ଦୀରୁ ଆରମ୍ଭ କରି ଖ୍ରୀଷ୍ଟୀୟ ୬ଷ୍ଠ

ଶତାବ୍ଦୀ ପର୍ଯ୍ୟନ୍ତ ଦୀର୍ଘ ୧୧୦୦ ବର୍ଷ ଧରି ଦକ୍ଷିଣ ଭାରତକୁ ଆଚ୍ଛନ୍ନ କରି ରଖିଥିଲା । ପୂର୍ବ କଥିତ ମତରେ ଏହା କ୍ରମେ କ୍ରମେ ସ୍ଥାନୀୟ ସଂସ୍କୃତିର ସଂପର୍କରେ ଆସିବା ପରେ ସେହି ମହାସ୍ରୋତରେ ନିଜକୁ ବିଲୀନ କରି ଦେଇଥିଲା ।

ଭାରତୀୟ ବୃହତ୍ ପ୍ରସ୍ତରଯୁଗୀୟ ସଭ୍ୟତା ସମ୍ପର୍କୀୟ ଗବେଷଣା ପ୍ରାୟ ବିଗତ ଶହେ ବର୍ଷରୁ ଅଧିକ କାଳ ଧରି ଚାଲିଆସୁଛି । ସର୍ବପ୍ରଥମେ ଏହା ପାଶ୍ଚାତ୍ୟ ଗବେଷକ ବାବିଂଟନ୍‌ଙ୍କ ( ୧୮୦୪ ) ଦୃଷ୍ଟି ଆକର୍ଷଣ କରିଥିଲା । ସେ କର୍ଣ୍ଣାଟକର ପୁଲକୋଣ୍ଡା ଠାରେ ଏହି ସଭ୍ୟତାର ଧ୍ୱଂସାବଶେଷ ଆବିଷ୍କାର କରିଥିଲେ । ତା'ପରେ କର୍ଣ୍ଣେଲ ମିଡ଼ୋସ ( Meadows ) ୧୮୮୭ ମସିହାରେ ଏହି ସଭ୍ୟତା ଯେ ସ୍କିଥୀୟମାନଙ୍କ (Scythian) ସଭ୍ୟତାର ଏକ ପ୍ରତିରୂପ, ତାହା ପ୍ରମାଣ କରିବାର ଉଦ୍ୟମ କରିଥିଲେ । ବୃହତ୍ ପ୍ରସ୍ତରଯୁଗୀୟ କବରମାନଙ୍କର ଖନନ ଫଳରେ ଯେଉଁ ନରକଙ୍କାଳମାନ ମିଳିଛି, ସେଗୁଡ଼ିକୁ ଅନୁଧ୍ୟାନ କରିବା ଦ୍ୱାରା ଏଥିରେ ଯେଉଁ ତିନିଗୋଟି ଜାତିର ନରକଙ୍କାଳମାନ ପରିଦୃଶ୍ୟମାନ ତନ୍ମଧ୍ୟରେ ସ୍କିଥୀୟ-ଇରାନୀୟମାନଙ୍କର ନରକଙ୍କାଳ ଅନ୍ୟତମ । ଅନ୍ୟ ଦୁଇଟି ଜାତି ହେଲେ ଭୂମଧ୍ୟସାଗରୀୟ ଓ ଅଷ୍ଟ୍ରାଲଏଡ । ଶେଷୋକ୍ତ ଜାତି ସ୍ଥାନୀୟ ଏବଂ ଏମାନଙ୍କୁ ସ୍ଥାନୀୟ ନୂତନ ପ୍ରସ୍ତରଯୁଗୀୟ ଅଧିବାସୀମାନଙ୍କ ସହିତ ସମ୍ପର୍କିତ କରାଯାଇ ପାରେ । କିନ୍ତୁ ପ୍ରଥମୋକ୍ତ ଜାତି ନିଶ୍ଚିତ ଭାବରେ ବିଦେଶୀୟ । (୫) ଇରାନ୍, ସାଉଦି ଆରବିଆ, ଆଫଗାନିସ୍ଥାନ, ପଶ୍ଚିମ ପାକିସ୍ଥାନ ଆଦି ଅଞ୍ଚଳମାନଙ୍କରେ ବ୍ୟାପକ ଭାବରେ ଖନନ କାର୍ଯ୍ୟ କରାଯାଇ ସେଠାରେ ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତିର ଅବଶେଷ ଆବିଷ୍କୃତ ହେଲେ ଯାଇ ଇରାନ୍ ଅଞ୍ଚଳରୁ ଏହି ସଂସ୍କୃତି କ୍ରମବିସ୍ତାରରେ ଦକ୍ଷିଣଭାରତକୁ ବ୍ୟାପ୍ତ ହୋଇଛି ବୋଲି ସଠିକ୍ ଧାରଣା କରାଯାଇ ପାରିବ । ସେଭଳି ବ୍ୟାପକ ଖନନକାର୍ଯ୍ୟ କିନ୍ତୁ ଏ ପର୍ଯ୍ୟନ୍ତ କରାଯାଇ ନାହିଁ । ଅବଶ୍ୟ ପାରସ୍ୟ ଉପସାଗରୀୟ ବାହେରିନ୍ ଦ୍ୱୀପପୁଞ୍ଜରେ ବୃହତ୍ ପ୍ରସ୍ତର ଯୁଗୀୟ କବରର ଧ୍ୱଂସାବଶେଷ ମିଳିଛି । ଏହା ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତିର ଅଧିକାରୀମାନଙ୍କ ସ୍କିଥୀୟ-ଇରାନୀୟ ଉତ୍ପତ୍ତିର ଏକ କ୍ଷୀଣ ପ୍ରମାଣ ଯୋଗାଇବାରେ ସମର୍ଥ । (୫-କ) ଏହି ସଂସ୍କୃତିର ସ୍ରଷ୍ଟା ଆଫ୍ରିକାରୁ ଆସିଛନ୍ତି କିମ୍ବା ସ୍କିଥିଆଇରାନ ଅଞ୍ଚଳରୁ ଆସିଛନ୍ତି. ଏ ବିଷୟରେ ଉଭୟ ପକ୍ଷବାଦୀଙ୍କର ବଳିଷ୍ଠ ପ୍ରମାଣମାନ ରହିଅଛି । ଏଣୁ ଏ ସମ୍ପର୍କରେ ବର୍ତ୍ତମାନ ଅବସ୍ଥାରେ କିଛି ସ୍ଥିର ମତ ଦେଇ ହେବନାହିଁ । ତେବେ ଏକଥା ନିର୍ବିବାଦ ସତ୍ୟ ଯେ ଏ ସଂସ୍କୃତିର ସ୍ରଷ୍ଟା ହେଉଛନ୍ତି ବହିରାଗତ ଏକ ଜାତି ।

୧୮୪୭ ମସିହା ପରେ ଏହି ସଂସ୍କୃତିରି ଗବେଷଣା କ୍ଷେତ୍ରରେ ଯେଉଁ ଦିଗ୍‌ଗଜ-ମାନଙ୍କର ଆବିର୍ଭାବ ହୋଇଥିଲା, ସେମାନଙ୍କ ମଧ୍ୟରେ ରିଭେଟ୍ କାର୍ନାକ୍ (Rivet-



ଦାକ୍ଷିଣାତ୍ୟର ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତି : ଦାଇମାବାଦ :
ତାମ୍ର ନିର୍ମିତ ଗଣ୍ଡାର



ଦାକ୍ଷିଣାତ୍ୟର ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତି : ଦାଇମାବାଦ :
ତାମ୍ରନିର୍ମିତ ମହିଷ ମୂର୍ତ୍ତି



ଦାକ୍ଷିଣାତ୍ୟର ତାମ୍ର ପ୍ରସ୍ତର ଯୁଗୀୟ ସଂସ୍କୃତି ଦାଇମାବାଦ
ତାମ୍ରନିର୍ମିତ ହସ୍ତୀ ମୂର୍ତ୍ତି



ଦାକ୍ଷିଣାତ୍ୟର ତାମ୍ର ପ୍ରସ୍ତର ଯୁଗୀୟ ସଂସ୍କୃତି : ଲମ୍ବ
ଭାବରେ ଶାୟିତ ଶବର କକାଳ



ଦାକ୍ଷିଣାତ୍ୟର ତାମ୍ର ପ୍ରସ୍ତର ଯୁଗୀୟ ସଂସ୍କୃତ : ଦାଇମାବାଦ : ତାମ୍ର ନିର୍ମିତ ରଥ



ଦାକ୍ଷିଣାତ୍ୟର ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତ : ଟେକୱାଡ଼ା : ପାତ୍ର କବର ପଦ୍ଧତ



ଦାକ୍ଷିଣାତ୍ୟର ତାମ୍ରପ୍ରସ୍ତରଯୁଗୀୟ ସଂସ୍କୃତି
ଇନାମଗାଂ : ଗୋଟିଏ ଖପର୍ ଉପରେ ଖୋଳା-
ଯାଇଥିବା ଶଗଡ଼ର ଚିତ୍ର ।

Carnac ), କାଲ୍‌ଡୱେଲ୍ (Caldwell), ବସ୍‌ୱେଲ୍ (Boswell), ବର୍ଗେସ୍ (Burgess) ଆଦି ପ୍ରଧାନ । ଫର୍ଗୁସନ୍ ମଧ୍ୟ ୧୮୭୨ ମସିହାରେ ଏ ବିଷୟରେ ଗବେଷଣା କରି ଗବେଷଣାଲବ୍ଧ ତଥ୍ୟମାନ "Rude Stone Monuments of All Countries" ଶୀର୍ଷକ ପୁସ୍ତକରେ ପ୍ରକାଶ କରିଥିଲେ । କିନ୍ତୁ ୧୯୪୭ ମସିହାରେ ହିଁ ସାର ମର୍ଟିମର ହୁଇଲର କର୍ଣ୍ଣାଟକର ବ୍ରହ୍ମଗିରିଠାରେ ଯେଉଁ କବର ଖନନ କାର୍ଯ୍ୟ କଲେ, ତାହା ଫଳରେ ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତି ବିଷୟରେ ଅନେକ କିଛି ତଥ୍ୟ ଜଣା ପଡ଼ିଲା । ଏହା ପରେ ପରେ ଦକ୍ଷିଣଭାରତର ଅନ୍ୟାନ୍ୟ ସ୍ଥାନ ମାନଙ୍କରେ ଖନନକାର୍ଯ୍ୟ ଚାଲିଲା ଏବଂ ବିଭିନ୍ନ ସ୍ଥାନମାନଙ୍କରେ ମିଳୁଥିବା ଧ୍ୱଂସାବଶେଷକୁ ସମସ୍ୟାନୁକ୍ରମରେ ସଜ୍ଜିତ କରାଯାଇ ପାରିଲା ସଙ୍ଗେ ସଙ୍ଗେ ଏହାକୁ ନୂତନ ପ୍ରସ୍ତର ଯୁଗର କାଳ ସହିତ ମଧ୍ୟ ସମସ୍ୟାନୁକ୍ରମେ ସଂଯୁକ୍ତ କରାଯାଇ ପାରିଲା ।

ବର୍ତ୍ତମାନ ଭାରତର ବିଭିନ୍ନ ରାଜ୍ୟମାନଙ୍କରେ କେଉଁ କେଉଁ ସ୍ଥାନରେ ଏହି ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତିର ଧ୍ୱଂସାବଶେଷମାନ ମିଳିଛି ସେ ବିଷୟ ବର୍ଣ୍ଣନୀୟ । ସେହି ସ୍ଥାନଗୁଡ଼ିକର ନାମ ନିମ୍ନରେ ପ୍ରଦତ୍ତ ହେଲା ।

| ରାଜ୍ୟର ନାମ | ସ୍ଥାନର ନାମ |
|---|---|
| ଆନ୍ଧ୍ର ପ୍ରଦେଶ | ଯେଲେଶ୍ୱରମ୍, ପୋଚମପାଡ଼୍, ନାଗାର୍ଜ୍ଜୁନ କୋଣ୍ଡା ଓ ପେଡାବାଙ୍କୁର |
| ତାମିଲନାଡ଼ୁ | ଅମୃତମଙ୍ଗଲମ୍, କୁନ୍ନାଟ୍ଟୁର ସାନୁର୍ ଓ ପାୟୁମ ପାଲ୍ଲୀ |
| କର୍ଣ୍ଣାଟକ | ବ୍ରହ୍ମଗିରି, ମାସ୍କି, କାଡ଼ଗେନାହଲ୍ଲି, ହାଲିଙ୍ଗଲି, ତେରଡ଼ାଲ୍ ଓ ହୁନୁର |
| କେରଳ | ପୋର୍‌କଲମ୍, ଚେନ୍ନୁଣ୍ଣାଷ୍ଟାମ୍, କୋଝିକୋଡ୍ ଓ ଚେଙ୍ଗାରମ୍ମୁ |
| ମହାରାଷ୍ଟ୍ର | ଜୁନାପାନି, ଡକଲଘାଟପା, ଗଙ୍ଗପୁର୍ ଓ ଥେଉର୍ |
| ମଧ୍ୟ ପ୍ରଦେଶ | ଧାନୋରା, ସରେଫା ଓ ଜବଲପୁର |

ଅବଶ୍ୟ ଓଡ଼ିଶାରେ ବୃହତ୍ ପ୍ରସ୍ତରଯୁଗୀୟ ସଭ୍ୟତାର ଧ୍ୱଂସାବଶେଷ ଅଛି କି ନାହିଁ ସେ ବିଷୟରେ ଏ ପର୍ଯ୍ୟନ୍ତ ବିଧିବଦ୍ଧ ଗବେଷଣା ମାଧ୍ୟମରେ କିଛି ଜଣାଯାଇ ନାହିଁ ।

ଭୁବନେଶ୍ୱରସ୍ଥ ରାଜଭବନ ପଛରେ ବହୁ ଅଞ୍ଚଳ ବ୍ୟାପି ପ୍ରାଂସ୍ତ ଚଣ୍ଡିଗିରି ପର୍ଯ୍ୟନ୍ତ କେତେକ ବୃହତ୍ତ ପ୍ରସ୍ତରଯୁଗୀୟ କବର ଭଳି କବରମାନ ରହିଥିଲା । ଏହା ସହର ମଧ୍ୟରେ ଥିବାରୁ ଏଥିରୁ ଅନେକ ଧ୍ୱସ୍ତ ବିଧ୍ୱସ୍ତ ହୋଇଗଲାଣି । ଏଗୁଡ଼ିକୁ ଖନନ କରିଥିଲେ ହୁଏତ କିଛି ତଥ୍ୟ ବାହାରି ପାରିଥାନ୍ତା । ଏହାଛଡ଼ା ଓଡ଼ିଶାର ପରଜା, କନ୍ଧ, ମୁଣ୍ଡା ଆଦି ଆଦିବାସୀ ଏବେ ମଧ୍ୟ ବଡ଼ ବଡ଼ ପଥରଖଣ୍ଡିମାନ କବର ଉପରେ ରଖିଥାନ୍ତି । ସେଗୁଡ଼ିକ ପ୍ରାୟ ବସ୍ତି ନିକଟରେ କୃଷି ପାଇଁ ଅନୁପଯୁକ୍ତ ଭୂମିରେ ଗୋଟିଏ ସ୍ଥାନରେ ଅବସ୍ଥିତ । ଏ ପ୍ରକାର କବର ଦେବା ପ୍ରଥାରେ ଯେ ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତିର ପ୍ରଭାବ ନ ପଡ଼ିଥିବ ତାହା କହି ହେବନାହିଁ । ଅନ୍ଧ୍ରପ୍ରଦେଶ ଓ ମଧ୍ୟପ୍ରଦେଶରେ ଯେତେବେଳେ ଏହି ସଂସ୍କୃତିର ଧ୍ୱଂସାବଶେଷ ମିଳୁଛି, ଏ ଦୁଇ ଭାଗର ମଧ୍ୟଭାଗରେ ଥିବା ଓଡ଼ିଶାରେ ଏହା ମିଳିବାରେ ଯଥେଷ୍ଟ ସମ୍ଭାବନା ଅଛି । ଅତଏବ ଏ ବିଷୟରେ ଅଧିକତର ଗବେଷଣା ହେବା ଆବଶ୍ୟକ ।

ଉପରୋକ୍ତ ସ୍ଥାନମାନଙ୍କରେ ଥିବା କବରଗୁଡ଼ିକର ଖନନ ଫଳରେ କେତେକ ସ୍ଥାନରେ ସମାନ ପ୍ରକାରର ବସ୍ତୁମାନ ମିଳିଛି ଏବଂ ଆଉ କେତେକ ସ୍ଥାନରେ ନୂତନ ପ୍ରକାରର ବସ୍ତୁମାନ ମିଳିଛି । ଏହି ସବୁ ବସ୍ତୁ ଗୁଡ଼ିକର ପରୀକ୍ଷାନିରୀକ୍ଷା ଓ ଅନୁଶୀଳନ ଫଳରେ ବୃହତ୍ ପ୍ରସ୍ତରଯୁଗୀୟ ଅଧିବାସୀମାନଙ୍କର ସାମାଜିକ ଜୀବନ, ଆଧ୍ୟାତ୍ମିକ ଜୀବନ, ସାଂସ୍କୃତିକ ଜୀବନ ଆଦି ବିଷୟରେ ଏକ ସ୍ଥୂଳ ଧାରଣା କରିଯାଇ ପାରିବ । ଅତଏବ, ଉକ୍ତ ବସ୍ତୁମାନଙ୍କ ଉପରେ ସାମାନ୍ୟ ଆଲୋକପାତ କରିବା ଆବଶ୍ୟକ । ତନ୍ମଧ୍ୟରୁ ପ୍ରଧାନ ପ୍ରଧାନ ବସ୍ତୁଗୁଡ଼ିକ ହେଲେ :

କ-ଲମ୍ବ ଭାବରେ ଶାୟିତ ଅବସ୍ଥାରେ କବର ଦିଆଯାଇଥିବା ମୃତବ୍ୟକ୍ତିଙ୍କ କଙ୍କାଳ;

ଖ-ଏହି ଭଳି ଭାବରେ ଯୁଗ୍ମ କବର ଦିଆଯାଇଥିବା ମୃତବ୍ୟକ୍ତିଙ୍କ କଙ୍କାଳ,

ଗ-ମୃତବ୍ୟକ୍ତିଙ୍କ ଶବକୁ ପଶୁପକ୍ଷୀଙ୍କ ଆହାର ଲାଗି କିଛି ଦିନ ଛାଡ଼ି ଦେବାପରେ ତହିଁରୁ ସଂଗୃହୀତ ହୋଇ ପରେ କବର ଦିଆଯାଇଥିବା ଅସ୍ଥିର ଅଂଶବିଶେଷ;

ଘ-ଏହିଭଳି ଭାବରେ ମାଟିର ପାତ୍ରମାନରେ କବର ଦିଆଯାଇଥିବା ଶିଶୁର ଅସ୍ଥି;

ଙ-ଆବରଣ ଥିବା ପଥରର ବାକ୍ସ ଯାହା କି ଶବାଧାର ରୂପେ ବ୍ୟବହୃତ;

ଚ-କେବଳ ମାଟି ଖୋଳି ତିଆରି କରାଯାଇଥିବା କବର;

ଛ-ଆବରଣ ଥିବା ପଥର ବାକ୍ସର ଚାରିପଟେ ବୃତ୍ତାକୃତିରେ ସଜା ହୋଇଥିବା ପଥରମାନ;

ଜ-ଚୁନ ପଥରରେ ତିଆରି ହୋଇଥିବା ଶବାଧାର;

ଝ-ମୃଣ୍ମୟ ପାତ୍ରରେ କବର ଦିଆଯାଇଥିବା ଅସ୍ଥି;

ଞ-କୃଷ୍ଣ ଓ ଲୋହିତ ମୃଣ୍ମୟ ପାତ୍ର;

ଟ-ଗୋଟିଏ ତମ୍ବା ବଲା;

ଠ-ଲୌହନିର୍ମିତ ବିଭିନ୍ନ ନିତ୍ୟବ୍ୟବହାର୍ଯ୍ୟ ଉପକରଣମାନ, ଯଥା : କୁରାଢି, ଦାଆ, କୋଦାଳ, ଖଣ୍ଡା ଇତ୍ୟାଦି;

ଡ-ଘୋଟକ ତଥା ଅନ୍ୟ ପଶୁ-ଅସ୍ଥି;

ଢ-ଗୋଟିଏ ପୂର୍ଣ୍ଣାଙ୍ଗ ଗୋଜାତୀୟ ପଶୁର କଙ୍କାଳ;

ଣ-ସୁନା ଓ ରୂପାର ମାଳ ଏବଂ ସୁନା ତାରରେ ତିଆରି କାନର ଫୁଲ୍;

ତ-ପୋହଳାର ମାଳ;

ଥ-ଶଙ୍ଖ ;

ଦ-କଜ୍ଜ୍ୱଳ ଲଗାଇବା ଲାଗି ତମ୍ବାର କାଠି;

ଧ-ତମ୍ବାର କାଚ,

ନ-ତମ୍ବାର ପାଦ-ବଲା;

ପ-ସାଧାରଣ କାଚ;

ଫ-ଶଙ୍ଖର ମାଳ;

ବ-ମୃଣ୍ମୟ କ୍ଷୁଦ୍ର ମାତୃଦେବୀଙ୍କ ମୂର୍ତ୍ତିମାନ, ଏବଂ

ଭ-ଚାଉଳ ଓ ଧାନ ।

ଏହି ସଂସ୍କୃତିର ଅଧିବାସୀମାନେ ସାଧାରଣତଃ ଥିଲେ କୃଷିଜୀବୀ ଏବଂ ଭାତ ଥିଲା ଏମାନଙ୍କର ପ୍ରଧାନ ଖାଦ୍ୟ । କର୍ଣ୍ଣାଟକର ଟଙ୍ଗଲେପୁର ଜିଲ୍ଲାସ୍ଥ କୁନ୍ନାଟ୍ଟୁରଠାରେ ଖନନ ଫଳରେ ସେଠାରୁ ଚାଉଳ ବାହାରିଛି ଏବଂ ସେହି ରାଜ୍ୟର ହେଗ୍‌ଗଡ଼େହାଟାଠାରେ କୁଣ୍ଡା ମଧ୍ୟ ବାହାରିଛି । (୭) ପରଲୋକରେ ବୋଧହୁଏ ସେମାନଙ୍କର ବିଶ୍ୱାସ ଥିଲା । ଏଣୁ ପରଲୋକଗତ ଆତ୍ମାର ବ୍ୟବହାର ଲାଗି ଅନ୍ୟାନ୍ୟ ବିଭିନ୍ନ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁ ମଧ୍ୟରେ ସେମାନେ କବର ମଧ୍ୟରେ ଚାଉଳ ରଖୁଥିଲେ । ସେମାନେ କୃଷିଜୀବୀ ଥିବାର ଆଉ ଗୋଟିଏ ପ୍ରମାଣ ହେଉଛି, କୃଷି ଉପଯୋଗୀ ଜମିର ଦୁର୍ବ୍ୟବହାର ଉପରେ ସେମାନଙ୍କର ଗୁରୁତ୍ୱ ଆରୋପ କରିବା । ଏହି ବୃହତ୍ ପ୍ରସ୍ତରଯୁଗୀୟ କବରଖାନା-ମାନ ସବୁବେଳେ ପଡ଼ିଆ ଓ ପାହାଡ଼ିଆ ଅଥବା ଜଙ୍ଗଲ ଜମିରେ ପରିଦୃଷ୍ଟ । କୋଣସି

ଗୋଟିଏ ସ୍ଥାନରେ ହେଲେ ମଧ୍ୟ ଏହା କୃଷି ଉପଯୋଗୀ ନମ୍ଭ ଭୂମିରେ ବିଦ୍ୟମାନ ନାହିଁ । ତାହା ଛଡ଼ା ତାମିଲନାଡୁରେ ଅନେକ ସ୍ଥାନରେ ସେମାନେ ପୁଷ୍କରିଣୀ ମାଧ୍ୟମରେ ଜଳସେଚନ କରୁଥିବାର ପ୍ରମାଣ ମଧ୍ୟ ମିଳେ । (୭) ଏହା ସେମାନଙ୍କର କୃଷି ସଚେତନତାର ସ୍ପଷ୍ଟ ନିଦର୍ଶନ ।

ଖାଦ୍ୟ ପାଇଁ ସେମାନେ ଯେ କେବଳ କୃଷି ଉପରେ ନିର୍ଭରଶୀଳ ଥିଲେ ତାହା ନୁହେଁ, ଶିକାର ଉପରେ ମଧ୍ୟ ସେମାନେ ସମଧିକ ନିର୍ଭରଶୀଳ ଥିଲେ । କବରମାନଙ୍କରୁ ମିଳୁଥିବା ଗୃହ, ମେଷ, ଅଶ୍ୱ, କୁକ୍‌କୁଟ, ଗୋରୁ ଆଦି ପଶୁଙ୍କର ଅସ୍ଥିମାନ ସେମାନେ ମାଂସାହାରୀ ଥିବାର ପ୍ରମାଣ ଦେଉଛି । ଅଶ୍ୱର ମାଂସ ଖାଇବା ସଙ୍ଗେ ସଙ୍ଗେ ସେମାନେ ବୋଧହୁଏ ତାକୁ ଯୁଦ୍ଧରେ କିମ୍ବା ଶିକାର ପଛରେ ଅନୁଧାବନ କରିବାରେ ବ୍ୟବହାର କରୁଥିଲେ । ଶ୍ୱାନର ବ୍ୟବହାର ମଧ୍ୟ ସେମାନେ ଜାଣିଥିବାର ପ୍ରମାଣ କବର ମଧ୍ୟରୁ ମିଳୁଥିବା ସେହି ଜାତୀୟ ପଶୁର ଅସ୍ଥିରୁ ଜଣାପଡୁଛି । ବର୍ତ୍ତମାନ ଆଦିବାସୀମାନେ ଶ୍ୱାନକୁ ଶିକାରରେ ବ୍ୟବହାର କରୁଥିଲା ଭଳି ସେତେବେଳେ ମଧ୍ୟ ଏମାନେ ତାହାର ଅନୁରୂପ ବ୍ୟବହାର କରୁଥିଲେ । ଅତଏବ ଶ୍ୱାନ ଓ ଅଶ୍ୱ ଉଭୟ ଥିଲେ ସେମାନଙ୍କ ଲାଗି ଶିକାର ପାଇଁ ସହାୟକ ଦୁଇଟି ପଶୁ ।

ବୃହତ୍ ପ୍ରସ୍ତର ସ୍ଥାପତ୍ୟର ନିର୍ମାତାମାନେ କିଭଳି ଘରେ ବସବାସ କରି ରହୁଥିଲେ ସେ ସମ୍ବନ୍ଧରେ ବିଶେଷ ତଥ୍ୟମାନ ଏ ପର୍ଯ୍ୟନ୍ତ ଅନାବିଷ୍କୃତ । ତେବେ ଯାହା ମିଳୁଛି, ସେଥିରୁ ଏହି ଧାରଣା କରାଯାଇ ପାରେ ଯେ ସେମାନଙ୍କର ବସ୍ତି ଅଞ୍ଚଳଟି ସାଧାରଣତଃ କବର ସ୍ଥାନର ତଳେ ରହୁଥିଲା । ପଯ୍ୟମପଲ୍ଲୀରେ (ଉତ୍ତର ଆର୍କଟ୍ ଜିଲ୍ଲା) ସେମାନଙ୍କର ଗୋଟିଏ ବସ୍ତି ଅଞ୍ଚଳର ଖନନ ଫଳରେ ଜଣାପଡୁଛି ଯେ ସେମାନେ ଗୋଲାକୃତିର ଏକ କୋଠରୀବିଶିଷ୍ଟ ଘରେ ରହୁଥିଲେ । ଏହି କୋଠରୀ ଗୁଡିକର ବ୍ୟାସ ଥିଲା ସାଧାରଣତଃ ଦେଢ଼ ମିଟରରୁ ତିନି ମିଟର ଭିତରେ । ଘରର ଚଟାଣକୁ ପଥର ଗୋଟି ପକାଇ ତିଆରି କରାଯାଉଥିଲା ଏବଂ ସେଥିରେ ସାମାନ୍ୟ ମସୃଣତା ଆଣିବା ପାଇଁ ତା' ଉପରେ ମୁରମ ବିଛାଇ ଦିଆଯାଉଥିଲା । ଗୃହନିର୍ମାଣ କୌଶଳରୁ ଜଣାପଡୁଛି ଯେ ସେମାନେ ସାଧାରଣ ପରିଷ୍କାର ପରିଚ୍ଛନ୍ନତା ପ୍ରତି ବୋଧହୁଏ ଉଦାସୀନ ନଥିଲେ । ଇଟା ପୋଡ଼ିବାର କୌଶଳ ଓ ତହିଁରେ ନିର୍ମାଣ କାର୍ଯ୍ୟ କରିବାର କୌଶଳ ଯେ ନିଶ୍ଚିତ ଭାବରେ ସେମାନଙ୍କୁ ଜଣାଥିଲା, ତାହାର ପ୍ରମାଣ ଆମେ ପାଇବା କରିମ୍‌ନଗର ଜିଲ୍ଲାସ୍ଥ ପେଡ୍ଡାବାଙ୍କୁର ଠାରେ ଆବିଷ୍କୃତ ଗୋଟିଏ ବୃହତ୍ ସ୍ତୂପର (citadel) ଧ୍ୱଂସାବଶେଷରୁ । ଏହି ବୃହତ୍ ସ୍ତୂପଟି ପୋଡା ଇଟାରେ ତିଆରି । ଏହାର ଦୈର୍ଘ୍ୟ ୧୦୦୦ ଫୁଟ ଏବଂ ପ୍ରସ୍ଥ ୧୩୧ ଫୁଟ୍ । ଏହା ମଧ୍ୟରେ ଇଟାରେ ତିଆରି ତିନୋଟି କୂପ ବିଦ୍ୟମାନ ।

ଏହା କଭଳି ଭାବରେ ବ୍ୟବହୃତ ହେଉଥିଲା, ସେ ବିଷୟରେ ଅବଶ୍ୟ ସଠିକ୍ ଓ ପ୍ରାମାଣିକ ମତ ଏପର୍ଯ୍ୟନ୍ତ କେହି ପ୍ରକାଶ କରି ପାରି ନାହାନ୍ତି । ବୋଧହୁଏ ଏହା ଥିଲା କୌଣସି ଏକ ଦେବାୟତନ । ଏହା ମଧ୍ୟରେ ଥିବା ଛଅଗୋଟି କୂପରୁ ପବିତ୍ର ଜଳ ଅଣାଯାଇ ତାହା ବୋଧହୁଏ ଦେବପୂଜାରେ ବ୍ୟବହୃତ ହେଉଥିବ ଅଥବା ଭକ୍ତମାନଙ୍କୁ ଏହି ଜଳରେ ପବିତ୍ର-ସ୍ନାନ କରିବାକୁ ପଡ଼ୁଥିବ କିମ୍ବା ପୂଜା-ଅର୍ଚ୍ଚନା ପୂର୍ବରୁ ହସ୍ତପଦାଦି ଧୌତ କରିବାକୁ ପଡ଼ୁଥିବ । ଏ ଦେବାୟତନର ଦେବତା କେବେ କିଏ ଥାଇ ପାରନ୍ତି ? ଏହା ମଧ୍ୟ ଏକ ଅସମାହିତ ପ୍ରଶ୍ନ । ସମ୍ଭବତଃ ଏଠାରେ ମହାମାତୃଶକ୍ତିଙ୍କର (Mother Goddess) ଆରାଧନା କରାଯାଉଥିଲା । ଏହି ସଂସ୍କୃତିରେ ମାତୃଦେବୀଙ୍କ ଆରାଧନାର ପ୍ରାଧାନ୍ୟ ବିଷୟରେ ଏକ ପ୍ରମାଣ ନିକଟ ଅତୀତରେ ମିଳିଛି । ଗୋଆର ରାଜଧାନୀ ପାନାଜି ଠାରୁ ୮୦ କିଲୋମିଟର ଦୂରରେ ଅବସ୍ଥିତ 'କୁର୍ଦ୍ଦି' ଗାଁରୁ ୨½ ମିଟର ଉଚ୍ଚ ଗୋଟିଏ ମାଙ୍କଡ଼ା ପଥରରେ ତିଆରି ମାତୃଦେବୀଙ୍କ ମୂର୍ତ୍ତି ମିଳିଛି (The Times of India, Dc. 10.୨.୮୪) । 'ସାଲାଉଲିମ୍' ଜଳସେଚନ ଯୋଜନାରେ ଜଳମଗ୍ନ ହେବାକୁ ଥିବା ଗୋଟିଏ ଅଞ୍ଚଳରେ ଖୋଦନ ଫଳରେ ଏହି ପ୍ରତ୍ନତାତ୍ତ୍ୱିକ ଆବିଷ୍କାରଟି ସମ୍ଭବ ହୋଇ ପାରିଛି । ଏହି ମାତୃମୂର୍ତ୍ତି ଗୋଟିଏ ସଦ୍ୟଜାତ ଶିଶୁକୁ ଧରି ରହିଛନ୍ତି । ପ୍ରତ୍ନତତ୍ତ୍ୱବିତ୍ ପି. ପି. ସିରୋଦକରଙ୍କ ମତରେ ଏହାକୁ ବୃହତ୍ ପ୍ରସ୍ତର ଯୁଗରେ (ଖ୍ରୀ; ପୂ: ୯୦୦ ଶତାବ୍ଦୀ) ସ୍ଥାନିତ କରାଯାଇ ପାରିବ । ମାତୃଦେବୀଙ୍କର ପୂଜା ସେତେବେଳେ ଖୁବ୍ ଲୋକପ୍ରିୟ ଥିଲା ବୋଲି ଏଥିରୁ ଜଣାପଡୁଛି । ମହେଞ୍ଜୋଦାରୋ, ହରପ୍ପା ଆଦି ସ୍ଥାନମାନଙ୍କରେ ମଧ୍ୟ ଆମେ ଏହି ମହାମାତୃଶକ୍ତିଙ୍କ ଆରାଧନାର ପ୍ରମାଣମାନ ଦେଖିବାକୁ ପାଇଥାଉଁ । ତା' ଛଡ଼ା ପୃଥିବୀର ସକଳ ସ୍ଥାନରେ ସକଳ ସଭ୍ୟତାର ଆଦି ଉନ୍ମେଷ କାଳରେ ଆମେ ଏହି ସୃଷ୍ଟିର ସଙ୍କେତ ମହାମାତୃ ଶକ୍ତିଙ୍କର ପୂଜାର ନିଦର୍ଶନମାନ ଦେଖିବାକୁ ପାଇଥାଉଁ । ପ୍ରଜନନ କ୍ରିୟାରେ କେବଳ ଯେ ମାତାର ଅଂଶ ଅଛି ଏବଂ ପିତାର ନାହିଁ, ଏହା ଥିଲା ମାନବର ଏକ ଆଦିମ ଧାରଣା । ଏବେ ମଧ୍ୟ କେତେକ ଆଦିମ ଅଧିବାସୀମାନଙ୍କ ମଧ୍ୟରେ ଏହି ଧାରଣା ରହିଛି । ଏହି ସୃଜନାତ୍ମକ ଶକ୍ତିର ଅଲୌକିକ ବିଭୂତିରେ ଚକିତ ବିସ୍ମିତ ହୋଇ ତେଣୁ ଆଦିମାନବ ପୂଜା ଆରାଧନା ମାଧ୍ୟମରେ ଏହାକୁ ସନ୍ତୁଷ୍ଟ କରିବା ପାଇଁ ଉଦ୍ୟମ କରିଥିବା ସ୍ୱାଭାବିକ । ଅତଏବ ବୃହତ୍ ପ୍ରସ୍ତରଯୁଗୀୟ ଅଧିବାସୀମାନଙ୍କ ଠାରେ ଏହା ଘଟିଥିବା କିଛି ଅସମ୍ଭବ ନୁହେଁ । ପରଲୋକଗତ ଆତ୍ମାର ଦୈନନ୍ଦିନ ପୂଜାଆରାଧନା ଲାଗି ଯେଉଁ ଦେବୀ ମୂର୍ତ୍ତିମାନ କବର ଗୃହକ ମଧ୍ୟରେ ରଖାଯାଇଛି, ସେଥିରୁ ପ୍ରମାଣ ମିଳୁଛି ଯେ ଏହି ଦେବୀ ବା 'ମହାମାତୃଶକ୍ତି' ଏହି ଲୋକମାନଙ୍କର ଆରାଧ୍ୟା ଦେବୀ ଥିଲେ । ଯେଉଁ ଆରାଧନା ପରଲୋକଗତ ଆତ୍ମା ପାଇଁ ପ୍ରଯୁଜ୍ୟ, ତାହା ମଧ୍ୟ ଏଠାକାର ଅଧିବାସୀମାନଙ୍କ ପାଇଁ ପ୍ରଯୁଜ୍ୟ । ଏହି ସବୁ କାରଣମାନଙ୍କରୁ ବିଚାର କଲେ ଦେଖାଯିବ ଯେ ଶଂସିତ ବୃହତ ସ୍ତୂପଟି ଥିଲା ଏକ ଦେବାୟତନ ଓ ଏହା ଥିଲା ମହା-

ମାତୃଶକ୍ତିଙ୍କର ଆରାଧନା ଲାଗି ଉଦ୍ଦିଷ୍ଟ । ଏହି ଗୃହଟିର ବୃହତ୍ ଆକାରରୁ ଜଣାପଡ଼ୁଛି ଯେ ଏଠାରେ ଏକକାଳୀନ ବହୁ ଲୋକଙ୍କର ସମାଗମ ପାଇଁ ବ୍ୟବସ୍ଥା କରାଯାଇଥିବ । ସୁତରାଂ ଏହା ଉଭୟ ପୂଜା ଅର୍ଚ୍ଚନା ଓ ସଭାକାର୍ଯ୍ୟ ପାଇଁ ବ୍ୟବହୃତ ହେଉଥିବା କହିବା ଅସମ୍ଭବ ନୁହେଁ ।

ବୃହତ୍ ପ୍ରସ୍ତରଯୁଗୀୟ କବରମାନଙ୍କ ମଧ୍ୟରୁ ପ୍ରଚୁର ପରିମାଣରେ ଲୌହନିର୍ମିତ ବିଭିନ୍ନ ବସ୍ତୁମାନ ଆବିଷ୍କୃତ । ଏଥିରୁ ଜଣାଯାଏ ଯେ ଏହି ସଂସ୍କୃତି ନିଶ୍ଚୟ ତାମ୍ରପ୍ରସ୍ତର-ଯୁଗୀୟ ସଂସ୍କୃତିର ପରବର୍ତ୍ତୀ । ଅବଶ୍ୟ ତାମ୍ରନିର୍ମିତ ବସ୍ତୁ ଯେ ଏଠାରୁ ମିଳନାହିଁ ତାହା ନୁହେଁ । ଏହା କେବଳ କାଁ ଗାଁ କେଉଁଠି କେମିତି ମିଳିଛି । ଉଦାହରଣ ସ୍ୱରୂପ କର୍ଣ୍ଣାଟକର ବ୍ରହ୍ମଗିରିଠାରେ ତମ୍ବାର କାଚ ଓ ଅଞ୍ଜନ ଦେବାଲାଗି ତମ୍ବାର କାଠି ମିଳିଥିବା ବେଳେ ମହାରାଷ୍ଟ୍ର ରାଜ୍ୟର ନାଗପୁର ଜିଲ୍ଲାସ୍ଥ ଜୁନାପାଣିଠାରେ ଛଅଟି ତମ୍ବାର ପାଦ-ବଳା ମିଳିଛି । ଏକ ସ୍ତରରେ ଲୌହ ଓ ତାମ୍ରନିର୍ମିତ ବସ୍ତୁମାନଙ୍କର ଆବିଷ୍କାରରୁ ଜଣାଯାଇଛି ଯେ ତାମ୍ରପ୍ରସ୍ତରଯୁଗୀୟ କେତେକ ବସ୍ତୁର ପ୍ରଚଳନ ଲୌହ ପ୍ରସ୍ତର ଯୁଗ ପର୍ଯ୍ୟନ୍ତ ମଧ୍ୟ ଥିଲା । କିନ୍ତୁ ଲୌହନିର୍ମିତ ବସ୍ତୁଗୁଡ଼ିକର ବହୁଳ ବ୍ୟବହାର ଘଟିଥିଲା ଲୌହ ପ୍ରସ୍ତର ଯୁଗରେ ଏବଂ ବୃହତ୍ ପ୍ରସ୍ତରଯୁଗୀୟ କାରିଗରମାନେ ଥିଲେ ଏହି ଯୁଗର ଅଧିବାସୀ । ଅନ୍ୟାନ୍ୟ ବସ୍ତୁମାନଙ୍କ ମଧ୍ୟରେ କବର ତଳୁ ନିମ୍ନଲିଖିତ ଲୌହ ନିର୍ମିତ ବସ୍ତୁମାନ ମିଳିଛି ।

କ-ଘରକରଣା ଜିନିଷମାନ, ଯଥା, ଦୀପ, ମୁଣ୍ଡ, କରେଇ, ଛୁରୀ, ଇତ୍ୟାଦି;

ଖ-କୃଷି ଯନ୍ତ୍ରପାତିମାନ, ଯଥା, କୁରାଢ଼ି, କୋଦାଳ, ଦାଆ, ହାତୁଡ଼ି, ବଟାଲି ଇତ୍ୟାଦି;

ଗ-ଯୁଦ୍ଧର ସାମଗ୍ରୀମାନ, ଯଥା, ବର୍ଛା, ଖଣ୍ଡା, ତ୍ରିଶୂଳ, ଶର ମୂନ, ଫାର୍ଶା, ଲ୍ରୋଟ ବର୍ଛା, ଅଶ୍ୱାରୋହୀର ବର୍ଛା ( Lance ) ଇତ୍ୟାଦି, ଏବଂ

ଘ-ମନୋରଞ୍ଜନର ସାମଗ୍ରୀମାନ, ଯଥା, ଶୃଙ୍ଗ ଜାତୀୟ ବାଦ୍ୟ ଇତ୍ୟାଦି ।

କବର ମଧ୍ୟରୁ ଉପରଲିଖିତ ଲୌହନିର୍ମିତ ବସ୍ତୁଗୁଡ଼ିକର ବହୁଳ ଆବିଷ୍କାର ଏହି ସଂସ୍କୃତିର ଅଧିବାସୀମାନଙ୍କ ଜୀବନଧାରଣ ବିଷୟରେ କେତେଟା ସୂଚନା ଦିଏ । ତହିଁରୁ ନିମ୍ନଲିଖିତ ସିଦ୍ଧାନ୍ତମାନ ଗ୍ରହଣୀୟ :

୧-ଏହି ସଂସ୍କୃତିର ଅଧିବାସୀମାନେ ବାରବୁଲା ଅବସ୍ଥାରୁ ବହୁତ ଉନ୍ନତ ଥିଲେ ଏବଂ ସ୍ଥାୟୀ ଭାବରେ ବସବାସ କରି ରହୁଥିଲେ ।

୨-ଏମାନେ ମୁଖ୍ୟତଃ ଥିଲେ କୃଷିଜୀବୀ । (୮)

୩ ଶିକାର ଲାଗି ବ୍ୟବହୃତ ଅସ୍ତ୍ରଶସ୍ତ୍ରମାନ ସୂଚାଇଦିଏ ଯେ ଶିକାର ମଧ୍ୟ ଏମାନଙ୍କ ଜୀବନ ଧାରଣର ଆଉ ଏକ ମାର୍ଗ ଥିଲା ।

୪-ଏମାନେ ଖୁବ୍ ଗତିଶୀଳ ଥିଲେ ଯାହାର ସୂଚନା ଅଶ୍ୱର ବହୁଳ ବ୍ୟବହାରରୁ ମିଳିଥାଏ ।

୫-ଏମାନଙ୍କ ଜୀବନ-ଧାରଣ ସଂଘର୍ଷମୟ ଥିଲା । ଗ୍ରାମ, ଗ୍ରାମ ମଧ୍ୟରେ, ଦଳ ଦଳ ମଧ୍ୟରେ କମ୍ବା ଜାତି ଜାତି ମଧ୍ୟରେ ବେଳେବେଳେ ଯୁଦ୍ଧବିଗ୍ରହ ଲାଗି ରହୁଥିଲା; ଯେଉଁଥି ପାଇଁକି ଏମାନଙ୍କୁ ବହୁ ଦୃଢ଼ ଓ ତୀକ୍ଷ୍ଣଧାର ଅସ୍ତ୍ରମାନ ବ୍ୟବହାର କରିବାକୁ ପଡ଼ୁଥିଲା ।

୬ ଏମାନେ ବିଦେଶାଗତ ହେବାରୁ ବୋଧହୁଏ ଦେଶୀୟ ଶାବର ଅଧିବାସୀମାନଙ୍କ ( Australoid ) ସହିତ ଏମାନଙ୍କୁ ବାରମ୍ବାର ସଂଘର୍ଷର ସମ୍ମୁଖୀନ ହେବାକୁ ପଡ଼ୁଥିଲା ।

୭-ଦକ୍ଷିଣ ଭାରତ ସେତେବେଳେ ବହୁ ହିଂସ୍ରଜନ୍ତୁ ଅଧ୍ୟୁଷିତ ଅରଣ୍ୟରେ ପୂର୍ଣ୍ଣ ରହୁ-ଥିଲା । ଏଣୁ ସେମାନଙ୍କ ଆକ୍ରମଣରୁ ନିଜକୁ ରକ୍ଷା କରିବା ପାଇଁ ଏମାନେ ସୁଦୃଢ଼ ଓ ତୀକ୍ଷ୍ଣଧାର ଆୟୁଧମାନ ବ୍ୟବହାର କରୁଥିଲେ । ହିଂସ୍ରଜନ୍ତୁମାନଙ୍କୁ ପ୍ରତ୍ୟାକ୍ରମଣ କରିବା ଲାଗି ଏମାନେ ବେଗଗାମୀ ଅଶ୍ୱକୁ ନିଯୁକ୍ତ କରୁଥିଲେ ।

୮-ଲୌହ ପଥର ପିଣ୍ଡକୁ ତରଳାଇ ତହିଁରୁ ଲୌହ ବାହାର କରାଇବାର କୌଶଳ ତଥା ଲୌହନିର୍ମିତ ବିଭିନ୍ନ ବସ୍ତୁମାନଙ୍କର ନିର୍ମାଣ କୌଶଳ ଏମାନଙ୍କୁ ଜଣାଥିଲା ।

୯-ଲୌହକୁ ତରଳାଇ ତହିଁରୁ ତାର ତିଆରି କରିବା କୌଶଳ ଏମାନଙ୍କୁ ଜଣାଥିଲା ।

୧୦-ବାଦ୍ୟଯନ୍ତ୍ରାଦିର ବ୍ୟବହାରରୁ ଜଣାଯାଏ ଯେ ସମାଜରେ ମନୋରଞ୍ଜନ କାର୍ଯ୍ୟ-କ୍ରମରେ ନୃତ୍ୟ, ଗୀତ, ବାଦ୍ୟ ଆଦିର ପ୍ରଚଳନ ଥିଲା ।

୧୧-ସମାଜରେ ଶ୍ରମର ବିଭାଜନ ହୋଇଥିଲା ଏବଂ ତଦନୁଯାୟୀ ବିଭିନ୍ନ କାରିଗର-ମାନେ ସେମାନଙ୍କର କୌଳିକ କର୍ମରେ ରତ ଥିଲେ । କୁମ୍ଭକାର ଓ କର୍ମକାର ଗୋଷ୍ଠୀ ଏଥିରେ ଥିଲେ ପ୍ରମୁଖ ।

କେବଳ ଯେ ଲୌହନିର୍ମିତ ବସ୍ତୁଗୁଡ଼ିକ ତିଆରି କରିବାରେ ଏମାନଙ୍କର କାରିଗରୀ କୌଶଳ ପରିଲକ୍ଷିତ ହୋଇଥିଲା ତାହା ନୁହେଁ; ବିଭିନ୍ନ ଅଳଙ୍କାରମାନଙ୍କର ପ୍ରସ୍ତୁତି କ୍ଷେତ୍ରରେ ମଧ୍ୟ ଏମାନେ ସମଧିକ ପାରଦର୍ଶିତା ଲାଭ କରିଥିଲେ । ଆନ୍ଧ୍ର ପ୍ରଦେଶସ୍ଥ ନାଗାର୍ଜ୍ଜୁନ କୋଣ୍ଡାଠାରେ ମିଳିଥିବା ସୁନା ଓ ରୁପା ନିର୍ମିତ କାନର ଫୁଲ, ଓ ତମ୍ବାର

ବାଲ ଏବଂ ପ୍ରାପ୍ତ ସମ୍ବନ୍ଧ ମିଳିଥିଲା। ପୋଡ଼ାମାଟି ଓ ଶଙ୍ଖର ମାଳି ଏଭଳି କାରିଗରୀ ବିଦ୍ୟାରେ ହାସଲ କରିଥିବା କଳାକୁଶଳତାର ପ୍ରମାଣ ଦିଏ । ଅନ୍ଧ୍ରସ୍ଥ ନାଲୁରଠାରେ ମୃତ୍ତିକାନିର୍ମିତ ପାତ୍ରମାନଙ୍କରେ କାର୍ପାସ ବସ୍ତ୍ରର ଅଂଶଟିମାନ ଲାଗିଥିବାର ଦେଖାଯାଇଛି । ଏଥିରୁ ପ୍ରମାଣ ମିଳୁଛି ଯେ ଏମାନେ କପାଗୃଷ କରୁଥିଲେ ଏବଂ ଲୁଗା ବୁଣିବାର କୌଶଳ ମଧ୍ୟ ଏମାନଙ୍କୁ ମାଲୁମ ଥିଲା ।

ବୃହତ୍ ପ୍ରସ୍ତର ସ୍ଥାପତ୍ୟକୁ ଅନୁଧ୍ୟାନ କଲେ ଆମେ ଜାଣି ପାରିବା ଯେ ସର୍ବମୋଟ ପାଞ୍ଚଟି ପର୍ଯ୍ୟାୟରେ ଏହା ନିର୍ମିତ ହୋଇଥାଏ । ଗବେଷକ ଶେଷାଦ୍ରିଙ୍କର ଏହା ହିଁ ମତ । (୯) ଏହି ପର୍ଯ୍ୟାୟ ଗୁଡ଼ିକ ହେଲା :

କ-ଆବଶ୍ୟକ ପରିମାଣର ପ୍ରସ୍ତର ସଂଗ୍ରହ;

ଖ-ସେଗୁଡ଼ିକୁ ନିର୍ଦ୍ଦିଷ୍ଟ ସ୍ଥାନକୁ ପରିବହନ କରିବା;

ଗ-ବାକ୍ସାକୃତି ବିଶିଷ୍ଟ ପ୍ରସ୍ତରର କବର ନିର୍ମାଣ ଓ ଏହି କବରର ଚତୁଃପାର୍ଶ୍ୱରେ ପ୍ରସ୍ତରର କାନ୍ଥ ନିର୍ମାଣ;

ଘ-ଏହି ବାକ୍ସାକୃତି ବିଶିଷ୍ଟ କବର ଲାଗି ପ୍ରସ୍ତରର ଆବରଣ ନିର୍ମାଣ ଓ ଏହାକୁ କବର ଉପରେ ସଂସ୍ଥାପନ, ଏବଂ

ଙ-କବରର ଚତୁଃପାର୍ଶ୍ୱରେ ପ୍ରସ୍ତର ଖଣ୍ଡମାନଙ୍କୁ ବୃତ୍ତାକୃତିରେ ସଜ୍ଜୀକୃତ କରି ରଖିବା ।

ଏଥିରୁ ଜଣାପଡୁଛି ଯେ ସେତେବେଳେ ଏମାନଙ୍କ ମଧ୍ୟରେ କୁଶଳୀ ପ୍ରସ୍ତରସ୍ଥପତିଙ୍କର ଅଭାବ ନଥିଲା । ସେଥିପାଇଁ ଏଭଳି ସହସ୍ରାଧିକ ସଂଖ୍ୟାର ବୃହତ୍ ପ୍ରସ୍ତରସ୍ଥାପତ୍ୟ-ମାନ ଗଢି ଉଠିବା ସମ୍ଭବ ହୋଇ ପାରିଛି । ସ୍ଥାପତ୍ୟ କଳାର ପ୍ରସିଦ୍ଧ ସମାଲୋଚକ ଫର୍ଗୁସନ୍ ଅବଶ୍ୟ କୁହନ୍ତି ଯେ ଭାରତରେ ପ୍ରସ୍ତର-ସ୍ଥାପତ୍ୟ ଖ୍ରୀ: ପୂ: ୨୫୦ ପୂର୍ବରୁ ସ୍ଥାପିତ ହୋଇ ନଥିଲା। (୧୦) କିନ୍ତୁ ଦକ୍ଷିଣ ଭାରତର ବୃହତ୍ ପ୍ରସ୍ତରଯୁଗୀୟ ସ୍ଥାପତ୍ୟ ତାଙ୍କର ଏ ମତକୁ ଅପ୍ରମାଣିତ କରୁଛି । ଅବଶ୍ୟ ଏ ସ୍ଥାପତ୍ୟରେ କଳାତ୍ମକ ସୂକ୍ଷ୍ମତା ନଥିଲା ଏବଂ ଏହା ଥିଲା ଅମସୃଣ । ଯେ ଯାହା ହେଉ, ଏହା ଯେ ପ୍ରସ୍ତରସ୍ଥାପତ୍ୟ, ଏଥିରେ ନିଶ୍ଚୟ ସମସ୍ତେ ଏକମତ ହେବେ । ଉତ୍ତର କର୍ଣ୍ଣାଟକରେ ବୃହତ୍ ପ୍ରସ୍ତର-ଯୁଗୀୟ ଯେଉଁ ସଞ୍ଚରଣ କୋଷ୍ଠକ ଗୁଡ଼ିକ ( Passage chambers ) ଆବିଷ୍କୃତ ହୋଇଛି, ଅଙ୍ଗାର ପରୀକ୍ଷା ଫଳରେ ସେଗୁଡ଼ିକର ନିର୍ମାଣକାଳ ଖ୍ରୀ: ପୂ: ୧୨୦୦ରେ ସ୍ଥାପିତ । ଆଉ ମଧ୍ୟ ଅଶୋକଙ୍କ ବ୍ରହ୍ମଗିରି ( କର୍ଣ୍ଣାଟକ )ଠାରେ ପ୍ରାକୃତ ଭାଷାରେ ଲିଖିତ ଶିଳାଲିପିକୁ ( ଖ୍ରୀ: ପୂ: ୩ୟ ଶତାବ୍ଦୀ ) ଅନୁଧ୍ୟାନ କଲେ ଜଣାଯାଏ ଯେ ଏଥିରେ

ଚେର, ଚୋଳ, ପାଣ୍ଡ୍ୟ, କେରଳପୁତ୍ର, ସତିୟପୁତ୍ରମାନଙ୍କର ନାମୋଲ୍ଲେଖ ଅଛି । ଚେର, ଚୋଳ, ପାଣ୍ଡ୍ୟ, ଆଦି ନିଶ୍ଚିତ ଭାବରେ ଉନ୍ନତ ଜାତି ଥିଲେ ଏବଂ ସେମାନେ କଦାପି ବୃହତ୍ ପ୍ରସ୍ତରଯୁଗୀୟ ଲୋକ ହୋଇନଥିବେ । ଅତଏବ, ବୃହତ୍ ପ୍ରସ୍ତରଯୁଗୀୟ ସଭ୍ୟତା ଦାକ୍ଷିଣାତ୍ୟର ଏହି ଅଞ୍ଚଳରେ ଏହାର ବହୁବର୍ଷ ତଳେ ଆବିଷ୍କୃତ ହୋଇଥିବ । ଫର୍ଗୁସନଙ୍କର ପ୍ରସ୍ତର-ସ୍ଥାପତ୍ୟର କାଳନିରୂପଣ (ଖ୍ରୀ. ପୂ. ୨୫୦ କୋଲ୍) ସମ୍ପର୍କୀୟ ମତକୁ ଉପରଲିଖିତ ଅଶୋକଙ୍କ ଶିଳାଲେଖଭିତ୍ତିକ ପ୍ରମାଣ ନିଶ୍ଚିତ ଭାବରେ ଖଣ୍ଡନ କରୁଛି ।

ଅତଏବ ଖ୍ରୀ: ପୂ. ୩ୟ ଶତାବ୍ଦୀର ବହୁବର୍ଷ ପୂର୍ବରୁ ଯେ ଭାରତରେ ପ୍ରସ୍ତର ସ୍ଥାପତ୍ୟ ଗଢି ଉଠିଥିଲା ଏଥିରେ ସନ୍ଦେହ ନାହିଁ । ଭାରତରେ ପ୍ରସ୍ତର ସ୍ଥାପତ୍ୟର ଆଦିମ ସ୍ରଷ୍ଟା ଯେ ବୃହତ୍ ପ୍ରସ୍ତରଯୁଗୀୟ ଅଧିବାସୀ ଏବଂ ପରବର୍ତ୍ତୀ କାଳମାନଙ୍କରେ ଯେ ଏହି ସ୍ଥାପତ୍ୟର ଭୂୟୋବିକାଶ ସାଧିତ ହୋଇଥିଲା, ଏହା ନିଃସନ୍ଦେହ ।

ଏହି ଲୋକମାନଙ୍କର ଶବସତ୍କାର ପଦ୍ଧତି ଓ ପରଲୋକ ସମ୍ପର୍କୀୟ ଧାରଣା କ'ଣ ଥିଲା ତାହା ବର୍ତ୍ତମାନ ବିଚାର୍ଯ୍ୟ । ମୃତ୍ୟୁପରେ ଆତ୍ମାର ସ୍ଥିତି ବିଷୟରେ ଏମାନଙ୍କର ଏକ ଅସ୍ପଷ୍ଟ ଧାରଣା ଥିଲା । ଏମାନଙ୍କର ଧାରଣା ବୋଧହୁଏ ଥିଲା, ଏଭଳି ଗୋଟିଏ ଦିନ ଆସିବ ଯେଉଁଦିନ କି ସକଳ ମୃତ ଆତ୍ମାମାନଙ୍କର ଏକାଠି ବିଚାର ହେବ । ସେ ବିଚାର କିଏ କରିବେ, ସେ ସମ୍ପର୍କୀୟ ଧାରଣା ମଧ୍ୟ ଥିଲା ସମଧିକ ଅସ୍ପଷ୍ଟ । ମଣିଷର ଜନ୍ମ ଓ ମୃତ୍ୟୁରେ ସେମାନେ ଚମତ୍କୃତ ଓ ଭୀତ ହୋଇ ଉଠିଥିଲେ ଏବଂ ତାହାର ଫଳଶ୍ରୁତି ସ୍ୱରୂପ ଅନାଗତ ଭବିଷ୍ୟତର କୌଣସି ଏକ ନିର୍ଦ୍ଦିଷ୍ଟ ଦିନରେ ସେହି ମହାଶକ୍ତିଙ୍କ ବିଚାର ଲାଗି ସେମାନେ ମୃତବ୍ୟକ୍ତିଙ୍କ ଆତ୍ମାମାନଙ୍କୁ ତାଙ୍କର ଚରଣତଳେ ନିବେଦିତ କରି ଦେଉଥିଲେ । କିନ୍ତୁ ଏ ଶେଷ ବିଚାର ଦିନଟି କେବେ ଆସିବ ସେ ଧାରଣା ସେମାନଙ୍କର ନଥିଲା । ସେହିକି ଦିନ ପାଇଁ ତ ଏହି ଆତ୍ମାମାନଙ୍କୁ ବଞ୍ଚି ରହିବାକୁ ହେବ । କଳ୍ପିତ ସ୍ୱର୍ଗରେ ପହଞ୍ଚିବା ପାଇଁ ସେମାନଙ୍କୁ ବହୁ ଦୂର ପଥ ଅତିକ୍ରମ କରିବାକୁ ହେବ । ସେଥିପାଇଁ ସେମାନଙ୍କର ବାସସ୍ଥାନ ଆବଶ୍ୟକ, ଖାଦ୍ୟଦ୍ରବ୍ୟ ଆବଶ୍ୟକ, ଏବଂ ନିତ୍ୟ-ବ୍ୟବହାର୍ଯ୍ୟ ବସ୍ତୁମାନ ମଧ୍ୟ ଆବଶ୍ୟକ । ଏହି ଧାରଣାରୁ ଆରମ୍ଭ ହୋଇଥିଲା କବରର କଳ୍ପନା । ଏହି ଧାରଣା ନେଇ ମୃତବ୍ୟକ୍ତିର ଶବ ପାଖରେ ଖାଦ୍ୟଦ୍ରବ୍ୟ ଓ ଅନ୍ୟାନ୍ୟ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନ ରଖାଯାଉଥିଲା । ଏ ସମ୍ପର୍କରେ ମତ ଦେବାକୁ ଯାଇ ବୋଷ୍ ଓ ସେନ୍ ଯଥାର୍ଥରେ କହିଛନ୍ତି :

"Men now cared for the dead, gave them a decent and socially recognised honourable burial; they left

> food for the dead and sometimes also interned the objects which the individual had used in life. A growing concern not merely for the immediate present, but for times which stretched beyond into the past as well as the future is newly indicated, which means that man was well in advance of his ancestors in so far as life and thought were concered." (୧୧)

ନବ୍ୟମାନଙ୍କ ମଧ୍ୟରେ ମୃତବ୍ୟକ୍ତିଙ୍କ ବ୍ୟବହାର ଲାଗି ମାଂସ ସମେତ ବିଭିନ୍ନ ଖାଦ୍ୟଦ୍ରବ୍ୟ ଦିଆଯାଉଥିଲା । ତାମିଲନାଡୁର ସାନର ଠାରେ ମିଳିଥିବା ଗଧିଆ, ଛେଳି, ଓ କୁକୁଡାର ଅସ୍ଥିମାନ ଏହା ପ୍ରମାଣିତ କରୁଛି । ଆନ୍ଧ୍ରପ୍ରଦେଶର ନାଗାର୍ଜୁନକୋଣ୍ଡାଠାରେ ଗୋଟିଏ ପୁରୁଷଙ୍କ ବଳଦ କିମ୍ବା ଗୋରୁର କଙ୍କାଳ ମିଳିଛି ଯାହାର କି ବେକଟି କଟା ଯାଇଛି । ବୋଧହୁଏ ଏହି ପଶୁଟିକୁ ମରାଯାଇ ପୁରୁଷଙ୍କ ଭାବରେ ମୃତବ୍ୟକ୍ତିଙ୍କ ପରଲୋକର ଖାଦ୍ୟ ଉଦ୍ଦେଶ୍ୟରେ ସମର୍ପିତ କରାଯାଇ ଥିଲା । ବାସ୍ତବିକ ଦେଖିବାକୁ ଗଲେ ମାନବର ସ୍ୱାଭାବିକ ଧର୍ମ ହେଲା ଦୁଇଟି । ଗୋଟିଏ ହେଲା ପ୍ରକୃତିକୁ ପୂଜା କରିବା ଏବଂ ଅପରଟି ହେଲା ମୃତବ୍ୟକ୍ତିଙ୍କ ଆତ୍ମାର ଯେ ଯଥେଷ୍ଟ ଅବଦାନ ଓ ପ୍ରଭାବ ଅଛି, ସେହି ବିଶ୍ୱାସ ରଖି ତାଙ୍କୁ ପୂଜା କରିବା । ଦ୍ୱିତୀୟୋକ୍ତ ବିଶ୍ୱାସରୁ ହିଁ ସୃଷ୍ଟି ହୋଇଛି କବର ଦେବା ଅନୁଷ୍ଠାନ । ଫ୍ରେଜର ( Frazer ) ସେଥିପାଇଁ ଯଥାର୍ଥରେ କହିଛନ୍ତି :

> "Of all the many forms which natural religion has assumed none probably has exerted so deep and far-reaching an influence on human life as the belief in immortality and worship of the dead." ( ୧୨)

ବୃହତ୍ ପ୍ରସ୍ତରଯୁଗୀୟ ଅଧିବାସୀମାନେ ଏହି ସ୍ୱାଭାବିକ ଧର୍ମର ହିଁ ଅନୁଗାମୀ ଥିଲେ ।

ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତିର ଭଗ୍ନାବଶେଷ କାଳରେ ଅନ୍ୟାନ୍ୟ ବସ୍ତୁମାନଙ୍କ ସହିତ କବରରେ ମୁଦ୍ରାମାନ ମଧ୍ୟ ରଖା ଯାଉଥିଲା । କର୍ଣ୍ଣାଟକ ରାଜ୍ୟର ଫ୍ରେଜର-

ସେଠାରେ ଏଭଳି ମୁଦ୍ରାର ସନ୍ଧାନ ମିଳୁଛି । (୧୩) ଦୁର୍ଗମ ଓ ବହୁଦୂର ପଥ ଅତିକ୍ରମ କରିବା ଉଦ୍ଦେଶ୍ୟରେ ମୃତବ୍ୟକ୍ତିଙ୍କ ଆତ୍ମାଲାଗି ଏହା ବୋଧହୁଏ ଥିଲା କଳ୍ପିତ ପାଥେୟ । ଏହାର ପ୍ରଭାବ ଅଦ୍ୟାପି ଆଦିବାସୀମାନଙ୍କ ଉପରେ ପଡ଼ିଥିବାର ମନେହୁଏ । ଏବେ ମଧ୍ୟ ଓଡ଼ିଶା ଓ ଝାଡ଼ଖଣ୍ଡର ମୁଣ୍ଡାମାନେ କବର ମଧ୍ୟରେ ଶୃଙ୍ଖଳ ସହିତ ତମ୍ବାପଇସା ରଖିଥା'ନ୍ତି ।

ପୂର୍ବକଥିତ 'ମଣିମେଖଲାଇ' (ଖ୍ରୀ. ଅ ୬ଷ୍ଠ ଶତାବ୍ଦୀ) ତାମିଲ ଗ୍ରନ୍ଥର ବର୍ଣ୍ଣନା ଅନୁଯାୟୀ ସେତେବେଳେ ଶବ-ସତ୍କାର ପାଞ୍ଚପ୍ରକାର କରାଯାଉଥିଲା । ସେହି ପଦ୍ଧତିଗୁଡ଼ିକ ହେଲା :

କ-ଶବକୁ ସଂସ୍କାର କରିବା;

ଖ-ଶବକୁ ପଶୁପକ୍ଷୀଙ୍କ ଆହାର ଲାଗି କିମ୍ବା ପ୍ରାକୃତିକ ଉପାୟରେ କ୍ଷୟ ହେବାଲାଗି ବାହାରେ ଫିଙ୍ଗି ଦେବା ଏବଂ ସେଥିରୁ କିଛି ପ୍ରଧାନ ଅସ୍ଥି ସଂଗ୍ରହ କରି ତାହା କବର ଦେବା;

ଗ-ଶବକୁ ମାଟି ତଳେ ଗାତ ଖୋଳି ପୋତିବା;

ଘ-ଶବକୁ ପଥର ବାକ୍ସ ମଧ୍ୟରେ ରଖି ସେହି ବାକ୍ସଟିକୁ ମାଟିତଳେ ପୋତିବା; ଏବଂ

ଙ-ଶବକୁ ଅଥବା ଶବର ଅସ୍ଥ୍ୟଂଶକୁ ବୃହତ୍ ମୃଣ୍ମୟ ପାତ୍ରରେ ରଖି ଏହି ପାତ୍ର ଉପରେ ଢାଙ୍କୁଣିଟିଏ ଓଲଟାଇ ରଖିବା ଏବଂ ସେହି ପାତ୍ରଟିକୁ କବର ଦେବା । (୧୪)

ଅବଶ୍ୟ (କ) ଓ (ଖ) ପଦ୍ଧତିରେ ଶବସତ୍କାର କରିବାର ପ୍ରମାଣ ପ୍ରତ୍ନତାତ୍ତ୍ୱିକ ଅବଶେଷମାନଙ୍କରୁ ଖୁବ୍ କମ୍ ମିଳେ । ଏଥିରୁ ଅନୁମାନ କରାଯାଏ ଯେ ବୋଧହୁଏ ଏହି ଦୁଇ ପଦ୍ଧତିର ପ୍ରଚଳନ ସେତେବେଳେ ଖୁବ୍ ସୀମିତ ଥିବ । ତା'ଛଡ଼ା (କ) ପଦ୍ଧତିଦର୍ଶିତ ଶବସଂସ୍କାରର ପ୍ରମାଣ ପାଇବା ଖୁବ୍ ଦୁଃସାଧ୍ୟ; କାରଣ କେତୁଶତବର୍ଷ ପରେ ଚିତାଭସ୍ମର ଅବଶେଷ ଖୋଜି ପାଇବା କଷ୍ଟକର । ଶବକୁ ଲମ୍ବ ଭାବରେ ଶାୟିତ କରାଇ କବର ଦେବାର ପ୍ରମାଣ ଆମେ ଅନେକ ସ୍ଥାନରୁ ପ୍ରାପ୍ତ ସଂପୃକ୍ତ ନର-କଙ୍କାଳ ଗୁଡ଼ିକର ପରୀକ୍ଷାରୁ ଜାଣିପାରୁ । ଅନ୍ଧ୍ର ପ୍ରଦେଶର ନାଗାର୍ଜ୍ଜୁନକୋଣ୍ଡା, କର୍ଣ୍ଣାଟକର ମାସ୍କି ଓ ତାମିଲନାଡ଼ୁର ପଲ୍ଲବରମ୍ ଆଦି କେତେକ ପ୍ରଧାନ ପ୍ରଧାନ ସ୍ଥାନମାନ ସେଗୁଡ଼ିକର ଅନ୍ତର୍ଗତ । ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ଶବ ଉତ୍ତର ଦକ୍ଷିଣ ଭାବରେ ଶାୟିତ ଏବଂ ଏହାର ମସ୍ତକଟି ଅଛି ଉତ୍ତରାଭିମୁଖୀ । ଏହିଭଳି ଭାବରେ ଶବର ମସ୍ତକକୁ ଉତ୍ତରା-

ଭିମୁଖୀ କରି କବର ଦେବାର ପଦ୍ଧତି ସିନ୍ଧୁ ସଂସ୍କୃତିରେ ମଧ୍ୟ ପରିଦୃଷ୍ଟ । କିନ୍ତୁ ସେଠାରେ କବରଖାନାଗୁଡ଼ିକ ପ୍ରଧାନ ବସ୍ତିର ଦକ୍ଷିଣରେ ଅବସ୍ଥିତ । ଏହି ଦୃଷ୍ଟିରୁ ଅନୁମାନ କରାଯାଏ ଯେ ଯମରାଜାଙ୍କର ବାସସ୍ଥାନକୁ ଦକ୍ଷିଣରେ ଭାବି ଏବଂ ମୃତବ୍ୟକ୍ତିଙ୍କ ଆତ୍ମାର ସ୍ୱର୍ଗପ୍ରାପ୍ତି କଳ୍ପନା କରି ତାଙ୍କ ଶବକୁ ସେଠାରେ ଏହାର ବିପରୀତ ଦିଗରେ ଉତ୍ତରାଭିମୁଖୀ କରି ରଖାଯାଇଛି । ବାସ୍ତବିକ ଭାରତୀୟମାନଙ୍କର ପାରମ୍ପରିକ ଧାରଣା ହେଉଛି, ଦେବତାମାନଙ୍କ ବାସସ୍ଥାନ ସ୍ୱର୍ଗ-ଭୂମି ହେଉଛି ଉତ୍ତର ଦିଗରେ । ବୃହତ୍ ପ୍ରସ୍ତର-ଯୁଗୀୟ କବରଖାନା ଗୁଡ଼ିକୁ କିନ୍ତୁ ପ୍ରଧାନବସ୍ତିର ଦକ୍ଷିଣରେ ଅବସ୍ଥାପିତ କରାଯାଇ-ନାହିଁ । ଅତଏବ, ଶବର ମସ୍ତକଗୁଡ଼ିକୁ ସର୍ବଦା ଉତ୍ତରାଭିମୁଖୀ କରି ରଖାଇବାରେ ଯେ ପାରମ୍ପରିକ ସ୍ଥାନୀୟ ପ୍ରଭାବ କାର୍ଯ୍ୟ କରିନଥିବ, ସେକଥା କୁହାଯାଇ ପାରିବ ନାହିଁ । ବରଂ ସେ ପ୍ରକାର ପ୍ରଭାବ ବିଦେଶାଗତ ଏହି ସଂସ୍କୃତିରେ ପଡ଼ିଥିବାର ସମ୍ଭାବନା ଅଧିକ । ତେବେ ସିନ୍ଧୁ-ସଂସ୍କୃତି ଓ ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତିର ପାରସ୍ପରିକ ସଂଯୋଗ କେବେ ଓ କିଭଳି ଭାବରେ ଏବଂ କେତେଦୂର ଘଟିଥିଲା ସେ ବିଷୟରେ ଏ ପର୍ଯ୍ୟନ୍ତ ସ୍ଥିର ସିଦ୍ଧାନ୍ତ ହୋଇନାହିଁ ।

ପଲ୍ଲବରମ୍ ଭଳି କେତେକ ସ୍ଥାନରେ ପୁରୁଷମାନଙ୍କର ଶବକୁ ଆଣ୍ଠୁଭାଙ୍ଗି ବସାଇ ଦିଆଯାଇଥିବା ସ୍ଥଳେ ସ୍ତ୍ରୀମାନଙ୍କର ଶବକୁ ଲମ୍ବଭାବରେ ଶୁଆଇ ଦିଆଯାଇଛି । ସେହି-ଭଳି ବାସୁଦେବାନାଲ୍ଲୁରଠାରେ ଶବକୁ ଗୋଟିଏ ବୃହଦାକାର ମୃଣ୍ମୟ ପାତ୍ର ମଧ୍ୟରେ ବକା ମାତ୍ର ବସାଇ ଦିଆଯାଇଅଛି । ପୁନଶ୍ଚ ତାମିଲନାଡ଼ୁର ଆଦିଚ୍ଚନାଲ୍ଲୁର ଓ ଅନ୍ୟାନ୍ୟ ସ୍ଥାନମାନଙ୍କରେ ପାତ୍ର ମଧ୍ୟରେ ଅସ୍ଥ୍ୟଂଶକୁ କବର ଦିଆଯାଇଥିବାର ପ୍ରମାଣ ବିଦ୍ୟମାନ । ଏ ସମ୍ପର୍କରେ ପ୍ରଶ୍ନ ହୋଇପାରେ, ଏମାନେ ତ ଗୋଟିଏ ଜାତି; ତେବେ ଶବ-ସତ୍କାର ପଦ୍ଧତିର ଏଭଳି ପାର୍ଥକ୍ୟ କାହିଁକି ? ବୋଧହୁଏ, ଏମାନେ ଏକ ଜାତି ଥିଲେ ହେଁ ବିଭିନ୍ନ ଗୋଷ୍ଠୀ ଓ ଉପଗୋଷ୍ଠୀରେ ବିଭକ୍ତ ହୋଇଥିଲେ । ପ୍ରତି ଗୋଷ୍ଠୀ ବା ଉପ-ଗୋଷ୍ଠୀର ଧର୍ମ-ବିଶ୍ୱାସରେ କିଛିଟା ସ୍ୱାତନ୍ତ୍ର୍ୟ ଥିଲା । ସେହି ସ୍ୱାତନ୍ତ୍ର୍ୟକୁ ଅନୁସରଣ କରି ଶବ-ସତ୍କାରରେ ହୁଏତ ଏଭଳି ଭିନ୍ନତା ପରିଦୃଶ୍ୟମାନ । ସିନ୍ଧୁ ସଂସ୍କୃତିରେ ଯେ ଶବ-ସତ୍କାର ପଦ୍ଧତିରେ ଏହିଭଳି ଭାବରେ ବିଭିନ୍ନତା ଅନୁସୃତ, ସେ କଥା ଏଠାରେ କହିଲେ ଅପ୍ରାସଙ୍ଗିକ ହେବନାହିଁ । କିନ୍ତୁ ଗର୍ଡନ ( Gordon ) ଏ ସମ୍ପର୍କରେ ଭିନ୍ନ ମତ ପୋଷଣ କରନ୍ତି । ତାଙ୍କ ମତରେ କବର ଦେବା ପଦ୍ଧତିର ଏଭଳି ବିଭିନ୍ନତାକୁ ଏଗୁଡ଼ିକ ଯେ ବିଭିନ୍ନ ଜାତି ବା ଗୋଷ୍ଠୀର କବର ସେଭଳି ଧାରଣା କରିବା ଠିକ୍ ନୁହେଁ । (୧୫) କିନ୍ତୁ ସେ ଏ ପ୍ରକାର ପାର୍ଥକ୍ୟର ସମ୍ଭାବ୍ୟ କାରଣ କ'ଣ ଥାଇପାରେ ତାହା ଦର୍ଶାଇ ନାହାନ୍ତି । ଶ୍ରୀନିବାସନ୍ ଅବଶ୍ୟ ତାମିଲ ଗ୍ରନ୍ଥ 'ମଣି ମେଖଲାଇ' ଲିଖିତ ପ୍ରମାଣ ଉପରେ ଭିତ୍ତି କରି କହିଛନ୍ତି ଯେ ସର୍ବସାଧାରଣ ଲୋକେ ସାଧାରଣ

ଖାତ ଖୋଳି ମୃତବ୍ୟକ୍ତିଙ୍କୁ କବର ଦେଉଥିଲା ବେଳେ ସମାଜର ସମ୍ଭ୍ରାନ୍ତ ଶ୍ରେଣୀର ଲୋକେ ବୃହତ୍‌ ପାଷାଣରେ କବର ଦେବା ପଦ୍ଧତି ଅନୁସରଣ କରୁଥିଲେ । (୧୬) ଏ ସମ୍ପର୍କରେ ଗୋଟିଏ ପ୍ରଶ୍ନ ଉଠୁଛି, ସେତେବେଳେ ମାଟି ପାଷାଣର ମୂଲ୍ୟ କେତେ ଅଧିକ ଥିବ ଯେ ଏଥିରେ କବର ଦେବାରେ ସାମ୍ଭ୍ରାନ୍ତ ରକ୍ଷା କରାଯାଇ ପାରୁଥିବ ? ସେ ଯାହା ହେଉ, ଏହା ଅଧିକ ଗବେଷଣା ସାପେକ୍ଷ । ଏଣୁ ଏ ବିଷୟରେ ବର୍ତ୍ତମାନ କୌଣସି ସ୍ଥିର-ନିଶ୍ଚିତ ଓ ଦୃଢ଼ ମତ ଦେଇ ହେବ ନାହିଁ ।

ସିନ୍ଧୁ-ସଂସ୍କୃତିର ଦୁଇଟି କ୍ଷେତ୍ର ଲୋଥାଲ୍‌ ଓ କାଲିବଙ୍ଗାଠାରେ ଯୁଗ୍ମକବରର ପ୍ରମାଣ ମିଳୁଥିବା ଭଳି ବୃହତ୍‌ ପ୍ରସ୍ତରଯୁଗୀୟ ସଂସ୍କୃତିରେ ମଧ୍ୟ ସେଭଳି ପ୍ରମାଣ ମିଳୁଛି । ସେହି ସ୍ଥାନଦ୍ୱୟ ହେଉଛନ୍ତି ଆନ୍ଧ୍ରପ୍ରଦେଶସ୍ଥ ଯେଲେଶ୍ୱରମ୍‌ ଓ କର୍ଣ୍ଣାଟକସ୍ଥ କାଓ୍ୱରଜ । ସିନ୍ଧୁ ସଂସ୍କୃତିରେ ସ୍ତ୍ରୀର ଶବଟି ପୁରୁଷର ଶବ ପାର୍ଶ୍ୱରେ ଶାୟିତ । କିନ୍ତୁ ଏଠାରେ ସ୍ତ୍ରୀର ଶବଟି ପୁରୁଷର ଶବ ଉପରେ ଶାୟିତ । ଏଠାରେ ସ୍ୱାମୀ-ସ୍ତ୍ରୀଙ୍କର ସ୍ୱାଭାବିକ ମୃତ୍ୟୁପରେ ସେମାନଙ୍କୁ ହୁଏତ ଏଭଳି ଭାବରେ ଯୁଗ୍ମକବର ଦିଆଯାଇଥିବ; ଅଥବା ସ୍ୱାମୀ ସ୍ତ୍ରୀ କିମ୍ବା ଅପରିଚିତ ପୁରୁଷ ଓ ସ୍ତ୍ରୀ ଦୁଇଜଣଙ୍କୁ ଦେବତାଙ୍କର ସନ୍ତୋଷ ବିଧାନ ଲାଗି ବଳି ଦିଆଯାଇଥିବ ।

ଉପରୋକ୍ତ ଆଲୋଚନାରୁ ବୃହତ୍‌ ପ୍ରସ୍ତର ଯୁଗୀୟ ସଂସ୍କୃତିର ବିଭିନ୍ନ ବିଭବ ବିଷୟରେ ଏକ ସ୍ପଷ୍ଟ ଧାରଣା କରିହେବ । ସଂକ୍ଷେପରେ ଏହି ସଂସ୍କୃତିର ପ୍ରଧାନ ପ୍ରଧାନ ବିଭାବଗୁଡ଼ିକ ନିମ୍ନରେ ଦର୍ଶାଯାଉଛି :

କ-ବୃହତ୍‌ ପ୍ରସ୍ତରଯୁଗୀୟ ସଂସ୍କୃତିର ଦ୍ରଷ୍ଟା ଭାରତ ଭୂମିର ସ୍ଥାନୀୟ ଅଧିବାସୀ ନୁହନ୍ତି । ଏମାନେ ହେଉଛନ୍ତି ବହିରାଗତ । ଏମାନେ ଆଫ୍ରିକା କିମ୍ବା ପ୍ଲିଡିଆ-ଇରାନ୍‌ ଅଞ୍ଚଳରୁ ଭାରତକୁ ଆସିଥିଲେ ।

ଖ-ଏମାନେ ହେଉଛନ୍ତି ଦ୍ରାବିଡ ଭାଷାଭାଷୀ ।

ଗ-ଏମାନେ ଥିଲେ କୃଷିଜୀବୀ । ଏମାନେ ପୁଷ୍କରିଣୀ-ଜଳସେଚନ ପଦ୍ଧତି ପ୍ରଥମେ ପ୍ରଚଳନ କରିଥିଲେ । ଯଦିଓ ଏମାନେ ଶିକାର କରୁଥିଲେ, ତଥାପି ଭାତ ଥିଲା ଏମାନଙ୍କର ପ୍ରଧାନ ଖାଦ୍ୟ ।

ଘ-ଏମାନେ ଗୋଲାକୃତି ଏକ କୋଠରୀବିଶିଷ୍ଟ ଛୋଟ ଛୋଟ କୁଡ଼ିଆ ମାନଙ୍କରେ ରହୁଥିଲେ । ଏହି କୁଡ଼ିଆର ଚଟାଣ ପଥର ଓ ମୁରୁମ ଦିଆଯାଇ ମଜବୁତ ଓ ମସୃଣ କରାଯାଉଥିଲା ।

ଙ-ଏମାନଙ୍କ ମଧ୍ୟରେ ଶ୍ରମ-ବିଭାଜନ ସଂଘଟିତ ହୋଇଥିଲା । ଏହା ଫଳରେ ମୃଣ୍ମୟ ପାତ୍ରମାନ ଓ ଲୌହନିର୍ମିତ ବିଭିନ୍ନ ବସ୍ତୁମାନ ପ୍ରସ୍ତୁତ କରିବାରେ ଲୋକମାନେ ଉତ୍ତମ କାରିଗରୀ-କୌଶଳ ଅର୍ଜନ କରିଥିଲେ ।

ଚ-ଏମାନେ ମାତୃଦେବତାଙ୍କର ପୂଜକ ଥିଲେ । ଗ୍ରାମ ମଧ୍ୟରେ ଥିବା ଏକ ବୃହଦାକାର ଗୃହକୁ ଏମାନେ ଉଭୟ ଦେବାୟତନ ଓ ସଭାଗୃହ ରୂପରେ ବ୍ୟବହୃତ କରୁଥିଲେ ।

ଛ-ଏମାନେ ଅଶ୍ୱର ବ୍ୟବହାର ଜାଣିଥିଲେ ଏବଂ ଏହି ଅଶ୍ୱ ଏମାନଙ୍କୁ ଉଭୟ ଶିକାର କରିବାରେ ଓ ଶତ୍ରୁ ସହିତ ଯୁଦ୍ଧ କରିବାରେ ସାହାଯ୍ୟ କରୁଥିଲା ।

ଜ-ହିଂସ୍ରଜନ୍ତୁମାନଙ୍କ ପ୍ରତ୍ୟାକ୍ରମଣ କରି ନିଜକୁ ରକ୍ଷା କରିବା ତଥା ବିଭିନ୍ନ ଗୋଷ୍ଠୀଗତ ଯୁଦ୍ଧରେ ପ୍ରବୃତ୍ତ ରହିବା ଥିଲା ଏମାନଙ୍କ ଜୀବନର ମୁଖ୍ୟ ଅଂଶ ବିଶେଷ ।

ଝ-ଏମାନେ ପରଲୋକ ଉପରେ ବିଶ୍ୱାସ କରୁଥିଲେ । ଦେହ ଓ ଆତ୍ମାର ପାର୍ଥକ୍ୟ ବିଷୟରେ ଏମାନଙ୍କର ଏକ ଝାପ୍ସା ଧାରଣା ଥିଲା । (୧୭)

ଞ-ପରଲୋକ ଉପରେ ବିଶ୍ୱାସ ରଖି ଏମାନେ ବିଭିନ୍ନ ପାଞ୍ଚ ଗୋଟି ଉପାୟରେ ମୃତବ୍ୟକ୍ତିଙ୍କର ଶବ-ସତ୍କାର କରୁଥିଲେ । ତନ୍ମଧ୍ୟରୁ ଗୋଟିଏ ହେଲା ଶବ-ସଂସ୍କାର ପଦ୍ଧତି ଓ ଅନ୍ୟ ଗୋଟି ହେଲା ଶବକୁ କବର ଦେବା ପଦ୍ଧତି ।

ଟ-ମୃତବ୍ୟକ୍ତିଙ୍କ ଆତ୍ମାକୁ ସମ୍ମାନ ପ୍ରଦର୍ଶନ କରି ଏବଂ ତାଙ୍କର ପରଲୋକର ବ୍ୟବହାର ଲାଗି କବର ମଧ୍ୟରେ ତାଙ୍କ ପାଇଁ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନ ଏବଂ ମାଂସ ସମେତ ବିଭିନ୍ନ ଖାଦ୍ୟଦ୍ରବ୍ୟମାନ ଅର୍ପିତ ହେଉଥିଲା ।

ଠ-ଏମାନଙ୍କ ମଧ୍ୟରେ ବିଭିନ୍ନ ଗୋଷ୍ଠୀ ଓ ଉପଗୋଷ୍ଠୀ ଥିଲେ ଏବଂ ସେମାନଙ୍କର ସ୍ୱକୀୟ ଧର୍ମବିଶ୍ୱାସରେ ମଧ୍ୟ କିଛିଟା ତାରତମ୍ୟ ରହୁଥିଲା । ଏହା ଫଳରେ ମୃତବ୍ୟକ୍ତିଙ୍କୁ କବର ଦେବାରେ ସେମାନେ ଭିନ୍ନ ଭିନ୍ନ ପଦ୍ଧତି ଅବଲମ୍ବନ କରୁଥିଲେ ।

ଡ-ଏମାନେ ଥିଲେ କୃଷ୍ଣ ଓ ଲୋହିତ ମୃଣ୍ମୟ ପାତ୍ରର ପ୍ରବର୍ତ୍ତକ । ସେତେବେଳେ ମୃଣ୍ମୟ ପାତ୍ର ନିର୍ମାଣ ଏକ ପ୍ରଧାନ କାରିଗରୀବିଦ୍ୟା ରୂପରେ ଗଣ୍ୟ ହେଉଥିଲା ।

ଚ-ସୁନା, ରୁପା, ତମ୍ବା, କାଚ, ଶଙ୍ଖ ପୋଡ଼ାମାଟି ବିଭିନ୍ନ ଅଳଙ୍କାରମାନ ଏମାନେ ବ୍ୟବହାର କରୁଥିଲେ । ପ୍ରସାଧନ ସାମଗ୍ରୀ ଭାବରେ ଆନ୍ୟାନ୍ୟ ବସ୍ତୁ ମଧ୍ୟରେ କଜ୍ଜ୍ୱଳର ବ୍ୟବହାର ଏମାନେ ଜାଣିଥିଲେ । ଅତଏବ ବିଭିନ୍ନ ଅଳଙ୍କାର ଓ ପ୍ରସାଧନ ସାମଗ୍ରୀ ପ୍ରସ୍ତୁତ କରିବାର କାରିଗରି କୌଶଳ ଏମାନଙ୍କୁ ଜଣାଥିଲା ।

ଣ-ଏମାନେ କାର୍ପାସ ବସ୍ତ୍ରର ବ୍ୟବହାର ଜାଣିଥିଲେ । ଅତଏବ ବୟନଶିଳ୍ପର କଳାକୌଶଳ ବିଷୟରେ ମଧ୍ୟ ଏମାନେ ଥିଲେ ସଂପୂର୍ଣ୍ଣ ଅବହିତ ।

ତ-ଏମାନେ ଦକ୍ଷିଣ ଭାରତରେ ସେତେବେଳେ ବାସ କରୁଥିବା ଦେଶୀୟ ଆଦିମ ଅଧିବାସୀମାନଙ୍କ ଠାରୁ ଯଥେଷ୍ଟ ଅଧିକ ଉନ୍ନତ, ସଭ୍ୟ ଓ ଗତିଶୀଳ ଥିଲେ ।

ଏହି ସଭ୍ୟତା ଉପରେ ବୈଦିକ ସଭ୍ୟତାର ପ୍ରଭାବ ପଡ଼ିଥିଲା କି ନାହିଁ ତାହା ଅବଶ୍ୟ ଅନୁଶୀଳନୀୟ । ଦକ୍ଷିଣ ଭାରତରେ ଏହି ସଭ୍ୟତାର ଭୂମ୍ୟୋଦ୍ଭବିକାଶ ଘଟିଥିଲା ବେଳେ ଉତ୍ତର ଭାରତସ୍ଥ ବୈଦିକ ସଭ୍ୟତାର ସେତେବେଳେ ଥିଲା ମଧ୍ୟାହ୍ନ ଲଗ୍ନ । ସେହି ମଧ୍ୟାହ୍ନ ସୂର୍ଯ୍ୟଙ୍କର କରକୋଳର କିଛିଟା କ'ଣ ପ୍ରଭାବ ଦକ୍ଷିଣର ଏ ସଭ୍ୟତା ଉପରେ ପଡ଼ି ନଥିବ ? ବୋଧ ହୁଏ କିଛିଟା ପଡ଼ିଥିବ ବୋଲି ଅନୁମାନ । ବୈଦିକ ଆର୍ଯ୍ୟମାନଙ୍କର ତ ସବୁବେଳେ ଲକ୍ଷ୍ୟଥିଲା ସାରା ବିଶ୍ୱକୁ ସୁସଭ୍ୟ ଓ ସୁସଂସ୍କୃତ କରାଇ ନେବା । ତାହାକୁ ସେମାନେ 'ଆର୍ଯ୍ୟ କରାଇ ନେବା' ବୋଲି କହୁଥିଲେ । ସେମାନଙ୍କର ଲକ୍ଷ୍ୟ ଥିଲା 'କୃଣ୍ୱନ୍ତଃ ବିଶ୍ୱମାର୍ଯ୍ୟମ୍' ଅର୍ଥାତ୍ "ସାରା ବିଶ୍ୱକୁ ଆମ୍ଭେମାନେ ଆର୍ଯ୍ୟ କରାଇ ନେଉଛୁ ।" ଆମର ପରମ୍ପରା କୁହେ ଯେ ଏହି ଉଦ୍ଦେଶ୍ୟରେ ଆର୍ଯ୍ୟଋଷି ଅଗସ୍ତ୍ୟ ବହୁ ଶ୍ରମ ସ୍ୱୀକାର କରି ବିନ୍ଧ୍ୟାଞ୍ଚଳ ଅତିକ୍ରମ କରି ଦକ୍ଷିଣ ଭାରତକୁ ଆସିଥିଲେ । ତାଙ୍କ ପରେ ପରେ ମଧ୍ୟ ଅନେକ ଋଷି ଦକ୍ଷିଣ ଭାରତକୁ ଆସିଥିଲେ ଏବଂ ଦଣ୍ଡକାରଣ୍ୟରେ ବହୁ ମୁନିଆଶ୍ରମ ଗଢ଼ିଉଠିଥିବାର ପରମ୍ପରା କହୁଛି । ଏହା ଆର୍ଯ୍ୟମାନଙ୍କର ଦକ୍ଷିଣ ଭାରତରେ ଧୀରେ ଧୀରେ ସ୍ୱୀୟ ସଭ୍ୟତା ଓ ସଂସ୍କୃତିକୁ ବିସ୍ତାର କରୁଥିବାର ସୂଚନା ଦେଉଛି । ଆର୍ଯ୍ୟମାନେ ଯେପରି କୃଷି ଉପରେ ଗୁରୁତ୍ୱ ଦେଉଥିଲେ ବୃହତ୍ ପ୍ରସ୍ତର ଯୁଗର ସ୍ରଷ୍ଟାମାନେ ମଧ୍ୟ ସମଧିକ ଗୁରୁତ୍ୱ ଦେଉଥିଲେ ।

ପ୍ରାଥମିକ ଅବସ୍ଥାରେ ଋଗ୍ ବେଦୀୟ ଆର୍ଯ୍ୟମାନେ ମୃତବ୍ୟକ୍ତିଙ୍କୁ କବର ଦେଉଥିଲେ । କବର ଦେବା ସମୟରେ ବୋଲା ଯାଉଥିବା ମନ୍ତ୍ରଟି ହେଲା :

"ଉପ ସର୍ପ ମାତରଂ ଭୂମିଂ ଉରୁବ୍ୟଚସଂ ପୃଥ୍ୱୀଂ ସୁଶେବାମ୍" ଅର୍ଥାତ୍ "ତୁମେ

ବର୍ତ୍ତମାନ ଏହି ମଙ୍ଗଳମୟ ପ୍ରଶସ୍ତ ଭୂମିର କୋଳକୁ ଚାଲିଯାଅ ।” ପରେ ଅବଶ୍ୟ ଶବ-ସତ୍କାର ପଦ୍ଧତିର ଉଦ୍‌ଭବ ହୋଇଥିଲା । ବୃହତ୍ ପ୍ରସ୍ତର ଯୁଗର ଅଧିବାସୀମାନେ ମଧ୍ୟ ଏହିଭଳି ଉଭୟବିଧ ଉପାୟରେ ଶବ-ସତ୍କାର କରୁଥିଲେ । ଉଭୟ ସଂସ୍କୃତିର ଅଧିକାରୀମାନେ ମୃତ୍ୟୁପରେ ପରଲୋକ ଉପରେ ବିଶ୍ୱାସ ରଖୁଥିଲେ । ପରଲୋକଗତ ଆତ୍ମାଙ୍କର ରହିବା, ଖାଇବା, ପିଇବା ଇତ୍ୟାଦିର ବ୍ୟବସ୍ଥା ମଧ୍ୟ କରୁଥିଲେ । ଅଧୁନା ଆମ୍ଭମାନଙ୍କ ମଧ୍ୟରେ ପିତୃପୁରୁଷଙ୍କୁ ଶ୍ରାଦ୍ଧ ଦେବାର ଯୁଥାଟି ଏହି ବିଶ୍ୱାସ ଉପରେ ଅବଧାରିତ । ବୈଦିକ ‘ଦେବୀସୂକ୍ତ’ ମାତୃପୂଜାର ନିଦର୍ଶନ । ସେହିପରି ବୃହତ୍ ପ୍ରସ୍ତରଯୁଗୀୟ କବରମାନଙ୍କରେ ମିଳୁଥିବା ମୃଣ୍ମୟ ମାତୃ ମୂର୍ତ୍ତିମାନଙ୍କର ଆବିଷ୍କାର ସେମାନଙ୍କର ମାତୃ-ଶକ୍ତିର ଆରାଧନାର ସୂଚନା ଦିଏ । ଉଭୟ ସଂସ୍କୃତିରେ ତେଣୁ ମାତୃ-ପୂଜାରେ ମଧ୍ୟ ସାମ୍ୟ ରହିଅଛି । ବୈଦିକ ସଂସ୍କୃତିରେ ‘ସମିତି’ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ଏହା ରାଜାଙ୍କୁ ନିର୍ବାଚିତ କରିବା ସଙ୍ଗେ ସଙ୍ଗେ ଜାତିଗତ, ସାମାଜିକ, ଆଧ୍ୟାତ୍ମିକ, ତଥା ରାଷ୍ଟ୍ରୀୟ ବିଭିନ୍ନ ସମସ୍ୟାମାନଙ୍କର ଆଲୋଚନାର ଏକ ପ୍ରଧାନ କ୍ଷେତ୍ର ଥିଲା । ଏ ସବୁ ବିଷୟରେ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିମାନ ଏହିଠାରେ ହିଁ ଗ୍ରହଣ କରାଯାଉ-ଥିଲା । ଅଥର୍ବ ବେଦରେ ( ୬ । ୮୮ । ୩ ) ଏହିପାଇଁ କୁହାଯାଇଛି :

‘ଧ୍ରୁବାୟ ତେ ସମିତିଃ କଲ୍ପତାମିହ’ ।

ଅର୍ଥାତ୍ “ଏହି ସମିତି ତୁମ୍ଭଙ୍କୁ ( ରାଜାଙ୍କୁ ) ଚିରଦିନ ଲାଗି ଗ୍ରହିଁଥାଉ ।” ପୁନଶ୍ଚ ସମିତି ଚାହିଁଲେ ରାଜାଙ୍କୁ ବହିଷ୍କୃତ ମଧ୍ୟ କରିଦେଇ ପାରୁଥିଲା ବୋଲି ତହିଁରେ ଅନ୍ୟତ୍ର କୁହାଯାଇଛି । ସେଠାରେ କୁହାଯାଇଛି :

‘ନାସ୍ମୈ ସମିତିଃ କଲ୍ପତେ ।’

ଅର୍ଥାତ୍ ‘ୟାଙ୍କୁ (ରାଜାଙ୍କୁ) ସମିତି ଗ୍ରହଣ ନାହିଁ ।’ ସମିତି ନଗ୍ରହିବା ତାତ୍ପର୍ଯ୍ୟ ହେଲା ଏହାଙ୍କୁ ପଦତ୍ୟାଗ କରିବାକୁ ହେବ । ଋଗ୍‌ବେଦରେ ( ୯ । ୯୨ । ୬ ) କୁହାଯାଇଛି :

“ରାଜାନଃ ସତ୍ୟାଃ ସମିତୋରିୟାନଃ” ।

ଅର୍ଥାତ୍ ‘ସତ୍ୟନିଷ୍ଠ ରାଜାମାନେ ସର୍ବଦା ସମିତିରେ ଉପସ୍ଥିତ ଥାଆନ୍ତି ।’ ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତିରେ ଏକ ବୃହଦାକାର ଗୃହର ଅବଶେଷ ଆବିଷ୍କୃତ ହୋଇଥିବା କଥା ପୂର୍ବରୁ ଆଲୋଚିତ ହୋଇଛି । ଏହା ଦେବାୟତନ ଓ ସଭାଗୃହ ଉଭୟ ଉଦ୍ଦେଶ୍ୟରେ

ବ୍ୟବହୃତ ହୋଇଥାଇ ପାରେ ବୋଲି ମଧ୍ୟ କୁହାଯାଇଛି । ବୈଦିକ 'ସମିତି'ର ପ୍ରଭାବ ଏ ପ୍ରକାର ସଭାଗୃହର ପ୍ରବର୍ତ୍ତନ ଉପରେ ହୁଏତ ପଡ଼ିଥାଇ ପାରେ । ଏବେ ମଧ୍ୟ ଆଧୁନିକତାର ପ୍ରଭାବରୁ ଦୂରରେ ଥିବା ଆଦିବାସୀବହୁଳ ଅଞ୍ଚଳ ମାନଙ୍କରେ ଏହି ଭଳି ଗ୍ରାମସଭାମାନଙ୍କରେ ବହୁ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିମାନ ଗ୍ରହଣ କରାଯାଇଥାଏ । ଏହା ପ୍ରାଚୀନ ବୈଦିକ ସଂସ୍କୃତିର ପ୍ରଭାବର ଫଳଶ୍ରୁତି ଯେ ହୋଇନଥିବ ସେକଥା ସଠିକ୍ ଭାବରେ କହି ହେବନାହିଁ । ସେ ଯାହାହେଉ, ଆର୍ଯ୍ୟ ସଂସ୍କୃତିର ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତି ସହିତ ଯେଉଁ କେତୋଟି ସୌ-ସାଦୃଶ୍ୟ ବିଷୟ ଉଲ୍ଲେଖ କରାଗଲା, କେବଳ ସେହି ତଥ୍ୟମାନଙ୍କୁ ଭିତ୍ତି କରି ନିର୍ଦ୍ଦିଷ୍ଟ ଭାବରେ କହିହେବ ନାହିଁ ଯେ ଶେଷୋକ୍ତ ସଂସ୍କୃତି ଆର୍ଯ୍ୟ ସଂସ୍କୃତି ଦ୍ୱାରା ପ୍ରଭାବିତ । ଏ ପ୍ରକାର ସ୍ଥିର ନିଶ୍ଚିତ ନିଷ୍ପତ୍ତି ଲାଗି ଆହୁରି ଅଧିକତର ଗବେଷଣା ଆବଶ୍ୟକ ।

ବର୍ତ୍ତମାନ ପ୍ରଶ୍ନ ହୋଇପାରେ ଏ ସଂସ୍କୃତି ଯଦି ଏତେ ଉନ୍ନତ ଥିଲା, ଏହା ତେବେ ଲୋପ ହୋଇଗଲା କାହିଁକି ଓ କିପରି ? ଏହାର ଏକମାତ୍ର ଉତ୍ତର ହେବ, ଭାରତ-ଭୂମିରେ ଏକ ସନାତନ ମହାସଂସ୍କୃତିର ସ୍ରୋତ ଅଛି । ସେ ହେଉଛି ସର୍ବଗ୍ରାସୀ ଓ ତା'ର ଧାରା ନିରବଚ୍ଛିନ୍ନ ବହିଚାଲିଛି । ସେହି ସଂସ୍କୃତିର ମହାଧାରାରେ ସକଳ ସଂସ୍କୃତିର ଧାରା ଯୁଗଯୁଗ ଧରି ମିଶ୍ରିତ ହୋଇ ଚାଲିଛି । ତାହାର ଫଳଶ୍ରୁତି ସ୍ୱରୂପ ଭାରତରେ ଗଢି ଉଠିଛି ଏକ ସମନ୍ୱିତ ସଂସ୍କୃତି ଯହିଁରେ ଦେଶଜ ଓ ବିଦେଶାଗତ ସଂସ୍କୃତିମାନଙ୍କର ମହାମିଶ୍ରଣ ସଂଘଟିତ ହୋଇଛି । ତଦ୍ଦ୍ୱାରା ଭାରତୀୟ ସଂସ୍କୃତି ତ ଆଦୌ ଅବମିଶ୍ରିତ ହୋଇନାହିଁ; ବରଂ ନୂତନ ଆଲୋକ, ନୂତନ ଜୀବନ ଓ ନୂତନ ରକ୍ତରେ ତାହା ଆହୁରି ପରିପୁଷ୍ଟ ଓ ଗୌରବାନ୍ୱିତ ହୋଇଉଠିଛି । ଏହି ପ୍ରକ୍ରିୟାରେ ଯେ ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତି ଭାରତୀୟ ସଂସ୍କୃତିର ମହାସ୍ରୋତରେ ମିଶିଯାଇଥିବ ସେଥିରେ ଅସ୍ୱାଭାବିକତା କିଛି ନାହିଁ । ଏହି ସଂସ୍କୃତିର ପ୍ରଭାବ ଆମେ ଏବେ ମଧ୍ୟ ଅନେକ ଆଦିବାସୀମାନଙ୍କର ଧର୍ମଧାରଣା ଓ ସାମାଜିକ ଜୀବନ ମଧ୍ୟରେ ଦେଖିବାକୁ ପାଇ ପାରିବା । ଏହି ଦୃଷ୍ଟିରୁ ବିଚାର କଲେ ଭାରତୀୟ ସଂସ୍କୃତି ବିଷୟରେ ସମ୍ୟକ୍ ଜ୍ଞାନ ଆହରଣ ଲାଗି ବୃହତ୍ ପ୍ରସ୍ତରଯୁଗୀୟ ସଂସ୍କୃତି ବିଷୟ ଅନୁଧ୍ୟାନ କରିବାର ଯଥେଷ୍ଟ ଆବଶ୍ୟକତା ରହିଛି ।

## ଗ୍ରନ୍ଥସୂଚୀ

୧-Indian Archaeology. : A. Review : 1965-66 I p. 57.
୧-କ-A. L. Basham : The Wonder that was India : p. 25.

୧-କ-C. Von : Furer Haimendorf : Illustrated London News 1. 7. 1950, p. 24.

୨-B. B. Lal : Excavations in India : The Times of India, April, 29. 1962.

୩-ଅମଳାନନ୍ଦ ଘୋଷ : ଭାରତୀୟ ପ୍ରତ୍ନତତ୍ତ୍ୱ ( କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ) ( ୧୯୬୦ ) : ପୃ ୨୯-୩୦ ।

୪-Purusottam Singh : Burial Practices in Ancient India : Prithivi Prakashan (1970) : p. 71.

୫ B. Narasinghaya : Neolithic and Megalithic Cultures in Tamil Nadu : Sandeep Prakashan (1980); p. 195.

୫-ଖ-D. H. Gordon Prehistoric Background of Indian Culture : p. 181.

୬-Purusottam Singh : op. cit. 69.

୭-Ibid.

୮-ବି. ନରସିଂହାୟା ମଧ୍ୟ ଏହି ମତ ପୋଷଣ କରନ୍ତି । ତାଙ୍କ ମତରେ :

"It is evident from the occurrence of harvesting implements or sickles in megalithic burials and rice from some megaliths that the people might be knowing cultivation of some plants and even agriculture."

(B. Narasinghaya : op cit : p. 199.)

ଆଭୁ ମଧ୍ୟ କୃଷ୍ଣସ୍ୱାମୀ ଓ ବାନାର୍ଜୀ (୧୯୫୬ : ୨୧-୩୪) ଶ୍ରୀନିବାସନ୍ ଓ ବାନାର୍ଜୀ (୧୯୫୩ : ୧୦୩-୧୧୫) ଏବଂ ଗୁରୁଗଜା ସ୍ୱଓ (୧୯୭୨ : ୨୯୮)ଙ୍କ ଭଳି ଗବେଷକମାନେ ମତ ଦିଅନ୍ତି ଯେ ବୃହତ୍ ପ୍ରସ୍ତରଯୁଗୀୟ ସ୍ଥାପତ୍ୟର କର୍ତ୍ତାମାନେ ସବୁ ପ୍ରଥମେ ଦକ୍ଷିଣ ଭାରତରେ କୃଷି ଲାଗି ପୁଷ୍କରିଣୀ-ଜଳସେଚନର ପଦ୍ଧତି ପ୍ରବର୍ତ୍ତନ କରିଥିଲେ ।

୯-M. Seshadri : The Stone-using Cultures of the Prehistoric and Protohistoric Mysore.

୧୦-Ferguson, Rude Stone Monuments, pp. 492-493.

୧୧-The Cultural Heritage of India, Vol. I : The Ramkrushna Institute of Culture (1982. Reprint) Article by Nirmal Kumar Bose, Dharani Sen : The Stone Age of India : p. 108.

-James Frazer : The Belief in Immortality and the Worship of the Head, Vol. I, London (1913) preface.

୧୩-Purusottam Singh : op. cit : p. 130.

୧୪-V. R. R. Dikhitar : "Disposal of the Dead in Snith India." Proceedings of the Oriental Congress (10th) 1940 : pp. 532-533.

୧୫-D. H. Gordon : op. cit : p. 178.

୧୬-K. R Srinivasan : The Megalithic Burials and Urn-

Burials of South India in the light of Tamil Literature and Traditions in Ancient India 2. pp. 9-16.

୧୨-ଏ ସମ୍ପର୍କରେ ପୁରୁଷୋତ୍ତମ ସିଂହଙ୍କ ନିମ୍ନଲିଖିତ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ :

"The concept of after-life as held by the prehistoric man can be visualised by the graves which represent the material expression of his spiritual belief. In the case of inhumation it may be postulated that burial and preservation of the bodily relics of the dead indicates the continuation of the present existence in the next life, but other processes like post-cremation and post-excarnation burials show that the primitive mind believed in the duality of the body and the soul, each independent of the other."

( See Purusottam Singh : op. cit : p. 178. )



# ଶବ୍ଦସୂଚୀ

## ଅ

## ଆ



## ଇ



## ଉ

**ଖ**



**ଗ**

## ନ



## ପ

## ଫ

## ଯ

## ର



## ଲ

